# ସାରସ୍ୱତ ସାଧକ

## (ଜୀବନ : ପ୍ରତିଭା)

ସଂକଳନ :

ଉତ୍କଳ ପାଠକ ସଂସଦ

ପରିବେଷକ :

ଓଡ଼ିଶା ବୁକ୍ ଷ୍ଟୋର

# ସାରସ୍ୱତ ସାଧକ
## (ଜୀବନ : ପ୍ରତିଭା)

ସଂକଳନ :
**ଉତ୍କଳ ପାଠକ ସଂସଦ**
ସୁଜାତା ଭବନ, କଳିଙ୍ଗ ଲେନ୍
ମହତାବ ରୋଡ଼, କଟକ-୧୨

ସମ୍ପାଦନା :
**ଡକ୍ଟର ବ୍ରଜମୋହନ ମହାନ୍ତି**
**ଶ୍ରୀ ସୁଭାଷଚନ୍ଦ୍ର ମହାନ୍ତି**
**ଶ୍ରୀ ସଂଜିତ୍ କୁମାର ପଟ୍ଟନାୟକ**
**ଶ୍ରୀ ରାହାସ ରାୟ**
**ଶ୍ରୀ ସୁବ୍ରତ ପ୍ରିୟବ୍ରତ ମହାନ୍ତି**
**ଶ୍ରୀ ଦିଲ୍ଲୀପ କୁମାର ଦାସ**
**ଡକ୍ଟର ବିଜୟାନନ୍ଦ ସିଂହ**
**ଶ୍ରୀ ପ୍ରସନ୍ନ କୁମାର ଦାଶ**
**ଶ୍ରୀ ମହେଶ୍ୱର ମୂଳିଆ**
**ଶ୍ରୀ ବସନ୍ତ କୁମାର ସାହୁ**

ପ୍ରକାଶ କାଳ :
**ମାର୍ଚ୍ଚ ତା୨୫ରିଖ ୨୦୦୧**

ପ୍ରଚ୍ଛଦ ଶିଳ୍ପୀ :
**ଶ୍ରୀ ସୁନାମଣି ସାମଲ**

ପ୍ରାପ୍ତିସ୍ଥାନ :
**ଓଡ଼ିଶା ବୁକ୍ ଷ୍ଟୋର**
ବିନୋଦ ବିହାରୀ, କଟକ-୭୫୩ ୦୦୨

ଅକ୍ଷରସଜ୍ଜା : ସନ୍ତୋଷ ଡି.ଟି.ପି. ସେଣ୍ଟର

ମୁଦ୍ରଣ : ରେଖା ପ୍ରେସ୍
କଟକ-୭୫୩ ୦୦୯

**SARASWATA SADHAKA**
( A Biographical Book )

Compiled by :
**UTKAL PATHAK SAMSAD**
Sujata Bhawan
Kalinga Lane
Mahatab Road
Cuttack-12

Available at :
**ORISSA BOOK STORE**
Binod Behari
Cuttack-753 002

Price : **Rs. 30.00**

# ସୂଚୀପତ୍ର



❑ ❑

# 'ଉତ୍କଳ ପାଠକ ସଂସଦ'ର ପରିବାର

ସମ୍ପାଦକ : **ଡକ୍ଟର ବ୍ରଜମୋହନ ମହାନ୍ତି**

ସହ-ସମ୍ପାଦକ : **ଶ୍ରୀ ସୁଭାଷଚନ୍ଦ୍ର ମହାନ୍ତି**

ସଂଯୋଜନା : **ଶ୍ରୀ ପ୍ରସନ୍ନ କୁମାର ଦାଶ**

ପରାମର୍ଶଦାତା :

ଡକ୍ଟର କୃଷ୍ଣଚରଣ ବେହେରା
ଡଃ ପ୍ରଭାତ କୁମାର ମିଶ୍ର
ଶ୍ରୀ ପଠାଣି ପଟ୍ଟନାୟକ
ଶ୍ରୀ ଗୋବିନ୍ଦ ଚରଣ ପାତ୍ର
ଶ୍ରୀ ନଦିଆବିହାରୀ ମହାନ୍ତି
ଡକ୍ଟର ସତ୍ୟବ୍ରତ ରାୟ
ଶ୍ରୀ ଭିକାରୀଚରଣ ମିଶ୍ର
ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି
ଶ୍ରୀ ବସନ୍ତ କୁମାର ସାହୁ
ଶ୍ରୀ ଅରୁଣ କୁମାର ପଣ୍ଡା
ଡଃ ନିରଞ୍ଜନ ସାହୁ
ଶ୍ରୀମତୀ ସୁଜାତା ମହାନ୍ତି
ଡଃ ବୀଣାପାଣି ସିଂହ
ଡଃ ବିଜୟାନନ୍ଦ ସିଂହ

ପରିଚାଳନା ସହଯୋଗୀ :

ଶ୍ରୀ ଯଜ୍ଞେଶ୍ୱର ତ୍ରିପାଠୀ
ଶ୍ରୀ ରାହାସ ରାୟ
ଶ୍ରୀ ଶୁଭନାରାୟଣ ସ୍ୱାଇଁ

# 'ଉତ୍କଳ ପାଠକ ସଂସଦ' ପରିବାରର ଅନ୍ୟମାନେ

ଚାରଣ ରାମଦାସ
ପୃଥ୍ୱୀରାଜ ପଟ୍ଟନାୟକ
ଡଃ ହରିହର କାନୁନ୍‌ଗୋ
ଡଃ ବୈଷ୍ଣବ ଚରଣ ସାମଲ
ଅର୍ଜ୍ଜୁନ ଦାଶ
କାକଲୀ ପାଲ (ମହାନ୍ତି)
ସତ୍ୟରଞ୍ଜନ ମହାନ୍ତି
ଡଃ ରତ୍ନାକର ଚଇନି
ସୁବ୍ରତ ପ୍ରିୟବ୍ରତ ମହାନ୍ତି
ବିମଳ କିଙ୍କର ମହାନ୍ତି
ନାରାୟଣ ମହାପାତ୍ର
ଡଃ ଶ୍ରୀଚରଣ ଦାସ
ଦୀନକୃଷ୍ଣ ମହାନ୍ତି
କୃଷ୍ଣଚନ୍ଦ୍ର ମହାପାତ୍ର
ଡଃ ତୀର୍ଥାନନ୍ଦ ମିଶ୍ର
ଡଃ ସନ୍ଧ୍ୟାରାଣୀ ସିଂହ
ନିର୍ମଳ ଚନ୍ଦ୍ର ପହୀ
ଦେବଦତ୍ତ ସାମନ୍ତସିଂହାର
ଶ୍ରୀମତୀ ସ୍ୱର୍ଣ୍ଣଲତା ସିଂହସାମନ୍ତ
କାହ୍ନୁନାରାୟଣ ମହାନ୍ତି
ଦିଗମ୍ବର ଦାସ
ଗଙ୍ଗାଧର ମହାରଣା
ଡଃ ଗୁରୁପ୍ରସାଦ ମହାନ୍ତି

ପଣ୍ଡିତ ରାମକୃଷ୍ଣ ପତି (ଚାରଣ)
ପ୍ରସନ୍ନ କୁମାର ଦାଶ
ମହେଶ୍ୱର ମୂଳିଆ
ସଞ୍ଜିତ କୁମାର ପଟ୍ଟନାୟକ
ବରଦା ପ୍ରସନ୍ନ ପଟ୍ଟନାୟକ
ଗୋକୁଳାନନ୍ଦ ଦାସ
ରାଧାଶ୍ୟାମ ମହାନ୍ତି
ଚନ୍ଦ୍ରଶେଖର ପ୍ରଧାନ
ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକ
ନବୀନ କିଶୋର ପଟ୍ଟନାୟକ
ଶ୍ରୀମତୀ ବୀଣାପାଣି ମହାନ୍ତି
ବସନ୍ତ କୁମାର ସାହୁ
ବସନ୍ତ କୁମାର ମହାନ୍ତି
ସୂର୍ଯ୍ୟମଣି ଖୁଣ୍ଟିଆ
ଶ୍ରୀମତୀ ଅପର୍ଣ୍ଣା ମିଶ୍ର
ଚିତ୍ତରଞ୍ଜନ କର
ଶ୍ରୀମତୀ କନକ ମଞ୍ଜରୀ ମହାନ୍ତି
ତପନ ମିତ୍ର
ଡାକ୍ତର ଶୈଳେଶ୍ୱର ନନ୍ଦ
ଶ୍ରୀମତୀ ବିନୋଦିନୀ ପଟ୍ଟନାୟକ
ବ୍ରହ୍ମାନନ୍ଦ ମହାନ୍ତି
ଡଃ ପ୍ରସନ୍ନ କୁମାର ମିଶ୍ର
ବ୍ରଜନାଥ ରଥ

ଚଣ୍ଡୀଚରଣ ରାଉତରାୟ
ବିଚିତ୍ରାନନ୍ଦ କାନୁନ୍‌ଗୋ
ଦୁର୍ଗାଚରଣ ଷଡ଼ଙ୍ଗୀ
ଦୀନକୃଷ୍ଣ ମିଶ୍ର
ଅମିତା ବେହେରା
ଡଃ ବୀରକିଶୋର ସିଂହ
ଘନଶ୍ୟାମ ପାଣି
ପ୍ରତିମା ସାହୁ
ଶଙ୍କର୍ଷଣ ମଙ୍ଗରାଜ
ଦିଲ୍ଲୀପ କୁମାର ଦାସ
ଶ୍ରୀମତୀ ମିନତି ଦାଶ
କେଶବ ଚନ୍ଦ୍ର ଦାଶ
ଶ୍ରୀମତୀ ସରୋଜିନୀ ମିଶ୍ର (ପଣ୍ଡା)
ସତ୍ୟପ୍ରିୟ ମହାପାତ୍ର
ବିଜୟ ଶଙ୍କର ପାତ୍ର
ମାନସରଞ୍ଜନ ପ୍ରଧାନ
ରବୀନ୍ଦ୍ର କୁମାର ସେଠୀ
ଡଃ ଉମେଶ ଚନ୍ଦ୍ର ପତ୍ରୀ
ଶ୍ରୀମତୀ ଆଶାଲତା ମିଶ୍ର
ବ୍ରହ୍ମାନନ୍ଦ ଆଚାର୍ଯ୍ୟ

ଅଧ୍ୟାପିକା ବୀଣାପାଣି ମହାନ୍ତି
ଚନ୍ଦ୍ରମଣି ପଣ୍ଡା
ମୃତ୍ୟୁଞ୍ଜୟ ସାମଲ
ବନବିହାରୀ ମହାନ୍ତି
ଡାକ୍ତର ପ୍ରତାପ କିଶୋର ମିଶ୍ର
ଅପୂର୍ବରଞ୍ଜନ ରାୟ
ରବୀନ୍ଦ୍ର କୁମାର ସାହୁ
ଡଃ ଶାନ୍ତନୁ କୁମାର ରଥ
ଡଃ ସୁହାସିନୀ ଲେଙ୍କା
ଇଂ ଧୀରେନ୍ଦ୍ର କୁମାର ବିଶ୍ୱାଳ
ଶ୍ରୀମତୀ ପ୍ରେମଲତା ଆଚାର୍ଯ୍ୟ
ଶ୍ରୀମତୀ କନକ ପଟ୍ଟନାୟକ
ଶ୍ରୀମତୀ ନୀରଦପ୍ରଭା ସିଂହସାମନ୍ତ
ଶ୍ରୀମତୀ ରୁମ୍‌ଝୁମ୍ ନାୟକ
ଡଃ ଉମେଶ ପ୍ରସାଦ ପତ୍ରୀ
ପରମାନନ୍ଦ ଅଧିକାରୀ
ରଘୁନାଥ ମହାପାତ୍ର
ମହେଶ୍ୱର ରଥ
ଉମେଶ ଚନ୍ଦ୍ର ସାହୁ
ମୃତ୍ୟୁଞ୍ଜୟ ପଟ୍ଟନାୟକ

❑ ❑

# ଆମର ଆଭିମୁଖ୍ୟ

୧୯୭୦ ମସିହାରେ ଜାତିସଂଘ ପକ୍ଷରୁ ଆୟୋଜିତ ଆନ୍ତର୍ଜାତୀୟ ପୁସ୍ତକ ବର୍ଷ ଅବସରରେ ଜନ୍ମଲାଭ କରିଥିଲା ''ଉତ୍କଳ ପାଠକ ସଂସଦ'' । ଏହି ବର୍ଷଠାରୁ ପୁସ୍ତକ ପ୍ରସାର ଉଦ୍ଦେଶ୍ୟରେ ଆଲୋଚନାଚକ୍ର, ପୁସ୍ତକ ପ୍ରଦର୍ଶନୀ, ବୈଷୟିକ ଆଲୋଚନା, କବି ସମ୍ମେଳନ, ହାସ୍ୟରସାତ୍ମକ କାର୍ଯ୍ୟକ୍ରମ, ଛାତ୍ରଛାତ୍ରୀଙ୍କ ମଧ୍ୟରେ ବିଭିନ୍ନ ପ୍ରତିଯୋଗିତା, ଲୋକବାଦ୍ୟ, ଓଡ଼ିଶୀ ସଙ୍ଗୀତ, ଓଡ଼ିଶୀ ନୃତ୍ୟର ପ୍ରସାର, ପ୍ରତିଭାଧର ବ୍ୟକ୍ତିମାନଙ୍କୁ ସମ୍ମାନ ପ୍ରଦର୍ଶନ, ସେମାନଙ୍କ ଜୀବନୀ ଉପରେ ଆଧାରିତ ପୁସ୍ତକ ପ୍ରକାଶନ ଏବଂ ଭାଷା, ସଂସ୍କୃତି ଓ ସମାଜର କଲ୍ୟାଣ ଉଦ୍ଦେଶ୍ୟରେ. ବିଭିନ୍ନ ବିଷୟବସ୍ତୁ ଉପରେ ବିଶେଷ ସଙ୍କଳନ ପ୍ରକାଶ କରାଯାଉଅଛି । ଏତଦ୍‌ବ୍ୟତୀତ ଗ୍ରାମାଞ୍ଚଳରେ ଉଦ୍‌ଘାଟନ ଉତ୍ସବର ଆୟୋଜନ କରି ନୂତନ ସାହିତ୍ୟିକ ସୃଷ୍ଟି ଓ ବୈଷୟିକ ଆଲୋଚନା ଦ୍ୱାରା ଲୋକମାନଙ୍କର ବୌଦ୍ଧିକ ବିକାଶ ଦିଗରେ ସାହାଯ୍ୟ କରିବା ପାଇଁ ମଧ୍ୟ ସଂସଦ ପଦକ୍ଷେପ ନେବାକୁ ଯତ୍ନ କରିଛି ।

ଉତ୍କଳ ପାଠକ ସଂସଦ ବିଚାର କରେ ଯେ- ଏ ଜାତିର ଶତ ଶତ ପ୍ରତିଭାଧର ବ୍ୟକ୍ତି ସ୍ୱ ସ୍ୱ କ୍ଷେତ୍ରରେ ସୁପ୍ରତିଷ୍ଠିତ । କଳା, ବିଜ୍ଞାନ, ସାହିତ୍ୟ, ସଂସ୍କୃତି, ଶିକ୍ଷା, ରାଷ୍ଟ୍ରର୍ଯ୍ୟ ଇତ୍ୟାଦି ବିଭିନ୍ନ କ୍ଷେତ୍ରରେ ସେମାନଙ୍କର ସ୍ୱାକ୍ଷର ସୁସ୍ପଷ୍ଟ । ସେମାନଙ୍କ ମଧ୍ୟରୁ କେତେକ ହୁଏତ ସମାଜରେ ସ୍ୱୀକୃତ, ସମ୍ମାନିତ, ମାତ୍ର ବିଭିନ୍ନ କାରଣରୁ ଆହୁରି ଅନେକ ଉପଯୁକ୍ତ ସମ୍ମାନ ଲାଭରୁ ବଞ୍ଚିତ ।

କିନ୍ତୁ ମନେ ରଖିବାକୁ ହେବ ଯେ- ପ୍ରତିଭା ପୂଜା ଗୋଟିଏ ଜାତିର ସାଂସ୍କୃତିକ ଜୀବନକୁ ବଳିଷ୍ଠ ତଥା ଋଦ୍ଧିମନ୍ତ କରିଥାଏ । ଓଡ଼ିଶାରେ ଅନେକ କୃତୀ ସନ୍ତାନ ଜନ୍ମଗ୍ରହଣ କରି ବିଭିନ୍ନ କ୍ଷେତ୍ରରେ ଆନ୍ତର୍ଜାତିକ ସମ୍ମାନର ଅଧିକାରୀ ହୋଇପାରିଥିଲେ ସୁଦ୍ଧା ସେମାନଙ୍କର ଜୀବନୀ ଏବଂ କୃତି ଯଥାଯଥ ଭାବରେ ସଂଗୃହୀତ ହୋଇପାରି ନାହିଁ । 'ଉତ୍କଳ ପାଠକ ସଂସଦ' ପୂଜ୍ୟପୂଜାର ପରମ୍ପରା ରକ୍ଷାକରି ଜୀବିତ ପ୍ରତିଭାଧର ବ୍ୟକ୍ତିମାନଙ୍କୁ ସମ୍ମାନ ଦେବାର କିଞ୍ଚିତ୍ ପ୍ରୟାସ କରିଛି । ଏହି କାର୍ଯ୍ୟକ୍ରମ ଅନୁସାରେ ୧୯୭୦ ମସିହାଠାରୁ ପ୍ରତ୍ୟେକ ବର୍ଷ

ପ୍ରତିଭାଧର ବ୍ୟକ୍ତିମାନଙ୍କୁ ସମ୍ମାନିତ କରାଯାଉଛି । ଏହି ବ୍ୟକ୍ତିମାନଙ୍କ ମଧ୍ୟରେ ଅଛନ୍ତି ସର୍ବଶ୍ରୀ କାହ୍ନୁଚରଣ ମହାନ୍ତି, ରାଧାମୋହନ ଗଡ଼ନାୟକ, ରାଜକିଶୋର ପଟ୍ଟନାୟକ, ତାରିଣୀ ଚରଣ ପାତ୍ର, କେଳୁଚରଣ ମହାପାତ୍ର, ଭଗବାନ ପତି, ଡକ୍ଟର କୁଞ୍ଜବିହାରୀ ଦାଶ, ଶ୍ରୀମତୀ ସରଳା ଦେବୀ, ଶ୍ରୀଧର ମହାପାତ୍ର, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ଡକ୍ଟର ମିନତି ମିଶ୍ର, ସାମୁଏଲ ସାହୁ (ବାବି), ପ୍ରିୟନାଥ ମିଶ୍ର (ପୀର) ଓ ଅନ୍ୟ କେତେଜଣ ବିଭିନ୍ନ କ୍ଷେତ୍ରରେ ସ୍ମରଣୀୟ ବ୍ୟକ୍ତିଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଛି । ପ୍ରଥମ ପାଞ୍ଚ ବର୍ଷରେ କେବଳ ମାନପତ୍ର ଦେଇ ଏହି ପ୍ରତିଭାଧର ବ୍ୟକ୍ତିମାନଙ୍କୁ ସମ୍ମାନିତ କରିବାରେ ଏ ସଂସଦ ସନ୍ତୁଷ୍ଟ ହୋଇପାରିଲା ନାହିଁ । ସେଥିପାଇଁ ପରେ ପ୍ରତ୍ୟେକ ବର୍ଷ ପର୍ଯ୍ୟାୟକ୍ରମେ ଜୀବନ ଚରିତ ଓ କାର୍ଯ୍ୟକଳାପର ପୁସ୍ତକ ଆକାରରେ ପ୍ରକାଶ କରି ଆସୁଅଛି ।

୧୯୯୫ ମସିହାଠାରୁ ଡଃ ସଦାଶିବ ମିଶ୍ର ସ୍ମୃତି ସମ୍ମାନ ଶୀର୍ଷକ ଏକ ସମ୍ମାନ ଜଣେ ପ୍ରତିଭାଧର ଲେଖକଙ୍କୁ ପ୍ରତ୍ୟେକ ବର୍ଷ ପ୍ରଦାନ କରିବା ପାଇଁ ସ୍ଥିର ହୋଇଥିବାରୁ- ସେହି ଲେଖକଙ୍କ ଜୀବନୀ ସଙ୍କଳନରେ ସ୍ଥାନ ପାଉଛି ।

ଏହି ସଂସଦ ପକ୍ଷରୁ ଏପର୍ଯ୍ୟନ୍ତ ଅନେକ ଗୁଡ଼ିଏ ଜୀବନୀ ସଂକଳନ ପ୍ରକାଶ ପାଇଲାଣି । ଯଥା-

'ପ୍ରତିଭା ପରିଚୟ' ୧୯୭୬, 'ସପ୍ତରଶ୍ମି' ୧୯୭୭, 'ସପ୍ତଶିଖା' ୧୯୭୮, 'ସପ୍ତଦୀପ' ୧୯୭୯, 'ସପ୍ତଶ୍ରୀ' ୧୯୮୦, 'ସପ୍ତଜ୍ୟୋତି' ୧୯୮୧, 'ସପ୍ତପୁଷ୍ପ' ୧୯୮୨, 'ସପ୍ତରାଗ' ୧୯୮୩, 'ସପ୍ତ ସୁମନ' ୧୯୮୪, 'ସପ୍ତ ସ୍ତବକ' ୧୯୮୫, 'ସପ୍ତ ତରଙ୍ଗ' ୧୯୮୬, 'ସପ୍ତପ୍ରଭା' ୧୯୮୭, 'ସପ୍ତଧାରା' ୧୯୮୮, 'ସପ୍ତ ଶାଖା' ୧୯୮୯, 'ସପ୍ତତାରକା' ୧୯୯୦, 'ସପ୍ତ ସୌରଭ' ୧୯୯୧, 'ସପ୍ତ ସାଧକ' ୧୯୯୨, 'ସପ୍ତ ଗୌରବ' ୧୯୯୩, 'ସପ୍ତର୍ଷି' ୧୯୯୪, 'ଅଷ୍ଟରତ୍ନ' ୧୯୯୫, 'ସପ୍ତସିନ୍ଧୁ' ୧୯୯୬, 'ଆମ ସ୍ମରଣୀୟ ପ୍ରତିଭା' ୧୯୯୭, 'ଉତ୍କଳଶ୍ରୀ' ୧୯୯୮ ।

୧୯୭୬ ମସିହାରେ 'ପ୍ରତିଭା ପରିଚୟ' ପୁସ୍ତକରେ ସାହିତ୍ୟ-ସାଧକ କାଳିନ୍ଦୀଚରଣ ପାଣିଗ୍ରାହୀ, କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ସାହିତ୍ୟିକ ଓ ସାମ୍ବାଦିକ ଉଦୟନାଥ ଷଡ଼ଙ୍ଗୀ, ନାଟ୍ୟକାର କାର୍ତ୍ତିକ କୁମାର ଘୋଷ, ମାଷ୍ଟର ରାମଚନ୍ଦ୍ର ମାଣିଆ, ସ୍ୱର ସାଧକ ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନ, ପୁସ୍ତକ ପ୍ରକାଶକ ଅନନ୍ତ ମିଶ୍ରଙ୍କ ଜୀବନୀ ଓ କୃତି ଆଲୋଚିତ ।

୧୯୭୭ ସଙ୍କଳିତ 'ସପ୍ତରଶ୍ମି' ପୁସ୍ତକରେ ପ୍ରଖ୍ୟାତ ସାମ୍ବାଦିକ ଡକ୍ଟର ରାଧାନାଥ ରଥ, ଔପନ୍ୟାସିକ ଗୋପୀନାଥ ମହାନ୍ତି, ଚିତ୍ରଶିଳ୍ପୀ ବିପିନ ବିହାରୀ ଚୌଧୁରୀ, ଅନୁବାଦକ ଲାଲା ନଗେନ୍ଦ୍ର କୁମାର ରାୟ, ସଙ୍ଗୀତ ସାଧକ ବାଳକୃଷ୍ଣ ଦାଶ, ଗବେଷକ ସତ୍ୟନାରାୟଣ ରାଜଗୁରୁ ଏବଂ ପୁସ୍ତକ ପ୍ରକାଶକ ଗୋକୁଳ ଚନ୍ଦ୍ର କରଙ୍କ ଜୀବନୀ ଓ କୃତି ପ୍ରକାଶିତ ।

୧୯୭୮ରେ ପ୍ରକାଶିତ 'ସପ୍ତଶିଖା' ପୁସ୍ତକରେ ଅଭିନେତା ଯତୀନ୍ଦ୍ର ଦାସ, ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ବିପ୍ଳବୀ ରାଜକୃଷ୍ଣ ବୋଷ, ଚିତ୍ରଶିଳ୍ପୀ ମୁରଲୀଧର ଟାଲି, ସାମ୍ବାଦିକ ଶ୍ରୀହର୍ଷ ମିଶ୍ର, କଥା ସାହିତ୍ୟ ସାଧକ ସୁରେନ୍ଦ୍ର ମହାନ୍ତି, ସଙ୍ଗୀତଜ୍ଞ ଶ୍ୟାମସୁନ୍ଦର ଧୀର ଏବଂ ରଚିବନ୍ତ ପ୍ରକାଶକ ଗୋବିନ୍ଦ ଚରଣ ପାତ୍ରଙ୍କ ସାଧନାପୂର୍ଣ୍ଣ ଜୀବନୀ ସନ୍ନିବିଷ୍ଟ ।

୧୯୭୯ରେ 'ସପ୍ତ ପ୍ରଦୀପ' ପୁସ୍ତକରେ ଛଉ ନୃତ୍ୟଗୁରୁ ଚନ୍ଦ୍ରଶେଖର ଭଞ୍ଜ, ଚିତ୍ରଶିଳ୍ପୀ ହରିଶରଣ ମହାପାତ୍ର, ସଙ୍ଗୀତ ସାଧକ ଜଗବନ୍ଧୁ ସାହୁ, ବିଚ୍ଛିନ୍ନାଞ୍ଚଳ କବି ଜଗନ୍ନାଥ ବର୍ମା, ଜନସେବୀ ନିତ୍ୟାନନ୍ଦ କାନୁନ୍‌ଗୋ, ଶିକ୍ଷାବିତ୍ ପ୍ରଫେସର ପ୍ରହ୍ଲାଦ ପ୍ରଧାନ, ସାରସ୍ୱତ ସାଧକ ଶ୍ରଦ୍ଧାକର ସୂପକାରଙ୍କ କୃତି ବର୍ଣ୍ଣିତ ।

୧୯୮୦ରେ 'ସପ୍ତଶ୍ରୀ' ପୁସ୍ତକରେ ସାହିତ୍ୟସେବୀ ଡକ୍ଟର ହରେକୃଷ୍ଣ ମହତାବ, ଐତିହାସିକ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ନାଟ୍ୟକାର ଶ୍ରୀ ରାମଚନ୍ଦ୍ର ମିଶ୍ର, ସାହିତ୍ୟିକ ରାମ ପ୍ରସାଦ ସିଂ, ବେଦାନ୍ତାଳଙ୍କାର ପଣ୍ଡିତ ଗଣେଶ୍ୱର ରଥ, ଗାୟକରତ୍ନ ବୈଦ୍ୟନାଥ ଶର୍ମା, ପାଲା ଗାୟକ ପରମାନନ୍ଦ ଶରଣଙ୍କ ଜୀବନୀ ଉପରେ ଆଲୋକପାତ କରାଯାଇଛି ।

୧୯୮୧ରେ 'ସପ୍ତଜ୍ୟୋତି' ସଙ୍କଳନରେ ନାଟ୍ୟକାର ଗୋପାଳ ଛୋଟରାୟ, ସମାଜସେବୀ ନନ୍ଦକିଶୋର ଦାସ, ଇତିହାସବେତ୍ତା ଡଃ ନବୀନ କୁମାର ସାହୁ, ଗବେଷକ ସୁଧାକର ପଟ୍ଟନାୟକ, ପ୍ରତ୍ନତତ୍ତ୍ୱବିତ୍ କେଦାରନାଥ ମହାପାତ୍ର, ଶିଳ୍ପୀଗୁରୁ ଜଗନ୍ନାଥ ମହାପାତ୍ର ଓ ନୃତ୍ୟଗୁରୁ ଭଗବାନ ସାହୁଙ୍କ କୃତି ସ୍ଥାନ ପାଇଛି ।

୧୯୮୨ରେ 'ସପ୍ତପୁଷ୍ପ' ସଙ୍କଳନରେ ରସିକରାଜ କବି ଫତୁରାନନ୍ଦ, ପାଲା ଗାୟକ ନିରଞ୍ଜନ କର, ମଞ୍ଚଗୁରୁ ଦୁର୍ଲ୍ଲଭ ଚନ୍ଦ୍ର ସିଂ, ଶିଳ୍ପୀ ଶିରୋମଣି ଶ୍ରୀଧର ମହାପାତ୍ର, ବାଣୀ ବରପୁତ୍ର ରାମକୃଷ୍ଣ ନନ୍ଦ, ଚଳନ୍ତି ଚରକ କବିରାଜ ଅନନ୍ତ ତ୍ରିପାଠୀ ଶର୍ମା ଓ ସମାଜସେବକ ପଦ୍ମଶ୍ରୀ ମୋହନ ନାୟକଙ୍କ ଜୀବନୀ ଓ ସାଧନା ସ୍ଥାନିତ ହୋଇଛି ।

୧୯୮୩ 'ସପ୍ତରାଗ' ସଙ୍କଳନରେ ଭାଷାବିଜ୍ଞାନୀ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ, ଜନସେବୀ ଲମ୍ବୋଦର ପାଣିଗ୍ରାହୀ, କବି ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ, ଉତ୍କଳବନ୍ଧୁ ପି:ଭି: କୃଷ୍ଣମୂର୍ତ୍ତି, ସୃଜନଶୀଳ ନାଟ୍ୟକାର ମନୋରଞ୍ଜନ ଦାସ, ସ୍ଥାପତ୍ୟ ଶିଳ୍ପୀ ଭୁବନେଶ୍ୱର ମହାପାତ୍ର ଓ ଛଉନୃତ୍ୟଗୁରୁ ଅନନ୍ତ ଚରଣ ସାୟଙ୍କ ଜୀବନୀ ଓ କୃତି ଉପରେ ଆଲୋକପାତ କରାଯାଇଛି ।

୧୯୮୪ 'ସପ୍ତସୁମନ' ସଙ୍କଳନରେ ସାହିତ୍ୟ ସାଧକ ଡଃ ଭୁବନେଶ୍ୱର ବେହେରା, ନାଟ୍ୟକାର ଭଞ୍ଜକିଶୋର ପଟ୍ଟନାୟକ, ଜନସେବୀ ଡାକ୍ତର ଶରତ ଚନ୍ଦ୍ର ମିଶ୍ର, ମଞ୍ଚଶ୍ରୀ ସତ୍ୟନାରାୟଣ ପଣ୍ଡା, ସଙ୍ଗୀତଗୁରୁ କ୍ଷିତୀଶ ମୈତ୍ର, ଗବେଷକ ଡକ୍ଟର ନଟବର ସାମନ୍ତରାୟ, ଛଉ ନୃତ୍ୟଗୁରୁ ପଦ୍ମଶ୍ରୀ କେଦାରନାଥ ସାହୁଙ୍କ ଜୀବନୀ ଓ କୃତି ସ୍ଥାନ ପାଇଛି ।

୧୯୮୫ ମସିହାରେ 'ସପ୍ତ ସ୍ତବକ' ଜୀବନୀ ପୁସ୍ତକରେ ସଙ୍ଗଠକ ବାବୁଲାଲ ଦୋଶୀ, କଳାକାର ବାଞ୍ଛାନିଧି ଶତପଥି, ସାହିତ୍ୟିକ ଅନନ୍ତ ପ୍ରସାଦ ପଣ୍ଡା, ଗବେଷକ ବିନୋଦ କାନୁନ୍‌ଗୋ, ସଙ୍ଗୀତ ସାଧକ ଭୁବନେଶ୍ୱର ମିଶ୍ର, ଚିତ୍ରଶିଳ୍ପୀ ଲକ୍ଷ୍ମୀନାରାୟଣ ଆଚାରୀ, ହାସ୍ୟସ୍ରଷ୍ଟା କବି ବସନ୍ତ କୁମାର ଶତପଥିଙ୍କ ଜୀବନୀ ପ୍ରଦତ୍ତ ।

୧୯୮୬ ମସିହାରେ 'ସପ୍ତ ତରଙ୍ଗ' ଜୀବନୀ ପୁସ୍ତକ ପ୍ରକାଶ ଲାଭ କରିଥିଲା । ଏହି ପୁସ୍ତକରେ ସ୍ଥାନଲାଭ କରିଥିଲା ଐତିହାସିକ ଡକ୍ଟର ମନ୍ମଥନାଥ ଦାସ, ନାଟ୍ୟକାର ରଘୁନାଥ ପଣ୍ଡା, ସଙ୍ଗୀତଶିଳ୍ପୀ ମାର୍କଣ୍ଡେୟ ମହାପାତ୍ର, କବି ଅନନ୍ତ ପଟ୍ଟନାୟକ ଓ ସଙ୍ଗଠକ ସଂଗ୍ରାହକ ଦାଶରଥି ପଟ୍ଟନାୟକଙ୍କ ଜୀବନୀ ।

୧୯୮୭ ମସିହାରେ ପ୍ରକାଶଲାଭ କରିଥିଲା 'ସପ୍ତପ୍ରଭା' । ଏହି ସଙ୍କଳନରେ ସାହିତ୍ୟିକ ଅନୁପ ସିଂହଦେଓ, ଗବେଷକ ଡଃ ବଂଶୀଧର ମହାନ୍ତି, ବୈଜ୍ଞାନିକ ଡକ୍ଟର ଗୋକୁଳାନନ୍ଦ ମହାପାତ୍ର, ନୃତ୍ୟଶିଳ୍ପୀ ଡଃ ପ୍ରିୟମ୍ବଦା ମହାନ୍ତି (ହେଜମାଦୀ), ସଙ୍ଗୀତଶିଳ୍ପୀ କାଶୀନାଥ ପୂଜାପଣ୍ଡା, ଚିତ୍ରଶିଳ୍ପୀ ଅସିତ୍ ମୁଖାର୍ଜୀ ଏବଂ ଶୁକଦେବ ସାହୁଙ୍କ ଜୀବନୀ ସ୍ଥାନ ପାଇଥିଲା ।

୧୯୮୮ ମସିହାରେ 'ସପ୍ତଧାରା' ଜୀବନୀ ପୁସ୍ତକରେ ପଣ୍ଡିତ ଚିନ୍ତାମଣି ମିଶ୍ର, କବି କୃଷ୍ଣଚନ୍ଦ୍ର ତ୍ରିପାଠୀ, ଅଭିନେତ୍ରୀ ମଣିମାଳା ଦେବୀ, ଗବେଷକ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା, ନୃତ୍ୟଶିଳ୍ପୀ ଶ୍ରୀମତୀ ସଂଯୁକ୍ତା ପାଣିଗ୍ରାହୀ, ସମାଜସେବୀ ଶ୍ରୀମତୀ ରମା ଦେବୀ ଓ ସୁଲଳିତ ଶାସ୍ତ୍ରୀୟ ସଙ୍ଗୀତ ଗାୟିକା ଶ୍ରୀମତୀ ବୀଣାପାଣି ମିଶ୍ରଙ୍କ ଜୀବନୀ ସ୍ଥାନ ପାଇଥିଲା ।

୧୯୮୯ ମସିହାରେ 'ସପ୍ତଶାଖା' ପୁସ୍ତକ ପ୍ରକାଶିତ ହୋଇଥିଲା । ଏହି ପୁସ୍ତକରେ ଡକ୍ଟର ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ), ସଙ୍ଗୀତଶିଳ୍ପୀ ନୃସିଂହନାଥ ଖୁଣ୍ଟିଆ, ଶ୍ରୀ ନିତ୍ୟାନନ୍ଦ ମହାପାତ୍ର, ଶ୍ରୀ କୁଞ୍ଜବିହାରୀ ମେହେର, ଶ୍ରୀ ମନମୋହନ ଚୌଧୁରୀ, ଶ୍ରୀ ବିପ୍ରଚରଣ ମହାନ୍ତି ଓ ଶ୍ରୀ ପ୍ରିୟନାଥ ମିଶ୍ର (ପୀର)ଙ୍କ ଜୀବନୀ ସ୍ଥାନ ପାଇଛି ।

୧୯୯୦ ମସିହାରେ 'ସପ୍ତ ତାରକା' ପୁସ୍ତକ ପ୍ରକାଶିତ ହୋଇଥିଲା । ଏ ପୁସ୍ତକରେ ଗବେଷକ, କବି ଓ ଶିଳ୍ପୀ ଶ୍ରୀ ବିନୋଦ ରାଉତରାୟ, ଅଭିନେତା କଳାକାର ଦୁଃଖୀରାମ ସ୍ୱାଇଁ, ନୃତ୍ୟ ସାଧକ ନୃତ୍ୟଗୁରୁ ରଘୁନାଥ ଦତ୍ତ, ସଙ୍ଗୀତ ସାଧକ ସୁକୁମାର ସାହୁ, ବିପ୍ଳବୀ କବି ମନମୋହନ ମିଶ୍ର, ସାହିତ୍ୟିକ ରାଜଗୁରୁ କବିଭୂଷଣ ରାଜକିଶୋର ପଟ୍ଟନାୟକ ଓ ପ୍ରକାଶକ ପୀତାମ୍ବର ମିଶ୍ରଙ୍କ ଜୀବନୀ ଓ କୃତି ସ୍ଥାନ ପାଇଛି ।

୧୯୯୧ ମସିହାରେ ସେହିପରି ୭ ଜଣ ପ୍ରତିଭାବାନ୍ ବ୍ୟକ୍ତିଙ୍କ ଜୀବନୀ ଉପରେ ଆଧାରିତ ପୁସ୍ତକ 'ସପ୍ତସୌରଭ' ପ୍ରକାଶଲାଭ କରିଥିଲା । ଏହି ପୁସ୍ତକରେ ଯେଉଁ ମହାନ୍ ବ୍ୟକ୍ତିମାନଙ୍କର ଜୀବନୀ ସ୍ଥାନ ପାଇଥିଲା, ସେମାନେ ହେଲେ- ସାମ୍ବାଦିକ ଯୁଗଳ କିଶୋର ପାଣିଗ୍ରାହୀ, ଗାଳ୍ପିକ ରାଜକିଶୋର ରାୟ, ଅଭିନେତା ବ୍ୟୋମକେଶ ତ୍ରିପାଠୀ, ଗବେଷକ କେଶବଚନ୍ଦ୍ର ମେହେର, କଳାକାର କୋହ୍ନୁ ଚରଣ ସାହୁ, ସମାଜସେବିକା ପାର୍ବତୀ ଗିରି ଏବଂ ପ୍ରକାଶକ ରାଧାଶ୍ୟାମ ମହାନ୍ତି ।

୧୯୯୨ ମସିହାରେ ୭ ଜଣ ପ୍ରତିଭାଧର ବ୍ୟକ୍ତିଙ୍କୁ ସମ୍ମାନିତ କରାଯାଇ ସେମାନଙ୍କ ଜୀବନୀ ଉପରେ ଆଧାରିତ 'ସପ୍ତସାଧକ' ପୁସ୍ତକ ପ୍ରକାଶଲାଭ କରିଥିଲା । ଏହି ପୁସ୍ତକରେ ଯେଉଁ ମହାନ୍ ବ୍ୟକ୍ତିମାନଙ୍କର ଜୀବନୀ ସଙ୍କଳିତ ହୋଇଛି, ସେମାନେ ହେଲେ- କବି ଡଃ ବିନୋଦ ଚନ୍ଦ୍ର ନାୟକ, ନାଟ୍ୟକାର ପ୍ରାଣବନ୍ଧୁ କର, ସଂସ୍କୃତ ଭାଷାବିତ୍ ଜନସେବୀ କବିରାଜ ପଣ୍ଡିତ କୃଷ୍ଣଚନ୍ଦ୍ର ତ୍ରିପାଠୀଶର୍ମା, ଅଭିନେତା ଦୀନବନ୍ଧୁ ଦାସ (ଟିମା), ସଙ୍ଗୀତପ୍ରବୀଣ ନିତାଇ ଚରଣ ସିହ୍ନା, ସାମ୍ବାଦିକ ରାମଚନ୍ଦ୍ର ଦାଶ ଏବଂ ପ୍ରକାଶକ ସହଦେବ ପ୍ରଧାନ ।

୧୯୯୩ ମସିହାରେ 'ସପ୍ତଗୌରବ' ପୁସ୍ତକ ପ୍ରକାଶଲାଭ କରିଥିଲା । ଏହି ପୁସ୍ତକରେ ଯେଉଁ ମହାନ୍ ବ୍ୟକ୍ତିମାନଙ୍କର ଜୀବନୀ ସଙ୍କଳିତ ହୋଇଛି ସେମାନେ ହେଲେ- ସବୁଜ ଯୁଗର ସାହିତ୍ୟିକ ହରିଶ୍ଚନ୍ଦ୍ର ବଡ଼ାଲ, ଗବେଷକ ଡଃ ବେଣୀମାଧବ ପାଢ଼ୀ, ଯନ୍ତ୍ରସଙ୍ଗୀତ ଶିଳ୍ପୀ ଭକ୍ତବତ୍ସଳ ପାତ୍ର, ଚିତ୍ରଶିଳ୍ପୀ ଅଜିତ କେଶରୀ ରାୟ,

ପଲ୍ଲୀକବି ଗୋଲକଚନ୍ଦ୍ର ପ୍ରଧାନ, ଅଭିନେତା ନିରଞ୍ଜନ ଶତପଥି ଓ ନୃତ୍ୟଗୁରୁ ମାୟାଧର ରାଉତ ।

୧୯୯୪ ମସିହାରେ ପ୍ରକାଶିତ ଜୀବନୀ ପୁସ୍ତକ 'ସପ୍ତର୍ଷି'ରେ ଯେଉଁ ପ୍ରତିଭାଧର ବ୍ୟକ୍ତିମାନଙ୍କର ଜୀବନୀ ସ୍ଥାନ ପାଇଛି ସେମାନେ ହେଲେ- ସାହିତ୍ୟିକ ଲକ୍ଷ୍ମୀଧର ନାୟକ, ଗବେଷକ ଡଃ ଗଙ୍ଗାଧର ବଳ, ଉପାନ୍ତ ଅଞ୍ଚଳର ସାହିତ୍ୟ ସାଧକ ପ୍ରୟାଗ ଦତ୍ତ ଯୋଷୀ, ଚିତ୍ରଶିଳ୍ପୀ ଏବଂ ଜନସେବୀ ତଥା ସଂଗ୍ରାମୀ ନବକିଶୋର ପଟ୍ଟନାୟକ, ସାମ୍ବାଦିକ ରଘୁନାଥ ପାଠୀଶାସ୍ତ୍ରୀ, ଅଭିନେତା ଶରତଚନ୍ଦ୍ର ପୂଜାରୀ ଏବଂ ପ୍ରକାଶକ ଅଭିରାମ ମହାପାତ୍ର ।

ସେହି ୧୯୯୪ ମସିହା ଡିସେମ୍ବର ତା ୧୬ ରିଖ ସଂସଦର ସ୍ଥାୟୀ ସଭାପତି ଡଃ ସଦାଶିବ ମିଶ୍ରଙ୍କ ବିୟୋଗରେ ତାଙ୍କ ସ୍ମୃତି ଉଦ୍ଦେଶ୍ୟରେ 'ଉତ୍କଳ ପାଠକ ସଂସଦ' ପକ୍ଷରୁ ଏକ ସ୍ମୃତି ସମ୍ମାନ ପ୍ରଦାନ କରାଯାଉଛି । ଏହି ସମ୍ମାନ ପ୍ରତ୍ୟେକ ବର୍ଷ ଜଣେ ଜଣେ ପ୍ରତିଭାଧର ବ୍ୟକ୍ତିଙ୍କୁ ଦିଆଯାଉଛି ଓ ତାହା ପାଠକ ସଂସଦର ପରାମର୍ଶଦାତା କମିଟିରେ ସ୍ଥିରୀକୃତ ହେଉଛି ।

୧୯୯୫ ମସିହାରେ 'ଅଷ୍ଟରତ୍ନ' ଜୀବନୀ ପୁସ୍ତକ ପ୍ରକାଶିତ ହୋଇଥିଲା । ଏହି ପୁସ୍ତକରେ ଯେଉଁ ପ୍ରତିଭାଧର ବ୍ୟକ୍ତିମାନଙ୍କର ଜୀବନୀ ସ୍ଥାନିତ ହୋଇଛି, ସେମାନେ ହେଲେ- ଗବେଷକ ପଠାଣି ପଟ୍ଟନାୟକ, କବି ଓ ଗାଳ୍ପିକ ଦୁର୍ଗାମାଧବ ମିଶ୍ର, ଜନସେବୀ ଓ ସଙ୍ଗଠକ ବସନ୍ତ କୁମାର ପାଣିଗ୍ରାହୀ, ସୁସାହିତ୍ୟିକ ଓ ସଙ୍ଗୀତଶିଳ୍ପୀ ଶ୍ରୀମତୀ ବୀଣା ଦେବୀ, ଅଭିନେତା ନଟବର ସେଣ, ଚିତ୍ରଶିଳ୍ପୀ ଉଦୟ ନାରାୟଣ ଜେନା, ଝୁମର ଓ ଛଉନୃତ୍ୟ ବିଶାରଦ ଗିରିଶ ଚନ୍ଦ୍ର ମହାନ୍ତ, ଡଃ ସଦାଶିବ ମିଶ୍ର ସ୍ମୃତି ସମ୍ମାନପ୍ରାପ୍ତ ଔପନ୍ୟାସିକ ଶାନ୍ତନୁ କୁମାର ଆଚାର୍ଯ୍ୟ ।

୧୯୯୬ ମସିହାରେ 'ସପ୍ତସିନ୍ଧୁ' ନାମକ ଏକ ଜୀବନୀ ପୁସ୍ତକ ପ୍ରକାଶିତ ହୋଇ ସମ୍ମାନ ଲାଭ କରିଥିବା ୭ ଜଣ ପ୍ରତିଭାଧର ବ୍ୟକ୍ତିଙ୍କ ଜୀବନୀ ସ୍ଥାନୀତ ହୋଇଛି । ଏହି ପ୍ରତିଭାଧର ବ୍ୟକ୍ତିମାନେ ହେଲେ ଗାଳ୍ପିକ ଓ ଔପନ୍ୟାସିକ କିଶୋରୀ ଚରଣ ଦାସ, ନୃତ୍ୟଶିଳ୍ପୀ ଧୀରେନ୍ଦ୍ର ନାଥ ପଟ୍ଟନାୟକ, ସଙ୍ଗୀତ ଶିଳ୍ପୀ ଶ୍ରୀମତୀ ବୀଣାପାଣି ମହାନ୍ତି, ଅଭିନେତା ଗୋବିନ୍ଦ ତେଜ, ଚିତ୍ରଶିଳ୍ପୀ ସୁନାମଣି ସାମଲ, ପାଲାଶିଳ୍ପୀ ଜଗନ୍ନାଥ ବେହେରା ଓ ଡକ୍ଟର ସଦାଶିବ ସ୍ମୃତି ସମ୍ମାନ ଲାଭ କରିଥିବା ବେଣୁଧର ରାଉତ ।

୧୯୯୭ ମସିହାରେ ପ୍ରକାଶିତ 'ଆମ ସ୍ମରଣୀୟ ପ୍ରତିଭା'ରେ ୮ ଜଣ ପ୍ରତିଭାଧର ବ୍ୟକ୍ତିଙ୍କ ଜୀବନୀ ସ୍ଥାନ ପାଇଛି । ଏହି ସମ୍ମାନିତ ପ୍ରତିଭାଧର ବ୍ୟକ୍ତିମାନେ ହେଲେ- ସାହିତ୍ୟିକ ସାତକଡ଼ି ହୋତା, ଗବେଷକ ଡଃ ଅସିତ କବି, ସଙ୍ଗଠକ ଗିରିଜା ଭୂଷଣ ପଟ୍ଟନାୟକ, ପଲ୍ଲୀକବି ମଦନ ମୋହନ ମିଶ୍ର, ସଙ୍ଗୀତ ଶିଳ୍ପୀ ପଣ୍ଡିମେଶ୍ୱର ଜେନା, ଅଭିନେତା ହେମନ୍ତ କୁମାର ଦାସ, ପ୍ରକୃତିବନ୍ଧୁ ସୁଭାଷ ଚନ୍ଦ୍ର ସିଂ ଓ ଡଃ ସଦାଶିବ ମିଶ୍ର ସ୍ମୃତି ସମ୍ମାନପ୍ରାପ୍ତ ପ୍ରକାଶକ ଗୋବିନ୍ଦ ଚରଣ ପାତ୍ର ।

୧୯୯୮ ମସିହାରେ ପ୍ରକାଶିତ 'ଉତ୍କଳଶ୍ରୀ' ଜୀବନୀ ପୁସ୍ତକରେ ଯେଉଁ ପ୍ରତିଭାଧର ବ୍ୟକ୍ତିମାନଙ୍କ ଜୀବନୀ ପ୍ରକାଶ ପାଇଛି ସେମାନେ ହେଲେ- ସାହିତ୍ୟିକ ମହାପାତ୍ର ନୀଳମଣି ସାହୁ, ସମାଲୋଚକ ଓ ଗବେଷକ ଡକ୍ଟର କୃଷ୍ଣ ଚରଣ ବେହେରା, ସାହିତ୍ୟିକ ଓ ସାମ୍ବାଦିକ ରଜନୀକାନ୍ତ ଦାସ, ସଙ୍ଗୀତ ଶିଳ୍ପୀ ଭିକାରୀ ଚରଣ ବଳ, ନୃତ୍ୟଶିଳ୍ପୀ ମାଗୁଣି ଚରଣ ଦାସ, ହରିକଥା ପରିବେଷକ ଗନ୍ଧସାଗର ଲଡୁକିଶୋର ପାଣି ଓ ସଦାଶିବ ମିଶ୍ର ସ୍ମୃତି ସମ୍ମାନ ଲାଭ କରିଥିବା ଐତିହାସିକ ଡକ୍ଟର ଜଗନ୍ନାଥ ପଟ୍ଟନାୟକ ।

୧୯୯୯ ମସିହାରେ ଯେଉଁମାନେ ସମ୍ମାନିତ ହେଲେ ସେମାନେ ହେଲେ- ଅର୍ଥଶାସ୍ତ୍ରବିତ୍ ଡଃ ଦେବେନ୍ଦ୍ର ଚନ୍ଦ୍ର ମିଶ୍ର, ସୁ-ସାହିତ୍ୟିକ ଓ ଗାଳ୍ପିକ ଶ୍ରୀ ଅଚ୍ୟୁତାନନ୍ଦ ପତି, ପ୍ରବୀଣ ସମାଲୋଚକ ଓ ଗବେଷକ ଡଃ ବିଚିତ୍ରାନନ୍ଦ ମହାନ୍ତି, ସୁ-ସାମ୍ବାଦିକ ଓ ସାହିତ୍ୟିକ ପ୍ରଫେସର ଚିନ୍ତାମଣି ମହାପାତ୍ର, ଅଭିନୟ ନିପୁଣା ଶ୍ରୀମତୀ ଗ୍ଲୋରିଆ ମହାନ୍ତି, ପ୍ରବୀଣ ପ୍ରକାଶକ ଓ ଅନୁବାଦକ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଦାସ, ସଦାଶିବ ସ୍ମୃତି ସମ୍ମାନପ୍ରାପ୍ତ ପଲ୍ଲୀକବି ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ । ଏମାନଙ୍କ ଜୀବନୀ 'ଓଡ଼ିଶାର ବରପୁତ୍ର' ପୁସ୍ତକରେ ସ୍ଥାନିତ ହୋଇଛି ।

୨୦୦୦ ମସିହାରେ ଯେଉଁ ପ୍ରତିଭାଧର ବ୍ୟକ୍ତିମାନେ ସମ୍ମାନିତ ହେଲେ ସେମାନେ ହେଲେ- ଐତିହାସିକ ଗବେଷକ ଡଃ କରୁଣା ସାଗର ବେହେରା, ଅର୍ଥନୀତିଜ୍ଞ ଡକ୍ଟର ବୈଦ୍ୟନାଥ ମିଶ୍ର, ଔପନ୍ୟାସିକ ତଥା ସୁସାହିତ୍ୟିକ ବଳରାମ ପଟ୍ଟନାୟକ, ନୃତ୍ୟଗୁରୁ ଗଙ୍ଗାଧର ପ୍ରଧାନ, ପ୍ରଖ୍ୟାତ ସଙ୍ଗୀତ ଶିଳ୍ପୀ ଶାନ୍ତନୁ ମହାପାତ୍ର, ସୁପ୍ରସିଦ୍ଧ ସମାଲୋଚକ ଡଃ କାହ୍ନୁଚରଣ ମିଶ୍ର ଏବଂ ଅଭିନେତା ଓ ଶିଳ୍ପୀ କୃଷ୍ଣଚନ୍ଦ୍ର ରଥ । ଏହି ମହାନ୍ ବ୍ୟକ୍ତିଙ୍କ ଜୀବନୀ 'ସପ୍ତ ସାଗର' ପୁସ୍ତକରେ ପ୍ରକାଶିତ ହୋଇଛି ।

୨୦୦୦ ମସିହା ଓଡ଼ିଶା ପାଇଁ ଥିଲା ଏକ ବିପଦଜନକ ବର୍ଷ । ଏହିବର୍ଷ ଅର୍ଥାତ୍ ୧୯୯୯ ମସିହା ଅକ୍ଟୋବର ମାସରେ ପ୍ରଳୟଙ୍କରୀ ବାତ୍ୟା ଫଳରେ

ଜୀବନଯାତ୍ରା ଇତସ୍ତତଃ ଓ ଛିନ୍ନବିଚ୍ଛିନ୍ନ ହୋଇଯାଇଥିଲା । ସମସ୍ତ ସାଂସ୍କୃତିକ କାର୍ଯ୍ୟକ୍ରମ, ଦୁର୍ଗାପୂଜା ଓ ଦୀପାବଳି ଆଦି ଉତ୍ସବମାନ ବନ୍ଦ କରାଯାଇ ଏକରକମ ଶୋକପ୍ରକାଶ କରାଯାଇଥିଲା କହିଲେ ଚଳେ । ଏ ବିପଦର ସୀମାରେଖା କେତେଦିନ ପର୍ଯ୍ୟନ୍ତ ଯେ ଗତି କରିଥିଲା ତାହା କହିହେବ ନାହିଁ । ତାହାର ପଦଚିହ୍ନ ଏବେବି ସୁସ୍ପଷ୍ଟ । କିନ୍ତୁ ସବୁଠାରୁ ଅଧିକ କ୍ଷତିଗ୍ରସ୍ତ ଏରସମା ଅଞ୍ଚଳର ଅଧିବାସୀମାନେ ମାତ୍ର କେତୋଟି ମାସ ପରେ ଅର୍ଥାତ୍ ନଭେମ୍ବର, ଡିସେମ୍ବର, ଜାନୁଆରୀ ମାସ ପରେ ଆସି ଆମ ନିକଟରେ ଦାବୀ କଲେ; ଏରସମାଠାରେ 'ଉତ୍କଳ ପାଠକ ସଂସଦ'ର ଗ୍ରାମ୍ୟ ଅଧିବେଶନ କରିବା ନିମନ୍ତେ । ସେମାନେ କହିଲେ- ଆମେ କେବଳ କାନ୍ଦି କାନ୍ଦି ଆଖିରୁ ଲୁହ ଶେଷ ହୋଇଗଲାଣି, ଏବେ ଟିକେ ସାଂସ୍କୃତିକ ସ୍ରୋତରେ ଆମେ ସାମିଲ୍ ହେବାକୁ ଚାହୁଁ । ଏକଥା ଶୁଣି ଆମେ ମନା କରିପାରିଲୁ ନାହିଁ । ଶ୍ରୀ ଶୁଭନାରାୟଣ ସ୍ୱାଇଁ, ଏରସମା ସ୍ୱଭାବ ସାହିତ୍ୟ ସମିତିର ସଙ୍ଗଠନ ସମ୍ପାଦକ ହୃଷୀକେଶ ଜେନା, ପାଲାଶିଳ୍ପୀ ଜଗନ୍ନାଥ ବେହେରା, ଉଚ୍ଚବିଦ୍ୟାଳୟର ପ୍ରଧାନଶିକ୍ଷକ ଶ୍ରୀ ନିତ୍ୟାନନ୍ଦ ଲେଙ୍କା, ଶିକ୍ଷକ ଶ୍ରୀ ଯୁଗଳ କିଶୋର ଶତପଥୀ ଏବଂ ଏରସମାର ଅଗଣିତ ବ୍ୟକ୍ତି ଯଥା- ସାମ୍ବାଦିକ, ସାହିତ୍ୟିକ, ଶିକ୍ଷକ, ଛାତ୍ରଛାତ୍ରୀ ଓ ସାଧାରଣ ନାଗରିକଙ୍କ ସମ୍ପୂର୍ଣ୍ଣ ସହଯୋଗରେ 'ଉତ୍କଳ ପାଠକ ସଂସଦ'ର ଗ୍ରାମ୍ୟ ଅଧିବେଶନ ଏଠାରେ ଅନୁଷ୍ଠିତ ହେଲା । ଓଡ଼ିଶାର ବିଭିନ୍ନ ଅଞ୍ଚଳର ପ୍ରାୟ ୧୫୦ରୁ ଅଧିକ ସାହିତ୍ୟିକ ଏଥିରେ ଯୋଗଦେଇ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କଲେ । ସରକାରୀ କର୍ମଚାରୀମାନେ ମଧ୍ୟ ସହଯୋଗର ହାତ ବଢ଼ାଇଦେଲେ । ଏହିଦିନଠାରୁ ପୁଣି ଏକ ନୂତନ ସ୍ରୋତ ପ୍ରବାହିତ ହେବାକୁ ଲାଗିଲା ପ୍ରପୀଡ଼ିତ ଏରସମାର ଧମନୀରେ ।

କିନ୍ତୁ ଦୁଃଖର ବିଷୟ ଯେ; କେତେକ ଅନିବାର୍ଯ୍ୟ କାରଣବଶତଃ ଏବର୍ଷ ଆମେ ଗ୍ରାମ୍ୟ ଅଧିବେଶନ କରିପାରି ନାହୁଁ । ଯଦିଓ କିଶୋରନଗର, ତିର୍ତ୍ତୋଲ ଓ ଦଶପଲ୍ଲା ପ୍ରଭୃତି ଅଞ୍ଚଳରୁ ଅଧିବେଶନ ପାଇଁ ଆମ ପାଖକୁ ଆମନ୍ତ୍ରଣ ଆସିଥିଲା । କିନ୍ତୁ ଭବିଷ୍ୟତ ବର୍ଷମାନଙ୍କରେ ଆମେ ଆମ ପରମ୍ପରାକୁ ଅକ୍ଷୁଣ୍ଣ ରଖି କାର୍ଯ୍ୟକ୍ରମକୁ ଆଗେଇନେବୁ ।

ଚଳିତ ବର୍ଷ ୮ ଜଣ ପ୍ରତିଭାଧର ବ୍ୟକ୍ତିଙ୍କୁ ଆମେ ସମ୍ମାନିତ କରୁଛୁ । ଏହି ପ୍ରତିଭାଧର ବ୍ୟକ୍ତିମାନଙ୍କ ମଧ୍ୟରୁ ପ୍ରବୀଣ ଶିକ୍ଷାବିତ୍, ସୁ-ସାହିତ୍ୟିକ, ସମାଲୋଚକ ଶ୍ରୀ ଗୌରୀକୁମାର ବ୍ରହ୍ମାଙ୍କୁ 'ବାଗ୍ମୀ ବିଶ୍ୱନାଥ ସାରସ୍ୱତ ସମ୍ମାନ'ରେ ସମ୍ମାନିତ କରାଯାଇ 'ସାହିତ୍ୟ ରତ୍ନାକର' ଉପାଧି; ପ୍ରସିଦ୍ଧ ସମାଲୋଚକ,

ଭାଷାବିଜ୍ଞାନୀ ଡଃ ଦେବୀପ୍ରସନ୍ନ ପଟ୍ଟନାୟକଙ୍କୁ 'ଡଃ ସଦାଶିବ ମିଶ୍ର ସ୍ମୃତି ସମ୍ମାନ'ରେ ସମ୍ମାନିତ କରାଯାଇ 'ଭାଷା-ଭାରତୀ' ଉପାଧି; ସୁ-ସାହିତ୍ୟିକ, ଅଧ୍ୟାତ୍ମବାଦୀ, ବରେଣ୍ୟ ଜନସେବୀ ଶ୍ରୀ ହରିହର ବାହିନୀପତିଙ୍କୁ 'ଡଃ ହରେକୃଷ୍ଣ ମହତାବ ସ୍ମୃତି ସମ୍ମାନ'ରେ ସମ୍ମାନିତ କରାଯାଇ 'ସେବକରତ୍ନ' ଉପାଧି; ଜର୍ମାନଠାରେ ଅବସ୍ଥାପିତ ସଂସ୍କୃତିପ୍ରେମୀ ଇଞ୍ଜିନିୟର ଶ୍ରୀ ରାଜେନ୍ଦ୍ର ନାରାୟଣ ଦାସଙ୍କୁ 'ବାଇମୁଣ୍ଡି ପ୍ରତିଭା ସମ୍ମାନ'ରେ ସମ୍ମାନିତ କରାଯାଇ 'ଉତ୍କଳ ବିଶ୍ୱକର୍ମା' ଉପାଧି; ପ୍ରସିଦ୍ଧ ନାଟ୍ୟକାର, ଚଳଚିତ୍ର ନିର୍ଦ୍ଦେଶକ ଶ୍ରୀ ସାରଦା ପ୍ରସନ୍ନ ନାୟକଙ୍କୁ 'ଡଃ ରାଧାନାଥ ରଥ ସ୍ମୃତି ସମ୍ମାନ'ରେ ସମ୍ମାନିତ କରାଯାଇ 'ନାଟ୍ୟଶ୍ରୀ' ଉପାଧି; ପ୍ରଖ୍ୟାତ ସଙ୍ଗୀତଶିଳ୍ପୀ ସୁରମଣି ଶ୍ରୀ ରଘୁନାଥ ପାଣିଗ୍ରାହୀଙ୍କୁ 'ଗୋକୁଳ ଶ୍ରୀଚନ୍ଦନ ସ୍ମୃତି ସମ୍ମାନ'ରେ ସମ୍ମାନିତ କରାଯାଇ 'ସଙ୍ଗୀତ ବାରିଧି' ଉପାଧି; ଶିଶୁ ସାହିତ୍ୟିକ ଶ୍ରୀ ବାସୁଦେବ ମହାପାତ୍ରଙ୍କୁ 'ଗୋବିନ୍ଦଚରଣ ପ୍ରତିଭା ସମ୍ମାନ' ପ୍ରଦାନ କରାଯାଇ 'ଶିଶୁସାହିତ୍ୟଶ୍ରୀ' ଉପାଧି ଏବଂ ପ୍ରଖ୍ୟାତ ସାଂସ୍କୃତିକ ସଙ୍ଗଠକ ଶ୍ରୀ ସତ୍ୟନାରାୟଣ ଅଗ୍ରୱାଲାଙ୍କୁ 'ପ୍ରଫୁଲ୍ଲ-ସୁଭଦ୍ରା ପ୍ରତିଭା ସମ୍ମାନ'ରେ ସମ୍ମାନିତ କରାଯାଇ 'ସଂସ୍କୃତି ଗୌରବ' ଉପାଧି ପ୍ରଦାନ କରାଯିବାକୁ ସ୍ଥିର ହୋଇଛି । ମାନପତ୍ର ଏବଂ ଉତ୍ତରୀୟ ସହିତ ଏକ ମନୋଜ୍ଞ ଉତ୍ସବରେ ଏହି ଉପାଧି ପ୍ରଦାନ କରାଯିବ ।

ଆମେ ଆଶାକରୁ ଆମର ଏ ଉଦ୍ୟମ ଓଡ଼ିଶାର ପାଠକ-ପାଠିକାଙ୍କ ନିକଟରେ ପ୍ରତିଭାଧର ବ୍ୟକ୍ତିମାନଙ୍କୁ ପରିଚିତ କରାଇବାରେ ସହାୟକ ହେବ । ତଥାପି ଏ ଉଦ୍ୟମ ଯଥେଷ୍ଟ ନୁହେଁ । ଏ ଦିଗରେ ଆହୁରି କିଛି ନୂତନ ପଦକ୍ଷେପ ନିଆଗଲେ ଓଡ଼ିଶାର ଅଗଣିତ ପାଠକ-ପାଠିକା ନିଶ୍ଚୟ ଉପକୃତ ହେବେ । ଆମ ବିଚାରରେ ଓଡ଼ିଶାର ବହୁ ପ୍ରତିଭାଧର ବ୍ୟକ୍ତି ଲୁକ୍କାୟିତ ହୋଇ ରହିଯାଇଛନ୍ତି । ସେମାନଙ୍କ ଜୀବନୀ ଆଲୋକକୁ ଏଯାବତ୍ ଆସିପାରିନାହିଁ । ଏହିଭଳି କେତେକ ବ୍ୟକ୍ତିଙ୍କ ଜୀବନୀ ସଂଗ୍ରହ କରି କେତୋଟି ବିଶେଷ ସଙ୍କଳନରେ ପ୍ରକାଶ କରିବାପାଇଁ ଆଗ୍ରହ ରହିଛି । ଲେଖକମାନେ ଏ ଦିଗରେ ଆମକୁ ସହଯୋଗ କଲେ ଆମେ ସଫଳ ହୋଇପାରିବୁ ବୋଲି ଆଶା କରୁଛୁ । ଏଠାରେ କେତେଜଣଙ୍କ ନାମୋଲ୍ଲେଖ କରାଯାଇପାରେ । ଯଥା- ବଡ଼ମ୍ବାର ମୋହନ ସୁବୁଦ୍ଧି; ଯାଜପୁରର ନରସିଂହ ଚୌଧୁରୀ, ଧନେଶ୍ୱର ମହାରଣା, ସୋରର ଉପେନ୍ଦ୍ର ପ୍ରଧାନ, ସମ୍ବଲପୁରର ଭରତ ନାଏକ, ଚନ୍ଦ୍ରଶେଖର ବେହେରା, କୃତାର୍ଥ ଆଚାର୍ଯ୍ୟ, କୋରାପୁଟର ରାଧାକୃଷ୍ଣ ବିଶ୍ୱାସରାୟ, ହିଞ୍ଜିଳିକାଟୁର ବୃନ୍ଦାବନ ନାୟକ, ପ୍ରଖ୍ୟାତ ସମାଜସେବୀ ଶ୍ରୀମତୀ

ମାଳତୀ ଚୌଧୁରୀ ଏବଂ ସେହିଭଳି ଅଗଣିତ ବ୍ୟକ୍ତି ରହିଛନ୍ତି; ଯେଉଁମାନେ ଓଡ଼ିଶାର ବନ୍ଦନୀୟ ଓ ସ୍ମରଣୀୟ ପ୍ରତିଭା । ସେହିପରି ଇଂରେଜ ଶାସନର ପୂର୍ବବର୍ତ୍ତୀ ଅନେକ ପ୍ରତିଭାଧର ବ୍ୟକ୍ତି ରହିଛନ୍ତି, ଯେଉଁମାନଙ୍କୁ ଆମେ ଆଲୋକକୁ ଆଣିବାର ଆବଶ୍ୟକତା ରହିଛି । ଯଥା- ଲାଲ୍ ଅବଧୂତ, ଗୋପାଳ ଖଣ୍ଡକ, ଶ୍ରୀଧର ସ୍ୱାମୀ, ମୁରାରୀ ମିଶ୍ର, ଲକ୍ଷେଶ୍ୱର ରଥ, ଶତାନନ୍ଦ, କୃଷ୍ଣଚନ୍ଦ୍ର ରାଜଗୁରୁ ମହାପାତ୍ର, ଜଗଦୀଶ ଚନ୍ଦ୍ର ମିଶ୍ର ପ୍ରମୁଖ ଓ ସ୍ୱାଧୀନତା ପରବର୍ତ୍ତୀ ତଥା ସାମ୍ପ୍ରତିକ ସମୟର ଅନେକ ବ୍ୟକ୍ତି ଗ୍ରାମାଞ୍ଚଳରେ ରହିଯାଇଛନ୍ତି, ଯେଉଁମାନଙ୍କୁ ଆଲୋକକୁ ଆଣିବାର ଆବଶ୍ୟକତା ରହିଛି । ଏମାନଙ୍କ ମଧ୍ୟରେ ଅଛନ୍ତି- ବାଦ୍ୟଶିଳ୍ପୀ, ସାହିତ୍ୟ ସାଧକ, ଚିତ୍ରଶିଳ୍ପୀ, ଭାସ୍କର ଏବଂ ଅନ୍ୟାନ୍ୟ ପ୍ରତିଭାଧର ବ୍ୟକ୍ତି ।

ଓଡ଼ିଶାର ଶିକ୍ଷିତ ଜନସାଧାରଣ ଯଦି ଏ ଦିଗରେ ସାହାଯ୍ୟ କରିପାରନ୍ତି, ତେବେ ଆମ୍ଭେ ଉପକୃତ ହେବୁ । ଏହା ସହିତ ଆଉ କେତୋଟି ଗୁରୁଦାୟିତ୍ୱ ଆମର ରହିଛି । ଯଥା- ଏଯାବତ୍ ଓଡ଼ିଶା ବିଷୟରେ ଜାଣିବା ପାଇଁ ଖଣ୍ଡେ ଭଲ ବହି ନାହିଁ । ତେଣୁ ଆମ ଓଡ଼ିଶା- ଆମେ ଓଡ଼ିଆ ସମ୍ପର୍କରେ ଖଣ୍ଡିଏ ପୁସ୍ତକ ଆମେ ପ୍ରକାଶ କରିବୁ ଓ ଓଡ଼ିଶା ଯେଉଁଥିପାଇଁ ଗର୍ବିତ ଅର୍ଥାତ୍ ଦେବଦେବୀ, ମନ୍ଦିର ସଂସ୍କୃତି, କଳା-ଭାସ୍କର୍ଯ୍ୟ ତଥା ଐତିହାସିକ ସ୍ମୃତିପୀଠମାନଙ୍କ ଉପରେ ଆମେ ଏକ ସଙ୍କଳନ ପ୍ରକାଶ କରିବାକୁ ଚାହୁଁ ।

କିନ୍ତୁ ହଠାତ୍ ପୃଥିବୀରେ ଯେଉଁ ଭୟଙ୍କର ପରିସ୍ଥିତି ସୃଷ୍ଟି ହୋଇଛି ତାହା ଆପଣଙ୍କୁ ଚକିତ କରୁଥିବ । ଏବର୍ଷ ଜାନୁଆରୀ ୨୬ ତାରିଖ ସାଧାରଣତନ୍ତ୍ର ଦିବସ ଠାରୁ ଭୂମିକମ୍ପ ଲାଗିରହିଛି । ଭାରତର ଗୁଜରାଟରେ ନାହିଁ ନଥିବା କ୍ଷତି ଘଟିବା ସହିତ ଏପର୍ଯ୍ୟନ୍ତ ୧୮,୩୫୦ ବ୍ୟକ୍ତିଙ୍କର ଶବ ଉଦ୍ଧାର ହୋଇସାରିଲାଣି । ଏହି ବ୍ୟକ୍ତିମାନଙ୍କର ଅମର ଆତ୍ମାର ସଦ୍‌ଗତି ପାଇଁ ଆମେ ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଛୁ ।

ଏହି ଭୂମିକମ୍ପ ସମଗ୍ର ପୃଥିବୀରେ ମଧ୍ୟ ଆତଙ୍କ ସୃଷ୍ଟି କରିଛି । କାରଣ ଇତିମଧ୍ୟରେ ସୁମାତ୍ରା ଦ୍ୱୀପପୁଞ୍ଜ ପାଖରୁ ଆରମ୍ଭ କରି ସୁଦୂର ଆମେରିକା ଓ କାନାଡ଼ା ପର୍ଯ୍ୟନ୍ତ ବିଭିନ୍ନ ସ୍ଥାନରେ ଭୂମିକମ୍ପନ ଅନୁଭୂତ ହେଉଛି । ଏପରିକି ଦିଲ୍ଲୀ, କଟକ ଓ ଭୁବନେଶ୍ୱରରେ ମଧ୍ୟ ଅନୁଭୂତ ହୋଇଛି ଏହାର କମ୍ପନର ବେଗ । ତେଣୁ ଆମ ପୁରାତନ ସମ୍ପଦଗୁଡ଼ିକ ଯେ କେଉଁଦିନ ଭୁଷୁଡ଼ିପଡ଼ି ମାଟିରେ ମିଶି ନଯିବ ତାହା କହିହେବ ନାହିଁ ।

ସବୁଠାରୁ ଦୁଃଖର କଥା ଯେ; ଏବେ ବିଦେଶରେ ଧର୍ମବିରୋଧୀ କାର୍ଯ୍ୟ ଭୟଙ୍କର ଅବସ୍ଥା ସୃଷ୍ଟି କରିଛି । ଆଫଗାନିସ୍ଥାନର ବିଭିନ୍ନ ଦର୍ଶନୀୟ କେନ୍ଦ୍ରମାନଙ୍କରେ ପ୍ରାୟ ୨ ହଜାର ବର୍ଷ ତଳର ଯେଉଁ ସୁଦୀର୍ଘ ବୁଦ୍ଧମୂର୍ତ୍ତିଗୁଡ଼ିକ ପୃଥିବୀର ଶ୍ରେଷ୍ଠ ମାନ୍ୟତା ଲାଭକରି ପ୍ରତିଷ୍ଠିତ ଥିଲା, ତାକୁ ତାଲିବାନ୍ ସରକାର ଉଦ୍ୟମରେ ଗୋଳାବର୍ଷଣ କରି ଧ୍ୱଂସସ୍ତୂପରେ ପରିଣତ କରିଦେବା କମ୍ ପରିତାପର ବିଷୟ ନୁହେଁ । ଏ ଦେଶ ଭାରତ ଏକ ଧର୍ମନିରପେକ୍ଷ ରାଷ୍ଟ୍ର । ତେଣୁ ଏଠାରେ ଯେ କେତେବେଳେ କେଉଁ ଧର୍ମାବଲମ୍ବୀମାନେ ଶାସନକୁ ଆସିଲେ କ'ଣ କରି ନଦେବେ ତାହା କହିହେବ ନାହିଁ । ଆମେ ଯେଉଁ ପରମ୍ପରାକୁ ମର୍ଯ୍ୟାଦା ପ୍ରଦାନ କରି ଐତିହାସିକ ସ୍ମୃତିପୀଠ ଭାବରେ ପୂଜା କରୁଛୁ, ତାହା ଯେ ଦିନେ ଧୂଳିରେ ମିଶି ନଯିବ; ଏକଥା କେହି ଛାତିରେ ହାତଦେଇ କହିପାରିବେ ନାହିଁ ।

ତଥାପି ହେ ଉଦ୍‌ଭ୍ରାନ୍ତ ଅନ୍ଧ ଧର୍ମବିଶ୍ୱାସୀ ମଣିଷ-ସମାଜ ! ଆଉ ଅନ୍ୟ ଧର୍ମର କୀର୍ତ୍ତିକୁ ଧ୍ୱଂସସ୍ତୂପରେ ପରିଣତ ନକରି, ପ୍ରଲୋଭନ ଦେଖାଇ କିମ୍ବା ଜୋର୍ କରି ଅନ୍ୟ ଧର୍ମର ବ୍ୟକ୍ତିଙ୍କର ଧର୍ମାନ୍ତରୀକରଣ ନକରି, ସ୍ୱଧର୍ମ ଶ୍ରେୟ ନୀତିରେ ସହନଶୀଳ ହୁଅନ୍ତୁ । ପୃଥିବୀ ଧ୍ୱଂସ ଆଡ଼କୁ ଠେଲିହୋଇ ଯାଉଥିବାବେଳେ ମାନବ-ସମାଜର କଲ୍ୟାଣ କଥା ଚିନ୍ତା କରନ୍ତୁ । ଗୁଜୁରାଟ ତଥା ଭୁଜ୍‌ର ଭୂମିକମ୍ପ କାହାକୁ ଛାଡ଼ିଗଲା ? ହିନ୍ଦୁ-ମୁସଲମାନ୍, ଖ୍ରୀଷ୍ଟିଆନ୍, ଶିଖ୍, ଜୈନ ନା ବୌଦ୍ଧଙ୍କୁ ? ଥରେ ସେକଥା ଚିନ୍ତା କରୁଛନ୍ତି ତ ? ମନେପକାନ୍ତୁ ସେଇ ପ୍ରଳୟ ପୟୋଧିଜଳ କଥା । ଯେତେବେଳେ ଅଷ୍ଟ୍ରେଲିଆରୁ ଆମେରିକାକୁ ଲାଗିଥିବା ସେହି ବିରାଟ ଗଣ୍ଡୱାନା-ଲ୍ୟାଣ୍ଡ ଭୂଖଣ୍ଡ ସମୁଦ୍ର ଗର୍ଭରେ ଲୀନ ହୋଇଗଲା । ଶ୍ୱେତପତ୍ରରେ ଭାସୁଥିବା ସେହି ଶେଷ ସନ୍ତକ ପୁଣି ଆରମ୍ଭ କଲା ଏକ ନୂତନ ସୃଷ୍ଟି, ଏକ ନୂତନ ବିଶ୍ୱର ମଣିଷ । ତେବେ ଆସନ୍ତୁ; ସ୍ମୃତିକୁ ଆଧାର କରି, ପ୍ରତିଭାକୁ ସମ୍ମାନ ଦେଇ, ମୂଲ୍ୟବୋଧକୁ ଉପଯୁକ୍ତ ମର୍ଯ୍ୟାଦା ପ୍ରଦାନ ସହିତ ଜୟଗାନ କରିବା ମାନବିକତାର । ଏକବିଂଶ ଶତାବ୍ଦୀର ଆମେ ମଣିଷ-ପଶୁ ହେବାନାହିଁ, ହେବା ହୃଦୟବାନ୍ ମଣିଷ ।

ଶେଷରେ ଅଗଣିତ ପାଠକ-ପାଠିକା, ଲେଖକ, ଦର୍ଶକ, ଶ୍ରୋତା, ଶ୍ରମିକ, କୃଷକ ଓ ସମାଜର ପ୍ରତ୍ୟେକ ସ୍ତରର ବ୍ୟକ୍ତିଙ୍କର ସ୍ନେହ, ସଦ୍ଭାବ ଓ ସଦିଚ୍ଛା ଏହି କ୍ଷୁଦ୍ର ସଂସଦର ସଦସ୍ୟମାନଙ୍କ ଉପରେ ରହିଥାଉ; ଏହାହିଁ କାମନା ।

॥ ଇତି ॥

**ବ୍ରଜମୋହନ ମହାନ୍ତି**

ସମ୍ପାଦକ

## 'ଉତ୍କଳ ପାଠକ ସଂସଦ'ର ସ୍ୱତନ୍ତ୍ର ସଙ୍କଳନ ସାଇତି ରଖିଲାଭଳି ବହି କେତୋଟି

ଓଡ଼ିଶାର ପର୍ବପର୍ବାଣି ଓଷାବ୍ରତ ଯାନିଯାତ୍ରା
ଓଡ଼ିଶାର ଆଞ୍ଚଳିକ ପର୍ବପର୍ବାଣି ଯାନିଯାତ୍ରା
ଓଡ଼ିଶାର ନାରୀ
ଯାହା ଓଡ଼ିଶାର ତାହା ଓଡ଼ିଶୀ
ଓଡ଼ିଶୀ ସଙ୍ଗୀତ
ଓଡ଼ିଶାର ଦେବଦେବୀ ( ୧ମ ଭାଗ )
ଓଡ଼ିଶାର ଦେବଦେବୀ ( ୨ୟ ଭାଗ )
ଓଡ଼ିଶାର ଦେବଦେବୀ (୩ୟ ଭାଗ )
ଓଡ଼ିଶାରେ ସାଧୁସନ୍ଥ ( ୧ମ ଭାଗ )
ଓଡ଼ିଶାରେ ସାଧୁସନ୍ଥ ( ୨ୟ ଭାଗ )
ଓଡ଼ିଶାରେ ସାଧୁସନ୍ଥ (୩ୟ ଭାଗ )
ଓଡ଼ିଶାର ଭକ୍ତକବି ( ୧ମ ଭାଗ )
ଓଡ଼ିଶାର ଭକ୍ତକବି ( ୨ୟ ଭାଗ )
ଓଡ଼ିଶାର ସାଂସ୍କୃତିକ ପରମ୍ପରା ( ୧ମ ଭାଗ )
ଓଡ଼ିଶାର ସାଂସ୍କୃତିକ ପରମ୍ପରା ( ୨ୟ ଭାଗ )
ନଗର କଟକ ( ୧ମ ଭାଗ )
ନଗର କଟକ ଓ ପଞ୍ଚ କଟକ ( ୨ୟ ଭାଗ )
ଆଧୁନିକ ନଗର କଟକ (୩ୟ ଭାଗ )
ଏକାମ୍ର କ୍ଷେତ୍ର
ବିରଜା କ୍ଷେତ୍ର
ଆମ ସାଂସ୍କୃତିକ ପରମ୍ପରାରେ ଓଡ଼ିଶୀ ସଙ୍ଗୀତ
ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମ ( ୧ମ ଭାଗ )
ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମ ( ୨ୟ ଭାଗ )
ଶ୍ରୀକ୍ଷେତ୍ର ଶ୍ରୀଜଗନ୍ନାଥ ( ୧ମ ଭାଗ )
ଶ୍ରୀକ୍ଷେତ୍ର ଶ୍ରୀଜଗନ୍ନାଥ ( ୨ୟ ଭାଗ )
ଶ୍ରୀକ୍ଷେତ୍ର ଶ୍ରୀଜଗନ୍ନାଥ (୩ୟ ଭାଗ )
ପୁରାଣ ପରିକ୍ରମା ( ୧ମ ଭାଗ )
ପୁରାଣ ପରିକ୍ରମା ( ୨ୟ ଭାଗ )
ପୁରାଣ ପରିକ୍ରମା (୩ୟ ଭାଗ ) ଭାଗବୃତ ପୁରାଣ

## 'ଉତ୍କଳ ପାଠକ ସଂସଦ' ଦ୍ୱାରା ପ୍ରକାଶିତ ଜୀବନୀ ପୁସ୍ତକ

୧ । ୧୯୭୬ : ପ୍ରତିଭା ପରିଚୟ
୨ । ୧୯୭୭ : ସପ୍ତ ରଶ୍ମି
୩ । ୧୯୭୮ : ସପ୍ତ ଶିଖା
୪ । ୧୯୭୯ : ସପ୍ତ ପ୍ରଦୀପ
୫ । ୧୯୮୦ : ସପ୍ତ ଶ୍ରୀ
୬ । ୧୯୮୧ : ସପ୍ତ ଜ୍ୟୋତି
୭ । ୧୯୮୨ : ସପ୍ତ ପୁଷ୍ପ
୮ । ୧୯୮୩ : ସପ୍ତ ରାଗ
୯ । ୧୯୮୪ : ସପ୍ତ ସୁମନ
୧୦ । ୧୯୮୫ : ସପ୍ତ ସ୍ତବକ
୧୧ । ୧୯୮୬ : ସପ୍ତ ତରଙ୍ଗ
୧୨ । ୧୯୮୭ : ସପ୍ତ ପ୍ରଭା
୧୩ । ୧୯୮୮ : ସପ୍ତ ଧାରା
୧୪ । ୧୯୮୯ : ସପ୍ତ ଶାଖା
୧୫ । ୧୯୯୦ : ସପ୍ତ ତାରକା
୧୬ । ୧୯୯୧ : ସପ୍ତ ସୌରଭ
୧୭ । ୧୯୯୨ : ସପ୍ତ ସାଧକ
୧୮ । ୧୯୯୩ : ସପ୍ତ ଗୌରବ
୧୯ । ୧୯୯୪ : ସପ୍ତର୍ଷି
୨୦ । ୧୯୯୫ : ଅଷ୍ଟରତ୍ନ
୨୧ । ୧୯୯୬ : ସପ୍ତ ସିନ୍ଧୁ
୨୨ । ୧୯୯୭ : ଆମ ସ୍ମରଣୀୟ ପ୍ରତିଭା
୨୩ । ୧୯୯୮ : ଉତ୍କଳ ଶ୍ରୀ
୨୪ । ୧୯୯୯ : ଓଡ଼ିଶାର ବରପୁତ୍ର
୨୫ । ୨୦୦୦ : ସପ୍ତ ସାଗର
୨୬ । ୨୦୦୧ : ସାରସ୍ୱତ ସାଧକ

# ସାହିତ୍ୟଶ୍ରୀ : ଶ୍ରୀ ଗୌରୀ କୁମାର ବ୍ରହ୍ମା

ଡକ୍ଟର ପ୍ରଫୁଲ୍ଲ କୁମାର ଦାଶ

ଗତ ଅର୍ଦ୍ଧ ଶତାବ୍ଦୀରୁ ଅଧିକ କାଳ ଧରି ଓଡ଼ିଆ ସମାଲୋଚନା ସାହିତ୍ୟରେ ଗୌରବମୟ ସ୍ଥାନ ଅଧିକାର କରିଥିବା ଉତ୍କଳର ବରପୁତ୍ରମାନଙ୍କ ମଧ୍ୟରେ ଶ୍ରୀଯୁକ୍ତ ଗୌରୀ କୁମାର ବ୍ରହ୍ମା ଆମ୍ଭମାନଙ୍କର ଦୃଷ୍ଟି ଆକର୍ଷଣ କରିଥା'ନ୍ତି । ତାହାଙ୍କର ସାହିତ୍ୟସୃଷ୍ଟି ତଥା ଭାଷଣମୟ ଜୀବନର କୃତିତ୍ୱ ଓ ଲୋକପ୍ରିୟତା ବିଷୟ ଆଲୋଚନା କରିବାକୁ ଗଲାବେଳେ ମହାକବି କାଳିଦାସଙ୍କର ଏକ ଉକ୍ତି ଉଦ୍ଧାର କରିବା ଯଥାର୍ଥ ମନେହୁଏ । ସେହି ଉକ୍ତିଟି ହେଉଛି-

> ''ହରି ର୍ଯଥୈକ ପୁରୁଷୋତ୍ତମ ସ୍ମୃତଃ
> ମହେଶ୍ୱର ସ୍ତ୍ର୍ୟମ୍ବକ ଏବ ନାପରଃ ।
> ଯଥା ବିଦୁର୍ମାଂ ମୁନୟଃ ଶତକ୍ରତୁଂ
> ଦ୍ୱିତୀୟଗାମୀ ନହି ଶବ୍ଦ ଏଷ ନଃ ।''

ଅର୍ଥାତ୍ 'ହରି' ଶବ୍ଦର ବହୁ ଅର୍ଥ ଥିଲେ ମଧ୍ୟ ଏହା ମୁଖ୍ୟତଃ ବିଷ୍ଣୁଙ୍କୁ ହିଁ ବୁଝାଇଥାଏ । ସେହିପରି 'ମହେଶ୍ୱର' ଶବ୍ଦର ବହୁ ଅର୍ଥ ରହିଛି । ମାତ୍ର ଏହା ମୁଖ୍ୟତଃ ଶିବଙ୍କୁ ହିଁ ବୁଝାଇଥାଏ । 'ଶତକ୍ରତୁ' ଶବ୍ଦର ସାଧାରଣ ଅର୍ଥ ହେଉଛି ଶହେଗୋଟି ଯଜ୍ଞ ଅନୁଷ୍ଠାନ କରିଥିବା ବ୍ୟକ୍ତି । ମାତ୍ର 'ଶତକ୍ରତୁ' କହିଲେ ମୁଖ୍ୟତଃ ଇନ୍ଦ୍ରଙ୍କୁ ହିଁ ବୁଝାଇଥାଏ । ମୁଖ୍ୟାର୍ଥ ବିଚାରରେ ଏହି ଶବ୍ଦଗୁଡ଼ିକ 'ଦ୍ୱିତୀୟଗାମୀ' ନୁହନ୍ତି ।

ଏହି ମର୍ମରେ ବିଚାର କରିବାକୁ ଗଲେ; ଓଡ଼ିଶାରେ 'ଅଧ୍ୟାପକ ବ୍ରହ୍ମା' କହିଲେ ଅଧ୍ୟାପକ ଗୌରୀ କୁମାର ବ୍ରହ୍ମାଙ୍କୁ ହିଁ ବୁଝାଇଥାଏ । ସେ ହେଉଛନ୍ତି ଏକାଧାରରେ ଅନର୍ଗଳ ବକ୍ତା, ହଜାର ହଜାର ପୃଷ୍ଠାର ଲେଖକ, ପ୍ରାଚୀନ ଓଡ଼ିଆ ସାହିତ୍ୟର ଏକନିଷ୍ଠ ସେବକ ଓ ସାଧକ, ଭଞ୍ଜ ସାହିତ୍ୟର ଅଦ୍ୱିତୀୟ ସମାଲୋଚକ ଓ ଟୀକାକାର ତଥା ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟର ସୁଦକ୍ଷ ରସଗ୍ରାହକ । ଓଡ଼ିଆ, ସଂସ୍କୃତ ଓ ଇଂରାଜୀ ଏହି ତିନିଗୋଟି ଭାଷାରେ ଅନର୍ଗଳ ଭାଷଣ ଦେଇ ସେ ଭାରତର ସୁବିଖ୍ୟାତ ବକ୍ତାମାନଙ୍କ ମଧ୍ୟରେ ଯେଉଁ ମହାନ୍ ଆସନ ଲାଭ କରିଛନ୍ତି,

ତାହା କେବଳ ତାହାଙ୍କର ବ୍ୟକ୍ତିଗତ ଗୌରବ ବର୍ଦ୍ଧନ କରିନାହିଁ, ତଦ୍ ସହିତ ଉତ୍କଳୀୟମାନଙ୍କର ଗୌରବ ମଧ୍ୟ ବୃଦ୍ଧି କରିଛି । ଉତ୍କଳର ଏହି ବରପୁତ୍ରମାନଙ୍କର ଜୀବନୀ ଆଲୋଚନା ଓଡ଼ିଆମାନଙ୍କ ପାଇଁ ଏକ ସୌଭାଗ୍ୟର ବିଷୟ ମନେହୁଏ । ନିମ୍ନରେ ସଂକ୍ଷେପରେ ତାହାଙ୍କ ଘଟଣାବହୁଳ ଜୀବନୀ ଉପରେ କିଞ୍ଚିତ୍ ଆଲୋକପାତ କରାଯାଉଛି ।

**ବଂଶ ପରିଚୟ ଓ ଜନ୍ମସ୍ଥାନ :**

ଦକ୍ଷିଣ ଓଡ଼ିଶାର ସୁବିଖ୍ୟାତ ବ୍ରହ୍ମପୁର ସହରଠାରୁ ଆସିକା ବାଟଦେଇ ଭଞ୍ଜନଗର ସହରକୁ ଯେଉଁ ରାଜମାର୍ଗ ଯାଇଛି, ସେହି ମାର୍ଗରେ ପ୍ରାୟ ୨୪ କିଲୋମିଟର ଗଲେ 'କ୍ଷତ୍ରିୟ ବରପୁର' ନାମକ ବ୍ରାହ୍ମଣ ଗ୍ରାମ (ଶାସନ) ପଡ଼େ । ସେହି ଗ୍ରାମର ପ୍ରାୟ ଦୁଇ କିଲୋମିଟର ପଶ୍ଚିମରେ 'ପ୍ରତାପ ଲକ୍ଷ୍ମଣପୁର' ନାମକ ଅନ୍ୟ ଏକ ବ୍ରାହ୍ମଣ ଶାସନ ଅବସ୍ଥିତ । ଅଧ୍ୟାପକ ବ୍ରହ୍ମାଙ୍କ ପିତା ସ୍ୱର୍ଗତ ପଣ୍ଡିତ ଚନ୍ଦ୍ରଶେଖର ବ୍ରହ୍ମା ଏହି ଗ୍ରାମର ଅଧିବାସୀ ଥିଲେ । ତାହାଙ୍କର ପୂର୍ବପୁରୁଷ ପୁରୀ ନିକଟବର୍ତ୍ତୀ ବୀର ନରସିଂହପୁର ଗ୍ରାମର ଅଧିବାସୀ ଥିଲେ । ଘୁମୁସରର ରାଜାଙ୍କ ନିମନ୍ତ୍ରଣ କ୍ରମେ ଜଣେ ପୂର୍ବପୁରୁଷ ଉକ୍ତ ପ୍ରତାପଲକ୍ଷ୍ମଣପୁରରେ ଯାଇ ଅବସ୍ଥାନ କରିଥିଲେ । ପ୍ରତାପଲକ୍ଷ୍ମଣପୁର ପରବର୍ତ୍ତୀ କାଳରେ 'ପରଶୁଲୁଣ୍ଡା' ନାମରେ ମଧ୍ୟ ସୁପରିଚିତ । ଶ୍ରୀଯୁକ୍ତ ବ୍ରହ୍ମା ତାହାଙ୍କର ମାତୁଳାଳୟ ଭଞ୍ଜନଗର ନିକଟବର୍ତ୍ତୀ ଷଡ଼ଙ୍ଗୀପଲ୍ଲୀ ଶାସନରେ ଜନ୍ମଲାଭ କରିଥିଲେ ।

ତାହାଙ୍କର ଜନ୍ମ ଓ ନାମକରଣ ସମ୍ପର୍କରେ ଏକ ଘଟଣା ମୁଁ ମୋର ସ୍ୱର୍ଗତ ପିତୃଦେବଙ୍କ (ସେ ସ୍ୱର୍ଗତ ଚନ୍ଦ୍ରଶେଖର ବ୍ରହ୍ମାଙ୍କର ପ୍ରିୟ ଶିଷ୍ୟ ଥିଲେ ଏବଂ ତାହାଙ୍କଠାରୁ ଅଷ୍ଟାଦଶ ବିଦ୍ୟା ଅଧ୍ୟୟନ କରିଥିଲେ ।) ମୁଖରୁ ଶୁଣିଥିଲି । ଘଟଣାଟି ହେଉଛି- ପଣ୍ଡିତ ଚନ୍ଦ୍ରଶେଖର ବ୍ରହ୍ମାଙ୍କର ଧର୍ମପ୍ରାଣା ପତ୍ନୀଙ୍କ ନାମ ସାବିତ୍ରୀ ଦେବୀ । ଭାରତୀୟ ସଂସ୍କୃତିରେ ବ୍ରହ୍ମା ଓ ସାବିତ୍ରୀଙ୍କର ମିଳନ ତୁଲ୍ୟ ଚନ୍ଦ୍ରବ୍ରହ୍ମା ଓ ସାବିତ୍ରୀ ଦେବୀଙ୍କର ମିଳନ ଏକ ବିଚିତ୍ର ସଂଯୋଗ । ଉଭୟଙ୍କର ବିବାହ ପରବର୍ତ୍ତୀ ବହୁବର୍ଷ ପର୍ଯ୍ୟନ୍ତ କୌଣସି ସନ୍ତାନ ଜାତ ହେଲା ନାହିଁ । ସେ ବିଦ୍ୟାନଗରୀ ବାରାଣସୀରେ ସଂସ୍କୃତ ଅଧ୍ୟୟନ କାଳରେ ଜାଣିପାରିଥିଲେ ଯେ; 'ବିନ୍ଧ୍ୟବାସିନୀ' ଚଣ୍ଡୀପୀଠରେ ଚଣ୍ଡୀପାଠ କଲେ ଅଭୀଷ୍ଟ ପରିପୂର୍ଣ୍ଣ ହୋଇଥାଏ । ସୁତରାଂ ଏକ ବିଦ୍ୱାନ୍ ଓ ପ୍ରତିଭାଶାଳୀ ପୁତ୍ରପ୍ରାପ୍ତି ଆଶାରେ ସେ ନିଜ ଗ୍ରାମରୁ ମଧ୍ୟଭାରତର ବିନ୍ଧ୍ୟବାସିନୀ ପୀଠକୁ ଯାତ୍ରା କରିଥିଲେ । ସେଠାରେ ନିଷ୍ଠାର ସହିତ ଏକବିଂଶତି ଦିବସ ପର୍ଯ୍ୟନ୍ତ ଚଣ୍ଡୀପାଠ କରି ସେ ଦେବୀଙ୍କୁ ନିଜର ମନୋରଥ ଜଣାଇଥିଲେ । ସେଠାରୁ

ଫେରିବାର ଏକବର୍ଷ ପରେ ସେ ଏହି ପୁତ୍ରଙ୍କୁ ଲାଭ କରିଥିଲେ । ଗୌରୀଙ୍କର କୃପାରୁ ଏହି ପୁତ୍ର ପ୍ରାପ୍ତ ହୋଇଥିବାରୁ ସେ ଏହାଙ୍କର ନାମ 'ଗୌରୀ କୁମାର' ରଖିଥିଲେ । ଅଧ୍ୟାପକ ବ୍ରହ୍ମାଙ୍କର ଉକ୍ତ ଜନ୍ମ ଦିବସଟି ହେଉଛି ୧୯୨୦ ମସିହା ଫେବୃଆରୀ ୨୦ ତାରିଖ ।

**ବାଲ୍ୟଶିକ୍ଷା :**

ଶ୍ରୀଯୁକ୍ତ ଗୌରୀ କୁମାର ତୃତୀୟ ବର୍ଷରେ ପଦାର୍ପଣ କରିବା ପରେ ତାହାଙ୍କ ପିତା ତାଙ୍କୁ ମୁହେଁ ମୁହେଁ ସଂସ୍କୃତ ଶ୍ଳୋକ ଅଭ୍ୟାସ ପୂର୍ବକ ମୁଖସ୍ଥ କରାଇଲେ । ତପ୍ରେ ନିଜ ଗ୍ରାମ ନିକଟବର୍ତ୍ତୀ କ୍ଷତ୍ରିୟବରପୁରଠାରେ ଥିବା ପ୍ରାଥମିକ ବିଦ୍ୟାଳୟରେ ତାହାଙ୍କର ଶିକ୍ଷା ଆରମ୍ଭ ହୋଇଥିଲା । ସେଠାରେ ଦୁଇବର୍ଷ ଅଧ୍ୟୟନ କରିବା ପରେ ପଣ୍ଡିତ ଚନ୍ଦ୍ରଶେଖର ବ୍ରହ୍ମା ଦକ୍ଷିଣ ଓଡ଼ିଶାର ଟେକିଲି ହାଇସ୍କୁଲରେ ନିଯୁକ୍ତି ପାଇଲେ । ସୁତରାଂ ପୁତ୍ର ଗୌରୀ କୁମାରଙ୍କର ପରବର୍ତ୍ତୀ ଶିକ୍ଷା ଟେକିଲିରେ ହିଁ ଆରମ୍ଭ ହେଲା । ୧୯୨୮ ମସିହାରେ ବାଳକ ଗୌରୀ କୁମାର ଟେକିଲି ହାଇସ୍କୁଲରେ ଚତୁର୍ଥ ଶ୍ରେଣୀରେ ନାମ ଲେଖାଇଲେ । ଉକ୍ତ 'ଟେକିଲି' ସହରଟି ପୂର୍ବେ ଗଞ୍ଜାମ ଜିଲ୍ଲାରେ ଥିଲା । ମାତ୍ର ବର୍ତ୍ତମାନ ଏହା ଆନ୍ଧ୍ର ପ୍ରଦେଶର ଅନ୍ତର୍ଭୁକ୍ତ । ପିତା ପଣ୍ଡିତ ଚନ୍ଦ୍ରଶେଖର ବ୍ରହ୍ମା ନିଜର ଏହି ପୁତ୍ରଟିର ପାଣ୍ଡିତ୍ୟ ବର୍ଦ୍ଧନ ନିମିତ୍ତ ସର୍ବଦା ଯତ୍ନଶୀଳ ଥିଲେ । ସେ ପ୍ରତିଦିନ ପ୍ରଭାତ, ସନ୍ଧ୍ୟା ଏବଂ ରାତ୍ରିରେ ଶୟନ ପୂର୍ବରୁ ତାହାଙ୍କୁ ମୁହେଁ ମୁହେଁ ସଂସ୍କୃତ ଶ୍ଳୋକ ମୁଖସ୍ଥ କରାଉଥା'ନ୍ତି । ଶ୍ଳୋକ ମଧ୍ୟରେ ଥିବା ପ୍ରତ୍ୟେକ ଶବ୍ଦକୁ ତାଙ୍କର ଏହି ପୁତ୍ର କିପରି ଠିକ୍ ଭାବରେ ଉଚ୍ଚାରଣ କରିବା ସଙ୍ଗେ ସଙ୍ଗେ ଉପଯୁକ୍ତ ଛନ୍ଦରେ ଶ୍ଳୋକ ଆବୃତ୍ତି କରିପାରିବ, ସେଥିପ୍ରତି ସେ ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ । ବାଲ୍ୟକାଳରୁ ତାହାଙ୍କର ସ୍ମୃତିଶକ୍ତି ଅତି ପ୍ରଖର ଥିଲା । ସୁତରାଂ ପିତା ହେଉଁ ସମସ୍ତ ଶ୍ଳୋକ ତାହାଙ୍କୁ ଶିଖାଉଥିଲେ, ତାକୁ ସେ ଅତି ଶୀଘ୍ର ମନେ ରଖିପାରୁଥିଲେ । ସେଠାରେ ଅଧ୍ୟୟନ କରିବା ସମୟରେ ସେ ଇଂରାଜୀକୁ ପ୍ରଥମ ଭାଷା ଏବଂ ତେଲୁଗୁ ଭାଷାକୁ ଦ୍ୱିତୀୟ ଭାଷା ରୂପେ ପଢ଼ିଥିଲେ । ଏହି କାରଣରୁ ଅଧ୍ୟାପକ ବ୍ରହ୍ମା ବର୍ତ୍ତମାନ ମଧ୍ୟ ଆନ୍ଧ୍ର କିମ୍ବା ଦକ୍ଷିଣ ଓଡ଼ିଶାକୁ ଗଲେ ବିଭିନ୍ନ ଲୋକଙ୍କ ସହିତ ତେଲୁଗୁରେ କଥାବାର୍ତ୍ତା କରିଥା'ନ୍ତି ।

ତପ୍ରେ ପଣ୍ଡିତ ବ୍ରହ୍ମାଙ୍କର ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ଆସିକା ହାଇସ୍କୁଲକୁ ସ୍ଥାନାନ୍ତର ହେଲା । ସେ ଆସିକା ଆସି ହାଇସ୍କୁଲ ନିକଟବର୍ତ୍ତୀ ଖମ୍ୱେଶ୍ୱରୀ ପାଟଣାରେ ଅବସ୍ଥାନ କଲେ । ଏହାପରେ ଶ୍ରୀଯୁକ୍ତ ଗୌରୀକୁମାର ଆସିକା ହାଇସ୍କୁଲରେ ଅଧ୍ୟୟନ କଲେ ଏବଂ ୧୯୩୬ ମସିହାରେ ମାଟ୍ରିକ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ।

## ପାରଳାଖେମୁଣ୍ଡି କଲେଜରେ ଅଧ୍ୟୟନ :

୧୯୩୬ ମସିହାରେ ଶ୍ରୀଯୁକ୍ତ ବ୍ରହ୍ମା ଉଚ୍ଚଶିକ୍ଷା ନିମିତ୍ତ ପାରଳାଖେମୁଣ୍ଡି ଯାତ୍ରା କରିଥିଲେ । ଓଡ଼ିଶାର ଭୂତପୂର୍ବ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କ ପିତା ସ୍ୱର୍ଗତ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ସେତେବେଳେ ପାରଳା ମହାରାଜାଙ୍କର ଦେଓ୍ୱାନ୍ ଥିଲେ । ଶ୍ରୀଯୁକ୍ତ ବ୍ରହ୍ମା ଲକ୍ଷ୍ମୀନାରାୟଣବାବୁଙ୍କୁ ସାକ୍ଷାତପୂର୍ବକ ନିଜ ପିତାଙ୍କଠାରୁ ନେଇଥିବା ଏକ ପତ୍ର ତାଙ୍କୁ ଦେଲେ । ପତ୍ରଟି ପଢ଼ି ସେ ଶ୍ରୀଯୁକ୍ତ ବ୍ରହ୍ମାଙ୍କୁ 'ଈଶାବାସ୍ୟୋପନିଷଦ' ପାଠ କରିବାକୁ କହିଲେ । ଉକ୍ତ ଉପନିଷଦଟି ସେତେବେଳେ ତାଙ୍କର ସମ୍ପୂର୍ଣ୍ଣ ମୁଖସ୍ଥ ହୋଇଯାଇଥିଲା । ସୁତରାଂ ନିଜର ଲଳିତ କଣ୍ଠରେ ସେ ଅତି ଚମତ୍କାର ଭାବରେ ସମଗ୍ର ଉପନିଷଦଟିକୁ ଆବୃତ୍ତି କରିଦେଲେ । ତାହା ଶୁଣି ଗୁଣଗ୍ରାହୀ ଲକ୍ଷ୍ମୀନାରାୟଣବାବୁ ଅତ୍ୟନ୍ତ ମୁଗ୍ଧ ହୋଇପଡ଼ିଲେ । ତାଙ୍କର ଅଧ୍ୟୟନ ନିମିତ୍ତ ସେ ରାଜାଙ୍କଠାରୁ ଆର୍ଥିକ ସାହାଯ୍ୟ କରାଇଦେଇଥିଲେ ।

ସେଠାରେ ଅଧ୍ୟୟନ କରିବା ସମୟରେ ସେ ପ୍ରଥମେ ନିଜର ପିଉସା ସ୍ୱର୍ଗତ ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କ ଘରେ ଅବସ୍ଥାନ କରିଥିଲେ । ତପ୍ରରେ କଲେଜ ଛାତ୍ରାବାସରେ ରହିଲେ । ସେହି ସମୟରେ ଓଡ଼ିଶାର ଭୂତପୂର୍ବ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ବିନାୟକ ଆଚାର୍ଯ୍ୟ ତାଙ୍କର ସହପାଠୀ ଥିଲେ । ଉଭୟେ କଲେଜ ଛାତ୍ରାବାସରେ ଏକତ୍ର ଅବସ୍ଥାନ କରୁଥିଲେ । ୧୯୩୬ରୁ ୧୯୪୦ ମସିହା ପର୍ଯ୍ୟନ୍ତ ପାରଳାଖେମୁଣ୍ଡି କଲେଜରେ ଅଧ୍ୟୟନ ପୂର୍ବକ ସେ ବି.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ।

କଲେଜରେ ଅଧ୍ୟୟନ କାଳରେ ସେ ବିଭିନ୍ନ ତର୍କ ପ୍ରତିଯୋଗିତାରେ ଅଂଶଗ୍ରହଣ କରି ବହୁବାର ପୁରସ୍କୃତ ହୋଇଥିଲେ । ସେହି ସମୟରେ କଲେଜର ବିଭିନ୍ନ ସଭାସମିତିରେ ଭାଷଣ ପ୍ରଦାନପୂର୍ବକ ସେ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲେ । ଏକଦା କଲେଜର ଗୋଟିଏ ସଭାରେ ଭାଷଣ ଦେଉଥିଲାବେଳେ 'ନିଆଁଖୁଣ୍ଟା' ପତ୍ରିକାର ସମ୍ପାଦକ ସ୍ୱର୍ଗତ ଗୋଦାବରୀଶ ମହାପାତ୍ର ସେଠାରେ ଉପସ୍ଥିତ ଥିଲେ । ସେ ଶ୍ରୀଯୁକ୍ତ ବ୍ରହ୍ମାଙ୍କର ବାଗ୍ମିତାରେ ମୁଗ୍ଧ ହୋଇ ତାଙ୍କୁ ଜାମାତା କରିବେ ବୋଲି ମନେ ମନେ ସ୍ଥିର କରିଥିଲେ ।

## ବୈବାହିକ ଜୀବନ :

୧୯୪୧ ମସିହା ଶ୍ରୀପଞ୍ଚମୀର ଦୁଇଦିନ ପୂର୍ବରୁ ଗୋଦାବରୀଶ ମହାପାତ୍ର ମହୋଦୟ ତତ୍କାଳୀନ ବିଶିଷ୍ଟ ସାପ୍ତାହିକ (ପରବର୍ତ୍ତୀ କାଳରେ ଦୈନିକ 'ପ୍ରଜାତନ୍ତ୍ର'ର

ସମ୍ପାଦକ) ଶ୍ରୀହର୍ଷ ମିଶ୍ରଙ୍କ ସହିତ ଆସିକା ଯାଇ ପଣ୍ଡିତ ବ୍ରହ୍ମାଙ୍କୁ ସାକ୍ଷାତ କଲେ ଏବଂ ନିଜର କନ୍ୟା ସତ୍ୟଭାମା ସହିତ ଗୌରୀ କୁମାରଙ୍କର ବିବାହ ପ୍ରସ୍ତାବ ଉପସ୍ଥାପନ କଲେ । ବିଭିନ୍ନ ଆଳାପ ଆଲୋଚନା ପରେ ବିବାହ ସ୍ଥିରୀକୃତ ହୋଇଗଲା ଏବଂ କିଛିଦିନ ପରେ ସ୍ୱର୍ଗତ ମହାପାତ୍ରଙ୍କର ନିଜ ଗ୍ରାମ ବାଣପୁର ନିକଟବର୍ତ୍ତୀ କୁମାରଙ୍ଗ ଶାସନରେ ବିବାହ ଉତ୍ସବ ଅନୁଷ୍ଠିତ ହେଲା । ତଦ୍ ପରଠାରୁ ଯୁବକ ବ୍ରହ୍ମାଙ୍କ ଭାଗ୍ୟର ନବଦିଗନ୍ତ ଉନ୍ମୋଚିତ ହୋଇଗଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ସେ ସେହିଦିନଠାରୁ 'ନିଆଁଖୁଣ୍ଟା' ଗୋଦାବରୀଶ ମହାପାତ୍ରଙ୍କ ଜାମାତା ରୂପେ କଟକ ଓ ପୁରୀରେ ପରିଚିତ ହେଲେ । କବି ଭାବରେ ଏବଂ 'ନିଆଁଖୁଣ୍ଟା' ପତ୍ରିକାର ସମ୍ପାଦକ ଭାବରେ ସେତେବେଳେ ମହାପାତ୍ରଙ୍କ ନାମ ସାରା ଓଡ଼ିଶାରେ ବ୍ୟାପିଯାଇଥିଲା । ନିଜର ପତ୍ରିକା ପାଇଁ ଖବର ସଂଗ୍ରହ କରିବା ଉଦ୍ଦେଶ୍ୟରେ ସେ ସାରା ଓଡ଼ିଶା ବୁଲୁଥିଲେ । ଜାମାତା ଯୁବକ ବ୍ରହ୍ମାଙ୍କୁ ସଙ୍ଗରେ ନେଇ ସେ ବିଭିନ୍ନ ସ୍ଥାନ ବୁଲିବା ସଙ୍ଗେ ସଙ୍ଗେ ତାଙ୍କୁ ସର୍ବତ୍ର ପରିଚିତ କରାଇଥିଲେ । କାଳକ୍ରମେ ଶ୍ରୀଯୁକ୍ତ ବ୍ରହ୍ମା 'ନିଆଁଖୁଣ୍ଟା ଜୋଇଁ' ରୂପେ ଓଡ଼ିଶାରେ ପରିଚିତ ହେଲେ ।

## କର୍ମମୟ ଜୀବନ :

୧୯୪୧ ମସିହାରେ ଶ୍ରୀଯୁକ୍ତ ବ୍ରହ୍ମା ନିଜର ଶ୍ୱଶୁର ଗୋଦାବରୀଶ ମହାପାତ୍ରଙ୍କ ଗୃହରେ କଟକରେ ଅବସ୍ଥାନ କରୁଥିଲେ । ସ୍ୱର୍ଗତ ମହାପାତ୍ରଙ୍କ ଗୁରୁ ଥିଲେ ସତ୍ୟବାଦୀ ଯୁଗର ଅନ୍ୟତମ ବିଶିଷ୍ଟ ସାଧକ କବି ଓ ପଣ୍ଡିତ ଗୋଦାବରୀଶ ମିଶ୍ର । ତାହାଙ୍କ ସହିତ ଶ୍ରୀଯୁକ୍ତ ବ୍ରହ୍ମାଙ୍କର ସାକ୍ଷାତ ହେବାରୁ ସେ ବାଣପୁର ହାଇସ୍କୁଲରେ ଶିକ୍ଷକ ରୂପେ ଯୋଗଦାନ କରିବାକୁ ପରାମର୍ଶ ଦେଲେ । ସୁତରାଂ ୧୯୪୧ ମସିହାରୁ କିଛିକାଳ ପାଇଁ ସେ ବାଣପୁର ହାଇସ୍କୁଲରେ ଶିକ୍ଷକ ରୂପେ ନିଯୁକ୍ତି ପାଇଲେ । ସେହି ବିଦ୍ୟାଳୟରେ ଜଣେ କୃତୀ ଓ ଆଦର୍ଶ ଶିକ୍ଷକ ରୂପେ ସେ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲେ । ଏ ସମ୍ପର୍କୀୟ ବହୁ ଉପାଦେୟ ତଥ୍ୟ ସ୍ୱର୍ଗତ ହରିହର ମହାପାତ୍ର ତାଙ୍କର 'ବାଣପୁର ବନ ବିଦ୍ୟାଳୟ' ନାମକ ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି ।

ବାଣପୁର ହାଇସ୍କୁଲରେ ଏକବର୍ଷ ଶିକ୍ଷକତା କରିବା ପରେ ଶିକ୍ଷକ ଟ୍ରେନିଂ (D.Ed.) ପାଇବା ନିମିତ୍ତ ସେ କଟକ ଆସିଲେ । ବର୍ତ୍ତମାନ କାଠଯୋଡ଼ି କୂଳରେ ଯେଉଁ ରାଧାନାଥ ଟ୍ରେନିଂ କଲେଜ ରହିଛି, ସେହି କଲେଜରେ ସେ ଅଧ୍ୟୟନ କଲେ ଏବଂ ୧୯୪୩ ମସିହାରେ ସମଗ୍ର ବିହାର ଓ ଓଡ଼ିଶାରେ ଦ୍ୱିତୀୟ ସ୍ଥାନ ଅଧିକାର ପୂର୍ବକ ଉତ୍ତୀର୍ଣ୍ଣ ହେଲେ (ସେତେବେଳେ ଉକ୍ତ ଅନୁଷ୍ଠାନଟି ପାଟଣା ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲା) ।

D.Ed. (Diploma in Education) ପରୀକ୍ଷାର ଫଳ ପ୍ରକାଶ ପାଇବା ପୂର୍ବରୁ ଦିଗପହଣ୍ଡି ରାଜାଙ୍କ ନିମନ୍ତ୍ରଣ କ୍ରମେ ସେ ସେଠାକାର ହାଇସ୍କୁଲରେ ପ୍ରଧାନଶିକ୍ଷକ ରୂପେ ଯୋଗଦାନ କଲେ । ଉକ୍ତ ଅନୁଷ୍ଠାନରେ ସେ ୧୯୪୩ ମସିହା ଜୁନ୍ ମାସଠାରୁ ୧୯୪୪ ମସିହା ଅକ୍ଟୋବର ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ । ମାତ୍ର ଜୀବନର ଉଚ୍ଚ ଆକାଂକ୍ଷା ତାହାଙ୍କୁ ସେଠାରେ ରଖାଇଦେଲା ନାହିଁ । ଓଡ଼ିଶାର ମହାନ୍ ସାଂସ୍କୃତିକ କ୍ଷେତ୍ର କଟକ ସହରକୁ ସେ ନିଜର କର୍ମସ୍ଥଳୀ ରୂପେ ନିର୍ବାଚନ କଲେ ଏବଂ ଦିଗପହଣ୍ଡି ହାଇସ୍କୁଲରୁ ଇସ୍ତଫା ପ୍ରଦାନ ପୂର୍ବକ ଏଠାକୁ ଚାଲିଆସିଲେ । କିଛିଦିନ ପରେ ଓଡ଼ିଶାର ତତ୍କାଳୀନ ଶିକ୍ଷା ବିଭାଗୀୟ ନିର୍ଦ୍ଦେଶକ ସ୍ୱର୍ଗତ ଶ୍ୟାମା ଚରଣ ତ୍ରିପାଠୀ ଏବଂ ଟ୍ରେନିଂ କଲେଜର ଅଧ୍ୟକ୍ଷ ମହେଶ ଚନ୍ଦ୍ର ପ୍ରଧାନଙ୍କ ସାହାଯ୍ୟ କ୍ରମେ ସେ କଟକ ଟ୍ରେନିଂ ସ୍କୁଲରେ ଶିକ୍ଷକ ରୂପେ ନିଯୁକ୍ତି ପାଇଲେ । ଏହି ସମୟରୁ ତାଙ୍କର ଜୀବନ ବକ୍ତୃତାମୟ ହୋଇଗଲା । ୧୯୪୦ ମସିହାରୁ ସେ ଓଡ଼ିଶାର ଛୋଟ/ବଡ଼ ଅନେକ ସଭାରେ ଭାଷଣ ଦେବା ଆରମ୍ଭ କରିଦେଇଥିଲେ । ମାତ୍ର ୧୯୪୫ ମସିହାର ତାହାଙ୍କର ଜୀବନ 'ବକ୍ତୃତାମୟ' ହୋଇ ଉଠିଲା । କଟକ ଥିଲା ଓଡ଼ିଶାର ସଂସ୍କୃତି ଓ ସାହିତ୍ୟର ପ୍ରାଣକେନ୍ଦ୍ର । ଏଠାରେ ପ୍ରତିଦିନ ଧର୍ମ ଓ ସାହିତ୍ୟ ସମ୍ପର୍କୀୟ ବିଭିନ୍ନ ସଭାସମିତି ଅନୁଷ୍ଠିତ ହେଉଥିଲା । ତନ୍ମଧ୍ୟରୁ ଅଧିକାଂଶ ସଭାରେ ଓଡ଼ିଆ ସାହିତ୍ୟ, ଓଡ଼ିଆ ସଂସ୍କୃତି, ରାମାୟଣ, ଭାଗବତ ଓ ଅନ୍ୟାନ୍ୟ ବିଭିନ୍ନ ବିଷୟରେ ଭାଷଣ ଦେବା ନିମିତ୍ତ ସେ ନିମନ୍ତ୍ରିତ ହେଲେ । ତାଙ୍କର ତଥ୍ୟପୂର୍ଣ୍ଣ ଭାଷଣ, ସୁଲଳିତ କଣ୍ଠରେ ଶ୍ଳୋକ ତଥା ଓଡ଼ିଆ କବିତାର ଆବୃତ୍ତି ଶ୍ରୋତାମାନଙ୍କୁ ମୁଗ୍ଧ କରିଦେଲା । ଫଳରେ ଖୁବ୍ ଅଳ୍ପଦିନ ମଧ୍ୟରେ ଜଣେ ସ୍ୱନାମଧନ୍ୟ ଉଚ୍ଚକୋଟୀର ବକ୍ତା ରୂପେ ସମଗ୍ର ଓଡ଼ିଶାରେ ସେ ଖ୍ୟାତିଲାଭ କଲେ ।

୧୯୪୫ ମସିହାରୁ ଆରମ୍ଭ କରି ୧୯୪୬ ଜୁଲାଇ ମାସ ପର୍ଯ୍ୟନ୍ତ ପ୍ରାୟ ଦେଢ଼ବର୍ଷ ଅବଧି ସେ ଟ୍ରେନିଂ ସ୍କୁଲରେ ଶିକ୍ଷକତା କରିଥିଲେ । ଉକ୍ତ ସ୍କୁଲର ସମୃଦ୍ଧ ପାଠାଗାର ତାଙ୍କର ଜ୍ଞାନବୃଦ୍ଧି ଦିଗରେ ଯଥେଷ୍ଟ ସହାୟତା କରିଥିଲା । ସେଠାରେ ଦିନେ ସେ ଶ୍ରେଣୀରେ ପଢ଼ାଉଥିଲାବେଳେ ଡକ୍ଟର ଆର୍ଚ୍ଚବଲ୍ଲଭ ମହାନ୍ତି ସ୍କୁଲ ପରିଦର୍ଶନରେ ଆସିଥିଲେ । ସେ ଶ୍ରୀଯୁକ୍ତ ବ୍ରହ୍ମାଙ୍କର ଉଚ୍ଚକୋଟୀର ଶିକ୍ଷାଦାନ ପ୍ରଣାଳୀ ଦେଖି ଅତ୍ୟନ୍ତ ମୁଗ୍ଧ ହୋଇଯାଇଥିଲେ ।

**ଖ୍ରୀଷ୍ଟ କଲେଜରେ ଅଧ୍ୟାପନା :**

ଟ୍ରେନିଂ ସ୍କୁଲରେ ଶିକ୍ଷକତା କରୁଥିବା ସମୟରେ ୧୯୪୪ ମସିହା ଅଗଷ୍ଟ ମାସରେ ଶ୍ରୀଯୁକ୍ତ ବ୍ରହ୍ମା ଓଡ଼ିଶାରେ ଏମ୍.ଏ. ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହେଲେ । ଏ ପ୍ରସଙ୍ଗରେ ଉଲ୍ଲେଖ କରିବା କଥା ଯେ; ୧୯୪୩ ମସିହା ନଭେମ୍ବର ୨୭

ତାରଖରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲା ଏବଂ ଶ୍ରୀଯୁକ୍ତ ବ୍ରହ୍ମା ୧୯୪୪ ଅଗଷ୍ଟରେ ଘରୋଇ ଛାତ୍ର ଭାବରେ ପରୀକ୍ଷା ଦେଲେ । କହିବା ବାହୁଲ୍ୟ ହେବ ଯେ; ସେହିବର୍ଷ ବହୁ କୃତବିଦ୍ୟ ଛାତ୍ର ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ଓଡ଼ିଆରେ ଏମ୍.ଏ. ପରୀକ୍ଷା ଦେଇଥିଲେ ମଧ ଶ୍ରୀଯୁକ୍ତ ବ୍ରହ୍ମାଙ୍କୁ ମିଶାଇ ମାତ୍ର ଦୁଇଜଣ ଉତ୍ତୀର୍ଣ୍ଣ ହୋଇଥିଲେ ।

୧୯୪୬ ମସିହାର ଶିକ୍ଷାବର୍ଷ ଆରମ୍ଭରେ କଟକ ଖ୍ରୀଷ୍ଟ କଲେଜରେ ଓଡ଼ିଆ ଅଧ୍ୟାପକ ଚାକିରି ଖାଲି ପଡ଼ିଲା । ବିଶ୍ୱବିଦ୍ୟାଳୟ ସ୍ତରରେ ପ୍ରାଚୀନ ଓଡ଼ିଆ ସାହିତ୍ୟର ପିତାମହ ପୂଜନୀୟ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କର ଆଶୀର୍ବାଦ ବଳରେ ଶ୍ରୀଯୁକ୍ତ ବ୍ରହ୍ମା ସେହିବର୍ଷ ଖ୍ରୀଷ୍ଟ କଲେଜରେ ଅଧ୍ୟାପକ ରୂପେ ନିଯୁକ୍ତି ପାଇଲେ । ଉକ୍ତ କଲେଜରେ ସେ ୧୯୪୬ ଅଗଷ୍ଟ ମାସରୁ ଆରମ୍ଭ କରି ୧୯୫୦ ସେପ୍ଟେମ୍ବର ୨୦ ତାରିଖ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ । ସେ ଉକ୍ତ ମହାବିଦ୍ୟାଳୟରେ ଅଧ୍ୟାପନା କରୁଥିବା ସମୟରେ ପ୍ରବୀଣ ଐତିହାସିକ ଡକ୍ଟର ନବୀନ କୁମାର ସାହୁ ତାହାଙ୍କର ସହକର୍ମୀ ଥିଲେ । ୧୯୫୦ ମସିହା ସେପ୍ଟେମ୍ବର ୨୦ ତାରିଖରେ ଉଭୟେ ରେଭେନ୍‌ସା କଲେଜରେ ଯୋଗଦାନ କରିଥିଲେ । ଖ୍ରୀଷ୍ଟ କଲେଜରେ ଅଧ୍ୟାପକ ବ୍ରହ୍ମାଙ୍କର ଅଧ୍ୟାପନା ଅତ୍ୟନ୍ତ ଉଚ୍ଚକୋଟୀର ଥିଲା । ଚିଲିକା, ତପସ୍ୱିନୀ, ଇନ୍ଦୁମତୀ ଓ ପ୍ରଣୟବଲ୍ଲରୀ ପ୍ରଭୃତି କାବ୍ୟ ତାଙ୍କର ମୁଖସ୍ଥ ହୋଇଯାଇଥିଲା । ସୁତରାଂ ବିନା ବହିରେ ସେ ଏହି ସମସ୍ତ କାବ୍ୟ ପଢ଼ାଇପାରୁଥିଲେ । ତପସ୍ୱିନୀ ଓ ପ୍ରଣୟବଲ୍ଲରୀ କାବ୍ୟକୁ ସେ ନାଟକୀୟ ଭଙ୍ଗୀରେ ଅତି ଚମତ୍କାର ଭାବରେ ବୁଝାଉଥିଲେ । ଫଳରେ ଜଣେ କୃତବିଦ୍ୟ ଅଧ୍ୟାପକ ଭାବରେ ତାଙ୍କର ଖ୍ୟାତି ବ୍ୟାପିଯାଇଥିଲା । ତାହାଙ୍କର ଅଧ୍ୟାପନା ଶୁଣିବା ନିମିତ୍ତ ତତ୍କାଳୀନ ରେଭେନ୍‌ସା କଲେଜର ବହୁ ଛାତ୍ର ଖ୍ରୀଷ୍ଟ କଲେଜକୁ ଆସି ସେ ପଢ଼ାଉଥିବା ଶ୍ରେଣୀରେ ବସିଯାଉଥିଲେ । ଏପରିକି ଅଧ୍ୟାପକ ବ୍ରହ୍ମା ଶ୍ରେଣୀରେ ପଢ଼ାଉଥିବା ବେଳେ କଲେଜ ଅଫିସ୍‌ର କର୍ମଚାରୀଗଣ ଶ୍ରେଣୀଗୃହର ବାହାରେ ରହି ତାହା ଉପଭୋଗ କରୁଥିଲେ । ଅଧ୍ୟାପକ ବ୍ରହ୍ମାଙ୍କର ବହୁ ପୁରାତନ ଛାତ୍ର ଏବଂ ଖ୍ରୀଷ୍ଟ କଲେଜର ପୁରାତନ· କର୍ମଚାରୀମାନଙ୍କ ମୁଖରୁ ଏ ସମ୍ପର୍କୀୟ ଅନେକ ଚମତ୍କାର ଘଟଣା ଶୁଣିବାକୁ ମିଳିଥାଏ ।

## ରେଭେନ୍‌ସା କଲେଜରେ ଅଧ୍ୟାପନା :

୧୯୫୦ ମସିହା ସେପ୍ଟେମ୍ବର ୨୦ ତାରିଖରେ ଅଧ୍ୟାପକ ବ୍ରହ୍ମା ରେଭେନ୍ସା କଲେଜରେ ଓଡ଼ିଆ ଓ ସଂସ୍କୃତ ବିଭାଗରେ ଯୋଗଦାନ କଲେ (ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଓ ସଂସ୍କୃତ ମିଶି ଗୋଟିଏ ବିଭାଗ ଥିଲା) । ଏଠାରେ ସେ ୧୯୫୮ ମସିହା ଜୁନ୍ ମାସ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ ।

ସେତେବେଳର ରେଭେନ୍ସା କଲେଜରେ ଜଣେ ବିଦ୍ୱାନ୍ ଓ ଛାତ୍ରବତ୍ସଳ ଅଧ୍ୟାପକ ଭାବରେ ତାହାଙ୍କର ଖ୍ୟାତି ବଢ଼ିଯାଇଥିଲା । ସମ୍ପ୍ରତି ଓଡ଼ିଶାରେ ସୁନାମ ଅର୍ଜନ କରିଥିବା ଓଡ଼ିଆ ସାହିତ୍ୟର ଅନ୍ୟତମ କୃତବିଦ୍ୟ ସାଧକ ଶ୍ରୀଯୁକ୍ତ ପଠାଣି ପଟ୍ଟନାୟକ ତାହାଙ୍କର ଜଣେ ପ୍ରିୟ ଛାତ୍ର ଥିଲେ । ଏହା ସହିତ ଡକ୍ଟର ଶ୍ରୀନିବାସ ମିଶ୍ର, ଡକ୍ଟର ଦେବେନ୍ଦ୍ର ମହାନ୍ତି, ଡକ୍ଟର ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ, ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ, 'ମାତୃଭୂମି'ର ସମ୍ପାଦକ ବିଚିତ୍ରାନନ୍ଦ କର, ସ୍ୱର୍ଗତ ମୁରାରୀମୋହନ ଜେନା ପ୍ରମୁଖ ତାହାଙ୍କର ପ୍ରିୟ ଛାତ୍ର ରୂପେ ପରିଚିତ ହୋଇଥିଲେ ।

### ତିନି ଏକାଡ଼େମୀର ସମ୍ପାଦକ :

୧୯୫୭ ମସିହାର ଶେଷଭାଗରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପ୍ରତିଷ୍ଠିତ ହେଲା । ଏହା ସହିତ ଓଡ଼ିଶା ଲଳିତ କଳା ଏକାଡ଼େମୀ ଓ ସଙ୍ଗୀତ ନାଟକ ଏକାଡ଼େମୀ ମଧ୍ୟ ପ୍ରତିଷ୍ଠା କରାଗଲା । ଅଧ୍ୟାପକ ବ୍ରହ୍ମା ଓଡ଼ିଶା ସରକାରଙ୍କ ଦ୍ୱାରା ଏହି ତିନିଗୋଟି ଏକାଡ଼େମୀର ସମ୍ପାଦକ ନିଯୁକ୍ତ ହେଲେ । ସୁତରାଂ ୧୯୫୮ ଜୁନ୍ ମାସରେ ସେ ରେଭେନ୍ସା କଲେଜରୁ ଆସି ଏହି ତିନି ଏକାଡ଼େମୀର ସମ୍ପାଦକ ରୂପେ ଦାୟିତ୍ୱ ଗ୍ରହଣ କଲେ । ୧୯୬୮ ମସିହା ମାର୍ଚ୍ଚ ମାସ ପର୍ଯ୍ୟନ୍ତ ସେ ଏହି ପଦବୀରେ ରହିଥିଲେ । ଏଥିମଧ୍ୟରେ ସେ କିଛିଦିନ ପାଇଁ ଓଡ଼ିଶା ସ୍ପୋର୍ଟସ କାଉନ୍ସିଲ୍‌ର ସମ୍ପାଦକ ମଧ୍ୟ ଥିଲେ । ଉପର୍ଯ୍ୟୁକ୍ତ ତିନିଗୋଟି ଏକାଡ଼େମୀ ଅଧ୍ୟାପକ ବ୍ରହ୍ମାଙ୍କ ଉଦ୍ୟମରେ ଦୃଢ଼ୀଭୂତ ଓ ସମ୍ପ୍ରସାରିତ ହୋଇଥିଲା । ବହୁ ସାହିତ୍ୟିକ ଓ ବିଶିଷ୍ଟ ବ୍ୟକ୍ତିଙ୍କର ବିରୋଧ ସତ୍ତ୍ୱେ ସେ ନିଜର କାର୍ଯ୍ୟଦକ୍ଷତା ଏବଂ ଜ୍ଞାନଗରିମା ଯୋଗୁଁ ଏହି ପଦବୀରେ ଏତେ ଦୀର୍ଘକାଳ ଧରି ରହିପାରିଥିଲେ । ଅଦ୍ୟାବଧି ଏତେ ବର୍ଷ ଧରି ଅନ୍ୟ କୌଣସି ବ୍ୟକ୍ତି ଏହି ପଦବୀରେ ରହିପାରି ନାହାନ୍ତି । ଏହି ପଦବୀରେ ରହି ସେ ବହୁ ପ୍ରାଚୀନ ଗ୍ରନ୍ଥର ସମ୍ପାଦନା ପୂର୍ବକ ପ୍ରକାଶ କରାଇଥିଲେ । ଦେଖିବାକୁ ଗଲେ ତାହାଙ୍କ ସମୟରେ ହିଁ ସର୍ବାଧିକ ସଂଖ୍ୟକ ଗ୍ରନ୍ଥ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଆନୁକୂଲ୍ୟରେ ପ୍ରକାଶିତ ହୋଇଛି । ସେ ବହୁ ସଂସ୍କୃତ ଗ୍ରନ୍ଥର ଅନୁବାଦ ମଧ୍ୟ ପ୍ରକାଶ କରାଇଥିଲେ । ସେତେବେଳେ ସେ ଉକ୍ତ ଏକାଡ଼େମୀ ତରଫରୁ ବହୁ ବଡ଼ ଧରଣର ସାହିତ୍ୟ ସମ୍ମିଳନୀ କରାଇଥିଲେ ଏବଂ ଓଡ଼ିଶାର ବହୁ କୃତବିଦ୍ୟ ସାହିତ୍ୟିକଙ୍କୁ ସମ୍ମାନିତ କରାଇବା ସଙ୍ଗେ ସଙ୍ଗେ ଦୁଃସ୍ଥ ଲେଖକମାନଙ୍କୁ ଓଡ଼ିଶା ସରକାରଙ୍କ ତରଫରୁ ଆର୍ଥିକ ସହାୟତା ଯୋଗାଇ ଦେଇଥିଲେ । ସଙ୍ଗୀତ ନାଟକ ଏକାଡ଼େମୀ ତରଫରୁ ସେ ବହୁ କୃତୀ କଳାକାରଙ୍କୁ ସମ୍ମାନିତ କରାଇବା ସଙ୍ଗେ ସଙ୍ଗେ ଆର୍ଥିକ ସହାୟତା ମଧ୍ୟ ପ୍ରଦାନ କରାଇଥିଲେ । ଓଡ଼ିଶାର ବିଭିନ୍ନ ଅଞ୍ଚଳରେ

ସଙ୍ଗୀତ ବିଦ୍ୟାଳୟ ସ୍ଥାପନ ତଥା ପୂର୍ବରୁ ରହିଥିବା କେତେକ ସଙ୍ଗୀତ ବିଦ୍ୟାଳୟକୁ ଆର୍ଥିକ ସହାୟତା ପ୍ରଦାନ ପୂର୍ବକ ସେ ଓଡ଼ିଶୀ ସଙ୍ଗୀତର ପ୍ରଚାର ଓ ପ୍ରସାର ଦିଗରେ ଉଦ୍ୟମ ଅବ୍ୟାହତ ରଖିଥିଲେ । ସେ ସଙ୍ଗୀତ ନାଟକ ଏକାଡ଼େମୀର ସମ୍ପାଦକ ଥିବାବେଳେ ହିଁ ଭୁବନେଶ୍ୱରରେ ''ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟ'' ପ୍ରତିଷ୍ଠିତ ହୋଇଥିଲା । ଲଳିତ କଳା ଏକାଡ଼େମୀର ସମ୍ପାଦକ ଭାବରେ ଓଡ଼ିଶାର ଚିତ୍ରକଳା, ପଟ୍ଟଚିତ୍ର ତଥା ମୂର୍ତ୍ତିକଳା ଇତ୍ୟାଦିର ବିକାଶ ନିମିତ୍ତ ତାହାଙ୍କର ଉଦ୍ୟମ ଅବିସ୍ମରଣୀୟ ।

## ସୋଭିଏତ୍ ୟୁନିୟନ୍ ଯାତ୍ରା :

୧୯୬୮ ମସିହାରେ ଶ୍ରୀଯୁକ୍ତ ବ୍ରହ୍ମା ମହୋଦୟ ହଠାତ୍ ଅସୁସ୍ଥ ହୋଇପଡ଼ିବାରୁ ଦୀର୍ଘଦିନ ଛୁଟିରେ ରହିଥିଲେ । ସେହି ସମୟ ମଧ୍ୟରେ ସେ ସୋଭିଏତ୍ ରୁଷ୍ ଓ ମଙ୍ଗୋଲିଆ ଭ୍ରମଣରେ ଯିବା ନିମିତ୍ତ ଭାରତ ସରକାରଙ୍କ ଦ୍ୱାରା ମନୋନୀତ ହୋଇଥିଲେ । ସେହିବର୍ଷ ମେ ମାସ ୧ ତାରିଖ ଦିନ ସେ ରୁଷ୍ ଯାତ୍ରାରେ ଯାଇଥିଲେ ଏବଂ ଜୁନ୍ ମାସ ୧୫ ତାରିଖ ଦିନ ଓଡ଼ିଶା ଫେରିଆସିଥିଲେ । ଏହି ଦେଶ ଭ୍ରମଣ କାଳରେ ସେ ରୁଷିଆର ମସ୍କୋ ମହାନଗରୀ, ଲେନିନ୍‌ଗ୍ରାଡ୍, ତିବିଲିସି, ତାସ୍‌କେଣ୍ଟ, ସମରକେଣ୍ଟ ଓ ବୁଖାରା ପ୍ରଭୃତିରେ ବହୁ ଭାଷଣ ପ୍ରଦାନ କରିଥିଲେ । ଭାରତୀୟ ସାହିତ୍ୟ ଓ ସଂସ୍କୃତି ସମ୍ପର୍କୀୟ ତାଙ୍କର ତିନିଗୋଟି ଇଂରାଜୀ ଭାଷଣ ମସ୍କୋ ରେଡ଼ିଓ ଦ୍ୱାରା ପ୍ରଚାରିତ ହୋଇଥିଲା । ମଙ୍ଗୋଲିଆରେ ମଧ୍ୟ ସେ କେତୋଟି ଭାଷଣ ପ୍ରଦାନ କରିଥିଲେ । ଲେନିନ୍‌ଗ୍ରାଡ୍ ବିଶ୍ୱବିଦ୍ୟାଳୟରେ ସେ ସଂସ୍କୃତ ଭାଷାରେ ଯେଉଁ ଭାଷଣ ପ୍ରଦାନ କରିଥିଲେ, ତାହା ସେଠାକାର ଶିକ୍ଷାବିତ୍, ଅଧ୍ୟାପକ ଓ ଛାତ୍ରମାନଙ୍କୁ ମୁଗ୍ଧ କରିଦେଇଥିଲା । ଶ୍ରୀଯୁକ୍ତ ବ୍ରହ୍ମାଙ୍କର ଚମତ୍କାର ଓ ଶୁଦ୍ଧ ସଂସ୍କୃତ ଉଚ୍ଚାରଣ, ସୁଲଳିତ କଣ୍ଠରେ ଶ୍ଳୋକ ଆବୃତ୍ତି ଏବଂ ତାହାର ଇଂରାଜୀ ତର୍ଜମା ସେଠାକାର ଉପସ୍ଥିତ ଶ୍ରୋତାମାନଙ୍କୁ ସ୍ତମ୍ଭୀଭୂତ କରିଦେଇଥିଲା ।

## ପର୍ଯ୍ୟଟନ ବିଭାଗରେ ନିଯୁକ୍ତି :

ଓଡ଼ିଶା ସରକାରଙ୍କ ଦ୍ୱାରା ୧୯୬୮ ମସିହାରେ 'ପର୍ଯ୍ୟଟନ ବିଭାଗ' ଗଠିତ ହେଲା । ଏହି ବିଭାଗଟି ଲୋକସମ୍ପର୍କ ବିଭାଗର ଏକ ଶାଖା ରୂପେ କାର୍ଯ୍ୟ କଲା । ଅଧ୍ୟାପକ ଶ୍ରୀଯୁକ୍ତ ବ୍ରହ୍ମା ଏଗାର ମାସ ଏଗାର ଦିନ ଛୁଟିରେ ରହିବା ପରେ ପର୍ଯ୍ୟଟନ ବିଭାଗରେ 'ଚିଫ୍ ଟୁରିଷ୍ଟ ଗାଇଡ୍' (Chief Tourist Guide) ଭାବରେ

ଯୋଗଦାନ କଲେ । ଏହି ପଦବୀରେ ନିଯୁକ୍ତି ପାଇବା ପରେ ସେ ପ୍ରାୟ ପ୍ରତିଦିନ ବିଶିଷ୍ଟ ବ୍ୟକ୍ତିଙ୍କୁ ନେଇ ପୁରୀ, କୋଣାର୍କ, ଚିଲିକା ପ୍ରଭୃତି ସ୍ଥାନକୁ ଯାତ୍ରା କରୁଥିଲେ । ବିଭିନ୍ନ ପର୍ଯ୍ୟଟକଙ୍କୁ ନେଇ ଭୁବନେଶ୍ୱରର ପ୍ରଖ୍ୟାତ ମନ୍ଦିରମାଳା, ପୁରୀ ମନ୍ଦିର, କୋଣାର୍କ ମନ୍ଦିର, ଚିଲିକା, କଟକ ସହର, ପୁଷ୍ପଗିରି ବିହାର, ବାଲେଶ୍ୱରର ଚାନ୍ଦିପୁର, ମୟୂରଭଞ୍ଜର ଖିଚିଙ୍ଗ ମନ୍ଦିର ଓ ଶିମିଳିପାଳ ଅଭୟାରଣ୍ୟ ତଥା ସମସ୍ତ ଜିଲ୍ଲାର ଦର୍ଶନୀୟ ସ୍ଥାନମାନଙ୍କୁ ସେ ବାରମ୍ବାର ଯାତ୍ରା କରୁଥିଲେ । ବିଶିଷ୍ଟ ପର୍ଯ୍ୟଟକମାନେ ଓଡ଼ିଶାର ମନ୍ଦିରକଳା, ନୃତ୍ୟ ଓ ସଙ୍ଗୀତବିଦ୍ୟା, ଚାରୁକଳା ଇତ୍ୟାଦି ସମ୍ପର୍କରେ ତାହାଙ୍କୁ ନାନାବିଧ ପ୍ରଶ୍ନ ପଚାରୁଥିଲେ । ଯଦିଓ ଶ୍ରୀଯୁକ୍ତ ବ୍ରହ୍ମା ଦୀର୍ଘକାଳ ଧରି ଓଡ଼ିଶାର ଭାଷା, ସାହିତ୍ୟ, ସଂସ୍କୃତି ଇତ୍ୟାଦି ବିଷୟରେ ବହୁଳ ଜ୍ଞାନ ଅର୍ଜନ କରିଥିଲେ, ତଥାପି ସେ ଅନୁଭବ କରୁଥିଲେ ଯେ; ବିଭିନ୍ନ ଧରଣର ପର୍ଯ୍ୟଟକମାନଙ୍କ ପାଇଁ ତାହାଙ୍କର ଜ୍ଞାନ ଯଥେଷ୍ଟ ନୁହେଁ । ତେଣୁ ଓଡ଼ିଶାର ପ୍ରତ୍ନତତ୍ତ୍ୱ, ଅଭିଲେଖ, ମନ୍ଦିରକଳା, ଶ୍ରୀଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ଧର୍ମ, କୋଣାର୍କ ମନ୍ଦିର, ପ୍ରାଚୀନ ବନ୍ଦର ଏବଂ ବିଭିନ୍ନ ଅଞ୍ଚଳର ଲୋକସଂସ୍କୃତି ସମ୍ପର୍କୀୟ ବହୁ ଗ୍ରନ୍ଥ ତାହାଙ୍କୁ ଅଧ୍ୟୟନ କରିବାକୁ ପଡ଼ିଥିଲା । ବହୁ ବର୍ଷ ଧରି ଭାଷଣ ପ୍ରଦାନ ଦ୍ୱାରା ସ୍ୱକୀୟ ଜ୍ଞାନ ଏବଂ ମତ ପରିବେଷଣ କ୍ଷେତ୍ରରେ ସେ ଯେଉଁ କୌଶଳ ଅର୍ଜନ କରିଥିଲେ, ତାହାକୁ ପର୍ଯ୍ୟଟନ କ୍ଷେତ୍ରରେ ପ୍ରୟୋଗ ପୂର୍ବକ ବିପୁଳ ଗୌରବର ଅଧିକାରୀ ହୋଇପାରିଥିଲେ । ଭାରତର ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧି, ଉପରାଷ୍ଟ୍ରପତି, ମହାମାନ୍ୟ ଦଲାଇଲାମା, ଇଂଲଣ୍ଡର ରାଜକୁମାର ଚାର୍ଲସ୍, ସୁପ୍ରିମ୍‌କୋର୍ଟର ପ୍ରଧାନ ବିଚାରପତି, ବହୁ କେନ୍ଦ୍ରମନ୍ତ୍ରୀ, ବିଭିନ୍ନ ରାଜ୍ୟର ମୁଖ୍ୟମନ୍ତ୍ରୀ ଏବଂ ମନ୍ତ୍ରୀ, ବହୁ ହାଇକୋର୍ଟର ମୁଖ୍ୟ ବିଚାରପତି ତଥା ବିଚାରପତି, ଶିଳ୍ପପତି, ସାମ୍ବାଦିକ, ବହୁ ସଂଖ୍ୟକ ବିଶ୍ୱବିଦ୍ୟାଳୟର କୁଳପତି, ପୃଥିବୀର ବିଭିନ୍ନ ଦେଶର ତୁଙ୍ଗ ପଦାଧିକାରୀ, ମହାମାନ୍ୟ ଗୁରୁଜୀ ଫୁଜୀ, ବହୁ ରାଜ୍ୟପାଳ ଏବଂ ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିଥିବା ଅନେକ ଭାରତବିଖ୍ୟାତ ବ୍ୟକ୍ତି, ବହୁ ସଂଖ୍ୟକ ଉଚ୍ଚଶିକ୍ଷିତ ବୈଦେଶିକ ପର୍ଯ୍ୟଟକ, ବହୁ ସଂଖ୍ୟକ ଲୋକସଭା ଏବଂ ରାଜ୍ୟସଭା ସଦସ୍ୟ- ଏହିପରି ଅସଂଖ୍ୟ ବିଶିଷ୍ଟ ବ୍ୟକ୍ତିଙ୍କର ପ୍ରଦର୍ଶକ (Guide) ରୂପେ ସେ ଦୀର୍ଘ ଆ୦ ବର୍ଷ କଟାଇଥିଲେ । ସମଗ୍ର ଓଡ଼ିଶାକୁ ସେ ଏହି ସମୟରେ ବାରମ୍ବାର ବୁଲିଛନ୍ତି । ବିଭିନ୍ନ ରୁଚିସମ୍ପନ୍ନ ପର୍ଯ୍ୟଟକଙ୍କ ସମ୍ପର୍କରେ ଆସି ସେ ବହୁ ଅନୁଭୂତି ଲାଭ କରିଛନ୍ତି । ଏହିପରି ଭାବରେ ଦୀର୍ଘ ଆ୦ବର୍ଷ କାଳ ସେ ସାରା ଦିବସ ଏକ ବ୍ୟସ୍ତତା ପରିପୂର୍ଣ୍ଣ, ଶିକ୍ଷାପ୍ରଦ ତଥା ଦେଶସେବାମୂଳକ ଜୀବନଯାପନ କରିଥିଲେ । ଫଳରେ ତାହାଙ୍କର ଇଂରାଜୀ ଭାଷାରେ ବାଗ୍ମିତା ଯଥେଷ୍ଟ ପରିମାଣରେ ବୃଦ୍ଧି ପାଇଥିଲା ।

## ଅବସର ଗ୍ରହଣ ପୂର୍ବରୁ ଓ ପରେ :

୧୯୭୬ ସେପ୍ଟେମ୍ବର ମାସ ୨୬ ତାରିଖରେ ଅଧ୍ୟାପକ ବ୍ରହ୍ମାଙ୍କର ପ୍ରିୟ ପୁତ୍ର ଶିବକୁମାରଙ୍କର ଦେହାନ୍ତ ହୋଇଯିବାରୁ ସେ ଏକାବେଳକେ ଭାଙ୍ଗିପଡ଼ିଲେ । ସେଥିପାଇଁ ସେ କିଛିକାଳ ଛୁଟିରେ ରହିଲେ ଏବଂ ସରକାରଙ୍କୁ ଅନୁରୋଧ କରି ପର୍ଯ୍ୟଟନ ବିଭାଗରୁ ପୁଣି ଥରେ ଶିକ୍ଷା ବିଭାଗକୁ ଫେରିଗଲେ । ସରକାର ତାହାଙ୍କର ସମ୍ଯସ୍ୟା ଉପଲବ୍ଧି କରି ତାହାଙ୍କୁ ରେଭେନ୍‌ସା କଲେଜରେ ଅବସ୍ଥାପିତ କଲେ । ୧୯୭୮ ମାର୍ଚ୍ଚ ମାସ ପହିଲା ଦିନ ସେ ଚାକିରିରୁ ଅବସର ଗ୍ରହଣ କଲେ । ଅବସର ଗ୍ରହଣ କରିବା ପରେ ସେ ବିଭିନ୍ନ ସାହିତ୍ୟିକ, ସାଂସ୍କୃତିକ ଓ ଧାର୍ମିକ ଅନୁଷ୍ଠାନ ସହିତ ପ୍ରତ୍ୟକ୍ଷ ଭାବରେ ସମ୍ପୃକ୍ତ ହୋଇପଡ଼ିଲେ । ବିଶ୍ୱ ହିନ୍ଦୁ ପରିଷଦର ଓଡ଼ିଶା ରାଜ୍ୟ ସଭାପତି, ବିଶ୍ୱଭାଷା ପ୍ରତିଷ୍ଠାନର ପ୍ରାଦେଶିକ ସଭାପତି, ଓଡ଼ିଶା ପାଲା ଗାୟକ ପରିଷଦର ସଭାପତି ପ୍ରଭୃତି ବିଭିନ୍ନ ପଦପଦବୀରେ ରହି ସେ ସୁଚାରୁରୂପେ ନିଜର ଦାୟିତ୍ୱ ତୁଲାଉଥିଲେ । ୧୯୮୩ ମସିହାରୁ ସେ ଭୁବନେଶ୍ୱରରେ ପ୍ରତିଷ୍ଠିତ ରିଜିଓନାଲ୍ କଲେଜ୍ ଅଫ୍ ମ୍ୟାନେଜ୍‌ମେଣ୍ଟ୍‌ରେ ପର୍ଯ୍ୟଟନ ବିଭାଗରେ ବିଭାଗୀୟ ମୁଖ୍ୟ ଓ ପ୍ରଫେସର ଭାବେ କାର୍ଯ୍ୟ କରି ଆସୁଛନ୍ତି । ଅବସର ଗ୍ରହଣ ପରେ ୧୯୭୯ ମସିହାରୁ ସେ ଭୁବନେଶ୍ୱର ସ୍ଥିତ ନିଜର ବାସଭବନରେ ଏକ ସ୍ନାତକୋତ୍ତର ଶିକ୍ଷାଦାନ କେନ୍ଦ୍ର (Post-Graduate Coaching Centre) ପ୍ରତିଷ୍ଠା ପୂର୍ବକ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ଓଡ଼ିଆ ଏମ୍.ଏ. ପରୀକ୍ଷା ପାଇଁ ଛାତ୍ରଛାତ୍ରୀମାନଙ୍କୁ ଶିକ୍ଷାଦାନ କରୁଛନ୍ତି । ଏହି ଅନୁଷ୍ଠାନ ଯେଉଁଳି ସୁନାମ ଅର୍ଜନ କରିଛି, ତାହା ଏମ୍.ଏ. ପରୀକ୍ଷା ଦେଉଥିବା ବ୍ୟକ୍ତିମାନେ ହିଁ ଜାଣନ୍ତି । ଅଧ୍ୟାପକ ଶ୍ରୀଯୁକ୍ତ ବ୍ରହ୍ମାଙ୍କର ଆଜୀବନ ଅଧ୍ୟାପନା କୌଶଳ, ନିଜ ଗୃହରେ ବିରାଟ ବ୍ୟକ୍ତିଗତ ପାଠାଗାର ପ୍ରତିଷ୍ଠା, ବହୁ ସଂଖ୍ୟକ ଗ୍ରନ୍ଥ ରଚନା, ବହୁ କଠିନ ବିଷୟକୁ ସରଳ ଭାବରେ ବୁଝାଇପାରିବାର ଅପୂର୍ବ ଶକ୍ତି, ଦୃଢ଼ ସମୟାନୁବର୍ତ୍ତିତା, ପ୍ରତିଦିନ ପାଠ୍ୟ ଉପରେ ଛାତ୍ରଛାତ୍ରୀମାନଙ୍କୁ ନୋଟ୍ ଡାକି ସେମାନଙ୍କର ଲିଖନଶକ୍ତି ବଢ଼ାଇବା- ଏହ ସମସ୍ତ ମିଳିତ ଭାବରେ ତାହାଙ୍କ ଅନୁଷ୍ଠାନଟିକୁ ଅପୂର୍ବ ଗୌରବ ପ୍ରଦାନ କରିଛି । ଏହା ସଙ୍ଗେ ସଙ୍ଗେ ୧୯୩୯ ମସିହାରୁ ଆଜି ପର୍ଯ୍ୟନ୍ତ ସଂସ୍କୃତ ଭାଷାର ନାନା ଶାସ୍ତ୍ର ଅଧ୍ୟୟନ, ଅନୁଶୀଳନ ଓ ଜ୍ଞାନ ଆହରଣ କରିବାରେ ବରାବର ଲାଗିପଡ଼ିଛନ୍ତି ।

## ପାରିବାରିକ ଜୀବନ :

ଅଧ୍ୟାପକ ବ୍ରହ୍ମାଙ୍କର ପାରିବାରିକ ଜୀବନ ତାହାଙ୍କର ସାଧନା ସହିତ ନିବିଡ଼ ଭାବରେ ସମ୍ପୃକ୍ତ । ତାଙ୍କର ପିତୃଦେବ ପଣ୍ଡିତ ଚନ୍ଦ୍ରଶେଖର ବ୍ରହ୍ମା ୧୯୪୨ ମସିହାରେ

ଆସିକା ହାଇସ୍କୁଲରେ ଶିକ୍ଷକ ପଦବୀରୁ ଅବସର ଗ୍ରହଣ କରିଥିଲେ । ତପ୍ରରେ ସେ ୧୯୪୭ ମସିହା ପର୍ଯ୍ୟନ୍ତ ଆସିକା ସ୍ଥିତ ସଂସ୍କୃତ ଟୋଲ୍‌ରେ କାର୍ଯ୍ୟ କଲେ । ସେହି ସମୟରେ ସେ ଆସିକାରେ ଅବସ୍ଥାନ କରିଥିଲେ । ତପ୍ରରେ ସେ ନିଜ ଗ୍ରାମ ପରଶୁଲୁଣ୍ଡାକୁ ଚାଲିଯାଇଥିଲେ । ମାତ୍ର ଗ୍ରାମର ପରିସ୍ଥିତି ତାଙ୍କ ପାଇଁ ପ୍ରତିକୂଳ ହୋଇପଡ଼ିବାରୁ ନିକଟବର୍ତ୍ତୀ ଷଡ଼ଙ୍ଗୀପଲ୍ଲୀ ଗ୍ରାମରେ ଏକ ଗୃହ ନିର୍ମାଣ କରାଇ ରହିଲେ । ଏହା ହେଉଛି ୧୯୪୯ ମସିହାର ଘଟଣା । ସେଠାରେ ମାତ୍ର ଦୁଇବର୍ଷ ରହିବା ପରେ ୧୯୫୧ ମସିହା ଫେବୃଆରୀ ମାସ ୧୩ ତାରିଖ (ଭୀଷ୍ମାଷ୍ଟମୀ) ଦିନ ତାଙ୍କର ଦେହାନ୍ତ ହୋଇଯାଇଥିଲା । ଅଧ୍ୟାପକ ବ୍ରହ୍ମା ସେହିଦିନ ତତ୍କାଳୀନ ଓଡ଼ିଶାର ଶିକ୍ଷା ଓ ବିକାଶ ମନ୍ତ୍ରୀ ଶ୍ରୀଯୁକ୍ତ ରାଧାନାଥ ରଥଙ୍କ ସହିତ ଭଞ୍ଜନଗର ଠାରେ ଅନୁଷ୍ଠିତ ଭଞ୍ଜ ଜୟନ୍ତୀ ଉତ୍ସବରେ ଭାଷଣ ଦେବା ନିମିତ୍ତ ସେଠାରେ ଉପସ୍ଥିତ ଥିଲେ । ପିତାଙ୍କର ମୁମୂର୍ଷୁ ଅବସ୍ଥାର ସମ୍ବାଦ ପାଇ ସେ ତୁରନ୍ତ ଗ୍ରାମକୁ ଯାଇଥିଲେ । ସେହିଦିନ ରାତ୍ରିର ଶେଷ-ଭାଗରେ ପଣ୍ଡିତ ବ୍ରହ୍ମାଙ୍କର ଦେହାନ୍ତ ହୋଇଯାଇଥିଲା । ପିତୃବିୟୋଗ ସେତେବେଳେ ଅଧ୍ୟାପକ ବ୍ରହ୍ମାଙ୍କୁ ଆକସ୍ମିକ ବଜ୍ରପାତ ତୁଲ୍ୟ ପୀଡ଼ା ଦେଇଥିଲା । ପିତାଙ୍କର ଅନ୍ତ୍ୟେଷ୍ଟି କ୍ରିୟା ସମାପନ ପୂର୍ବକ ସେ ନିଜର କର୍ମକ୍ଷେତ୍ର କଟକ ସହରକୁ ଚାଲିଆସିଲେ । ସେତେବେଳେ ଗ୍ରାମରେ ତାଙ୍କର ମାତା ଏବଂ ଦୁଇ ଭାଇ ସତ୍ୟକାମ ଓ ସଦାନନ୍ଦ ରହିଥିଲେ । ସତ୍ୟକାମ ଜଣେ ଆଶୁକବି ଥିଲେ । ଖୁବ୍ କମ୍ ବୟସରୁ ତାଙ୍କଠାରେ ଅସାଧାରଣ କବିପ୍ରତିଭାର ଉନ୍ମେଷ ଘଟିଥିଲା । ତାଙ୍କର ବହୁ କବିତା ବର୍ତ୍ତମାନ ଅଧ୍ୟାପକ ବ୍ରହ୍ମାଙ୍କ ପାଖରେ ରହିଛି । ୧୯୫୩ ମସିହା ଶ୍ରାବଣ ପୂର୍ଣ୍ଣିମା ଦିନ ବାତରୋଗରେ ସତ୍ୟକାମଙ୍କର ଦେହାନ୍ତ ହୋଇଯାଇଥିଲା । ତାଙ୍କର କନିଷ୍ଠ ଭ୍ରାତା ଶ୍ରୀମାନ୍ ସଦାନନ୍ଦ ପିତୃବିୟୋଗ ପରେ ଅଧ୍ୟାପକ ବ୍ରହ୍ମାଙ୍କ ପାଖରେ ରହି ଅଧ୍ୟୟନ କରୁଥିଲେ । ସେ ସରକାରୀ ଚାକିରି କରି ଅବସର ଗ୍ରହଣ କରିଛନ୍ତି । ଜଣେ ବିଶିଷ୍ଟ ଜ୍ୟୋତିର୍ବିଦ୍ ରୂପେ ତାହାଙ୍କର ସୁଖ୍ୟାତି ରହିଛି ।

ଅଧ୍ୟାପକ ବ୍ରହ୍ମାଙ୍କର ମାତା ସାବିତ୍ରୀ ଦେବୀ ଶେଷ ପର୍ଯ୍ୟନ୍ତ ତାହାଙ୍କ ନିକଟରେ ରହୁଥିଲେ । ୧୯୭୨ ମସିହା ଫେବୃଆରୀ ୨୨ ତାରିଖରେ ତାଙ୍କର ଦେହାନ୍ତ ହୋଇଯାଇଥିଲା । ଶ୍ରୀଯୁକ୍ତ ବ୍ରହ୍ମା ତିନିଗୋଟି ପୁତ୍ର ଓ ଦୁଇ କନ୍ୟାସନ୍ତାନଙ୍କର ଜନକ ଅଟନ୍ତି । ପ୍ରଥମ ପୁତ୍ର ଭବାନୀଶଙ୍କର ଅଳା ଗୋଦାବରୀଶ ମହାପାତ୍ରଙ୍କ ଦତ୍ତପୁତ୍ର ଭାବରେ କଟକରେ ଅବସ୍ଥାନ କରୁଛନ୍ତି । ଦ୍ୱିତୀୟ ପୁତ୍ର ଶିବକୁମାରଙ୍କର ୧୯୭୬ ସେପ୍‌ଟେମ୍ବର ୨୬ ତାରିଖରେ ଅକାଳବିୟୋଗ ଘଟିଥିଲା । ତୃତୀୟ ପୁତ୍ର ଦେବକୁମାର ବର୍ତ୍ତମାନ ନିଜର ଧର୍ମପତ୍ନୀ ଓ ଏକ ପୁତ୍ର

ସନ୍ତାନ ସହିତ ଅଧ୍ୟାପକ ବ୍ରହ୍ମାଙ୍କ ନିକଟରେ ରହୁଛନ୍ତି । ସେ ଜଣେ ବିଶିଷ୍ଟ ହାସ୍ୟାଭିନେତା ରୂପେ ପ୍ରସିଦ୍ଧି ଅର୍ଜନ କରିଛନ୍ତି । ତାଙ୍କର ଦୁଇଜଣ କନ୍ୟା କବିତା ଓ ମମତା ନିଜ ନିଜର ସ୍ୱାମୀ ଓ ସନ୍ତାନମାନଙ୍କ ସହିତ ସମ୍ପ୍ରତି ଭୁବନେଶ୍ୱରରେ ଅବସ୍ଥାନ କରୁଛନ୍ତି । କନିଷ୍ଠା କନ୍ୟା ମମତା ଓଡ଼ିଆ ଅଧ୍ୟାପିକା ଅଛନ୍ତି ।

ତାହାଙ୍କର ଧର୍ମପତ୍ନୀ ସତ୍ୟଭାମା ଦେବୀ ସ୍ୱର୍ଗତ ଗୋଦାବରୀଶ ମହାପାତ୍ରଙ୍କର ଜ୍ୟେଷ୍ଠା କନ୍ୟା ଥିଲେ । ଶ୍ରୀଯୁକ୍ତ ବ୍ରହ୍ମାଙ୍କର ସାହିତ୍ୟ ସାଧନା କ୍ଷେତ୍ରରେ ସେ ପ୍ରେରଣାର ଉତ୍ସ ସ୍ୱରୂପ ରହିଥିଲେ । ୧୯୭୬ ମସିହାରେ ପୁତ୍ର ଶିବକୁମାରଙ୍କ ବିୟୋଗ ତାଙ୍କୁ ଦାରୁଣ ଆଘାତ ପ୍ରଦାନ କରିଥିଲା । ସେହିଦିନଠାରୁ ଚିନ୍ତାଗ୍ରସ୍ତ ହୋଇ ସେ ଅସୁସ୍ଥ ହୋଇପଡ଼ିଥିଲେ । ୧୯୮୬ ମସିହା ମାର୍ଚ୍ଚ ୨୧ ତାରିଖ ଦିନ ତାଙ୍କର ଦେହାନ୍ତ ହୋଇଯାଇଥିଲା । ପତ୍ନୀ ବିୟୋଗ ଜନିତ ଦୁଃଖ ବହୁଦିନ ପର୍ଯ୍ୟନ୍ତ ଅଧ୍ୟାପକ ବ୍ରହ୍ମାଙ୍କୁ ମ୍ରିୟମାଣ କରିଦେଇଥିଲା । ସେହି ସମୟରେ ଯେଉଁ ବିଶିଷ୍ଟ ବିଦ୍ୱାନ୍‌ମାନେ ଅଧ୍ୟାପକ ବ୍ରହ୍ମାଙ୍କୁ ସାନ୍ତ୍ୱନା ଦେବା ନିମିତ୍ତ ତାହାଙ୍କ ନିକଟରେ ଉପସ୍ଥିତ ହେଉଥିଲେ, ସେ ସେତେବେଳେ ମହାକବି କାଳିଦାସଙ୍କ 'ରଘୁବଂଶ'ର 'ଅଜ ବିଳାପ' ଅଂଶଟିକୁ ପାଠ ପୂର୍ବକ ନିଜର ଦୁଃଖ ଓ ଶୋକ ପ୍ରକାଶ କରୁଥିଲେ ।

ଏହା ହେଉଛି ଅଧ୍ୟାପକ ବ୍ରହ୍ମାଙ୍କର ପାରିବାରିକ ଜୀବନ ସମ୍ପର୍କୀୟ ଏକ ସଂକ୍ଷିପ୍ତ ସୂଚନା ।

ସମ୍ପ୍ରତି ଅଧ୍ୟାପକ ବ୍ରହ୍ମାଙ୍କର ଅଧିକାଂଶ ସମୟ ତାଙ୍କର ବିଶାଳ ଗ୍ରନ୍ଥାଗାରରେ ହିଁ ଅତିବାହିତ ହୋଇଥାଏ । ଉକ୍ତ ଗ୍ରନ୍ଥାଗାରଟି ଭାରତର ଯେକୌଣସି ଏକ ଜାତୀୟ ଗ୍ରନ୍ଥାଗାର ସହିତ ତୁଳନୀୟ । ଏଥିରେ ସଂସ୍କୃତ, ଓଡ଼ିଆ, ହିନ୍ଦୀ, ଇଂରାଜୀ ଓ ବଙ୍ଗଳା ଭାଷାର ବହୁ ଗ୍ରନ୍ଥ ସ୍ଥାନ ପାଇଛି । ଶ୍ରୀଯୁକ୍ତ ବ୍ରହ୍ମା ସଂସ୍କୃତ ସାହିତ୍ୟ ଓ ଓଡ଼ିଆ ସାହିତ୍ୟର ଯେଉଁସବୁ ଦୁର୍ଲଭ ପ୍ରାଚୀନ ଗ୍ରନ୍ଥ ସଂଗ୍ରହ ପୂର୍ବକ ରଖିଛନ୍ତି, ତାହାର ପଟାନ୍ତର ନାହିଁ । ତାହାଙ୍କର ପିତୃଦେବ ସଂଗ୍ରହ କରିଥିବା ବହୁ ପ୍ରାଚୀନ ସଂସ୍କୃତ ଗ୍ରନ୍ଥ ସମ୍ପ୍ରତି କୌଣସି ସଂସ୍କୃତ ଶିକ୍ଷାନୁଷ୍ଠାନରେ ମଧ୍ୟ ଉପଲବ୍ଧ ହେବା ଅସମ୍ଭବ । ଉକ୍ତ ଗ୍ରନ୍ଥାଗାରର ଗ୍ରନ୍ଥରାଜି ସମ୍ପର୍କୀୟ ବିସ୍ତୃତ ବିବରଣୀ 'ଉତ୍କଳର ବରପୁତ୍ର ଗୌରୀକୁମାର ବ୍ରହ୍ମା' ନାମକ ଗ୍ରନ୍ଥରେ ପ୍ରଦତ୍ତ ହୋଇଛି ।

### ଅଧ୍ୟାପକ ବ୍ରହ୍ମାଙ୍କ ସାହିତ୍ୟ ସୃଷ୍ଟି ସମ୍ଭାର :

ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା ଜଣେ ଲେଖକ ହିସାବରେ ଆତ୍ମପ୍ରକାଶ କରିଥିଲେ, ସେ ଯେତେବେଳେ ପାରଳାଖେମୁଣ୍ଡିରେ ବି.ଏ. ପଢୁଥିଲେ । ଆସିକାସ୍ଥିତ

ହରିହର ହାଇସ୍କୁଲରେ ସେ ପଢୁଥିଲାବେଳେ ତାଙ୍କର ପଣ୍ଡିତପିତା ଚନ୍ଦ୍ରଶେଖର ବ୍ରହ୍ମା ତାଙ୍କୁ ସଂସ୍କୃତ ବ୍ୟାକରଣ, ହିତୋପଦେଶ, ଚାଣକ୍ୟ ନୀତି ଓ ପଞ୍ଚତନ୍ତ୍ର ପ୍ରଭୃତି ଖୁବ୍ ଭଲଭାବରେ ପଢ଼ାଉଥିଲେ । ପିତାଙ୍କର ଷୋଡ଼ଶ ଉପଚାର ପୂଜା ଶେଷ ହୁଏ ପ୍ରତିଦିନ ରାତି ପ୍ରାୟ ନଅଟା ବେଳେ । ତା'ପରେ ଖାଇସାରି ପୁଅକୁ ସଂସ୍କୃତ ପଢ଼ାନ୍ତି ରାତି ପ୍ରାୟ ଦୁଇଟା ପର୍ଯ୍ୟନ୍ତ । ସେତେବେଳେ ସଂସ୍କୃତ ପଣ୍ଡିତମାନେ ସଂସ୍କୃତ ସାହିତ୍ୟର ବହୁ ଗ୍ରନ୍ଥରୁ ଲମ୍ବା ଲମ୍ବା ଅଂଶ ମୁଖସ୍ଥ କରିବାପାଇଁ ବାଧ୍ୟ ହେଉଥିଲେ । ଅଧ୍ୟାପକ ବ୍ରହ୍ମା ପିଲାଦିନରୁ ସେପ୍ରକାର ତାଲିମ ପାଇଥିଲେ ଓ ତାହା ପରବର୍ତ୍ତୀ ଜୀବନରେ ଏକ ଅଭ୍ୟାସରେ ପରିଣତ ହୋଇଯାଇଥିଲା । କଲେଜରେ ଯେତେବେଳେ ଇଂରାଜୀ ଲେଖକ Ruskin ଏବଂ ବାଗ୍ମିତା ପରିପୂର୍ଣ୍ଣ Edmund Burke ଙ୍କ ବିଶ୍ୱବିଖ୍ୟାତ ଆମେରିକା ବିଷୟକ ଭାଷଣ କଲେଜର ପାଠ୍ୟକ୍ରମ ଭିତରେ ପଢୁଥିଲେ, ସେତେବେଳେ ସେହି ଶତାଧିକ ପୃଷ୍ଠାର ଭାଷଣାତ୍ମକ ପୁସ୍ତକକୁ ପାଣି ପରି ମୁଖସ୍ଥ କରିଦେଇଥିଲେ । ତାଙ୍କର ଦୁଇ ଗୁରୁ ଅଧ୍ୟାପକ ରଥ (ଯେ କି ପରେ ଅନେକ ବର୍ଷ ଧରି ଉତ୍କଳ ବିଶ୍ୱବିଦ୍ୟାଳୟର ରେଜିଷ୍ଟ୍ରାର ଥିଲେ) ଏବଂ ଅଧ୍ୟାପକ ଟାଟା କୃଷ୍ଣମୂର୍ତ୍ତି ବ୍ରହ୍ମାଙ୍କର ଅପୂର୍ବ ମୁଖସ୍ଥଶକ୍ତି ଦେଖି ଭୂୟସୀ ପ୍ରଶଂସା କରୁଥିଲେ ଏବଂ ଆଶୀର୍ବାଦ ମଧ୍ୟ ଦେଉଥିଲେ । ପାରଳାଖେମୁଣ୍ଡିରେ ତେଲୁଗୁ ପିଲାଙ୍କର ସଂଖ୍ୟା ଅଧିକ ଥିଲା । ସେତେବେଳେ ଓଡ଼ିଶା ପ୍ରଦେଶ ଗଠିତ ହେବାର ମାତ୍ର ବର୍ଷେ ଅତୀତ ହୋଇଥିବାରୁ ପିଲାଙ୍କ ମଧ୍ୟରେ କେତେକ ପରିମାଣରେ ଭାଷାଭିତ୍ତିକ ଆତ୍ମସମ୍ମାନବୋଧ ରହିଥିଲା । ତେଣୁ ଓଡ଼ିଆ ପିଲାମାନେ ଓଡ଼ିଆ ବଦଳରେ ଇଂରାଜୀରେ କଥାବାର୍ତ୍ତା ହେବାକୁ ଅଧିକ ଚେଷ୍ଟିତ ଥିଲେ । ଫଳରେ ସେଠା ପରିସ୍ଥିତିର ପ୍ରଭାବରେ ଅଧ୍ୟାପକ ବ୍ରହ୍ମା ପିତାଙ୍କର ସଂସ୍କୃତ ଶିକ୍ଷାର ପ୍ରଭାବ ସହିତ ପରିସ୍ଥିତିର ଗଭୀର ପ୍ରଭାବରେ ଇଂରାଜୀ ଭାଷାକୁ ଆୟତ୍ତ କରିବାପାଇଁ ଏବଂ ତାକୁ ଆଳାପ ଆଲୋଚନାର ମାଧ୍ୟମ କରିବା ପାଇଁ ଦେବକୃତ ସୁଯୋଗ ପାଇଥିଲେ । ପଦେ କଥାରେ କହିଲେ; ଘରେ ପାଇଥିଲେ ପଣ୍ଡିତ ବଂଶର ସଂସ୍କୃତ ଶିକ୍ଷାର ପ୍ରବଳ ପ୍ରେରଣା । ପ୍ରାୟ ପାଞ୍ଚ ବର୍ଷ ବୟସରୁ ମାଟ୍ରିକ୍ ପାଶ୍ କରିବା ପର୍ଯ୍ୟନ୍ତ ସଂସ୍କୃତ ଅଭିମାନୀ ପିତାଙ୍କ ପ୍ରେରଣାରେ ସଂସ୍କୃତକୁ ନିଜର ଦ୍ୱିତୀୟ ମାତୃଭାଷା ରୂପେ ବ୍ୟବହାର କରିବା ପାଇଁ ଅନିବାର୍ଯ୍ୟ ପ୍ରଚେଷ୍ଟା ଏବଂ ପରିସ୍ଥିତିର ବାଧ୍ୟବାଧକତାରେ ଇଂରାଜୀକୁ ବ୍ୟବହାର କରିବାପାଇଁ ଆଉ ଏକ ଶକ୍ତିଶାଳୀ ପ୍ରେରଣା । ଏଭଳି ଭାବରେ ଅଧ୍ୟାପକ ବ୍ରହ୍ମା ବି.ଏ. ପାଶ୍ କଲାବେଳକୁ ପିତାଙ୍କର ଗଭୀର ଯତ୍ନ ହେତୁ ତିନି ଭାଷାରେ ପ୍ରବୀଣତା ହାସଲ କରିପାରିଥିଲେ । ଘର ଭିତରେ ତ ସର୍ବଦା ଭଞ୍ଜ, କବିସୂର୍ଯ୍ୟଙ୍କ ସାହିତ୍ୟର ଆବୃତ୍ତି ଓ ବ୍ୟାଖ୍ୟାନ ଚାଲିଥିଲା ।

୧୯୪୦ରେ ସେ ଯେତେବେଳେ ବି.ଏ. ପାଶ୍ କଲେ, ସେତେବେଳକୁ ପତ୍ରପତ୍ରିକାରେ ତାଙ୍କର ଅନେକ ପ୍ରବନ୍ଧ ପ୍ରକାଶ ପାଇସାରିଥିଲା । ବ୍ରହ୍ମପୁରରୁ ପ୍ରକାଶ ପାଉଥିବା 'ନବୀନ' ପତ୍ରିକାରେ ତାଙ୍କର ଅନେକ ପ୍ରବନ୍ଧ ପ୍ରକାଶ ପାଇଥିବାରୁ ସେ ଉତ୍ସାହିତ ହୋଇଥିଲେ । ଆନ୍ଧ୍ର-ଓଡ଼ିଶା ସୀମାନ୍ତରେ ଓଡ଼ିଶାର ଜାତୀୟ ଜାଗରଣର ବାର୍ତ୍ତା ପ୍ରଚାର କରୁଥିବା ସେକାଳର ଡବଲ ଏମ୍.ଏ. କପିଳେଶ୍ୱର ଦାସ (ପରେ କଲେଜରେ ପ୍ରିନ୍‌ସିପାଲ୍) ତାଙ୍କୁ ପ୍ରବନ୍ଧ ଲେଖିବା ପାଇଁ ଉତ୍ସାହିତ କରୁଥିଲେ । ଆସିକା ହାଇସ୍କୁଲର ପ୍ରଧାନଶିକ୍ଷକ ନରସିଂହ ପାଢ଼ୀ (ପରେ କଲେଜର ଅଧ୍ୟକ୍ଷ) ମଧ୍ୟ ବ୍ରହ୍ମାଙ୍କୁ ଲେଖାଲେଖି କରିବାକୁ ପ୍ରବଳ ଉତ୍ସାହ ଦେଉଥିଲେ । ପରେ କଟକ ସହିତ ତାଙ୍କର ସମ୍ପର୍କ ସ୍ଥାପିତ ହେଲା । ସେତେବେଳେ ସ୍ୱନାମଧନ୍ୟ କବି, ପ୍ରାବନ୍ଧିକ ଏବଂ ଲବ୍ଧପ୍ରତିଷ୍ଠ ଲେଖକ ସୁବିଖ୍ୟାତ ମଧୁ ରାଓଙ୍କର ଗୋଟିଏ ପୁସ୍ତକ ବିରୋଧରେ ବିଖ୍ୟାତ 'ସହକାର' ପତ୍ରିକାରେ ପ୍ରବନ୍ଧଟିଏ ପ୍ରକାଶ ପାଇଲା । ପ୍ରବନ୍ଧ ଲେଖକ ଥିଲେ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ'ର ସୁବିଖ୍ୟାତ ସଂଗ୍ରାହକ ଶ୍ରୀ ଗୋପାଳ ଚନ୍ଦ୍ର ପ୍ରହରାଜ । ସେକାଳର ବି.ଏ. ଛାତ୍ର ବ୍ରହ୍ମା ଯଦି ଜାଣିଥା'ନ୍ତେ ଯେ ଗୋପାଳ ଚନ୍ଦ୍ର ପ୍ରହରାଜ ଜଣେ ଅସାଧାରଣ ବ୍ୟକ୍ତି, ତାଙ୍କୁ ସମାଲୋଚନା କରିବାକୁ ସେ କେବେହେଲେ ସାହସ କରି ନଥା'ନ୍ତେ । ତାଙ୍କୁ ଜଣେ ସାଧାରଣ ଶିକ୍ଷକ ବୋଲି ଭାବି ସେ ସାପଗାତରେ ହାତ ମାରିଦେଲେ । ସେତେବେଳେ ସେ ଜାଣିନଥିଲେ ଯେ; ମଧୁବାବୁଙ୍କର ବହି ତଳକ୍ଲାସ୍‌ର ପାଠ୍ୟରୂପେ ,ହଜାର ହଜାର ସଂଖ୍ୟାରେ ବିକ୍ରି ହେଉଛି । ତାଙ୍କ ବହିର ବିକ୍ରି ଦେଖି ଅନ୍ୟ ଶିକ୍ଷକମାନେ ନିଜର ବହି ସ୍କୁଲରେ ଚଳାଇପାରିଲେ ନାହିଁ । ତେଣୁ ନାମଜାଦା ଶିକ୍ଷକମାନେ ଏକାଠି ହୋଇ ''ମଧୁବାବୁଙ୍କର ବହିଟିରେ ବହୁ ଦୋଷ ରହିଛି ଏବଂ ତାକୁ ପାଠ୍ୟପୁସ୍ତକରୁ ଉଠାଇ ଦିଆଯାଉ'' ବୋଲି ଲୋକଙ୍କୁ ଜଣାଇବା ପାଇଁ ଗୋଟିଏ ପ୍ରବନ୍ଧ ଲେଖିଲେ ଓ ସୁବିଖ୍ୟାତ ସାଧକ ଶ୍ରୀଯୁକ୍ତ ଗୋପାଳ ପ୍ରହରାଜଙ୍କୁ କହିପୋଛି ତାଙ୍କ ନାମରେ ପ୍ରବନ୍ଧଟି ଛାପିଦେଲେ । ୧୯୪୧ ଆରମ୍ଭରେ ଶ୍ରୀଯୁକ୍ତ ବ୍ରହ୍ମା ଗୋଦାବରୀଶ ମହାପାତ୍ରଙ୍କ ଜାମାତା ହେବାପରେ ତାଙ୍କ ସହିତ ବରାବର କଟକ ଆସୁଥିଲେ । ଥରେ 'ସହକାର' ପତ୍ରିକାର ପ୍ରକାଶ ସ୍ଥାନ 'ସାରସ୍ୱତ ପ୍ରେସ୍'ରୁ ପ୍ରବନ୍ଧର ପଛରେ ଥିବା ଇତିହାସ ଜାଣିବାକୁ ସମର୍ଥ ହେଲେ । କିନ୍ତୁ କଲେଜରେ ଛାତ୍ର ଥାଉ ଥାଉ ଯେତେବେଳେ ପ୍ରହରାଜଙ୍କୁ ତୀବ୍ର ଭାବରେ ଆକ୍ରମଣ କରି ତାଙ୍କ ଲେଖାକୁ ଖଣ୍ଡନ କରିଥିଲେ ଓ ସହକାର ସମ୍ପାଦକଙ୍କ ପାଖକୁ ପଠାଇଥିଲେ, ସେତେବେଳେ ଲେଖାଟି ସ୍ୱକୀୟ ଗୁଣରେ ସମ୍ପାଦକ ବାଳକୃଷ୍ଣବାବୁଙ୍କୁ ଆକୃଷ୍ଟ କରିଥିଲା । ସେ ବ୍ରହ୍ମାଙ୍କର ଯୁକ୍ତିଗୁଡ଼ିକୁ ଆଲୋଚନା କରି ସହକାର ପତ୍ରିକାରେ ଲେଖାଟିକୁ ଛାପିଦେଇଥିଲେ ।

ବ୍ରହ୍ମାଙ୍କର ଜବାବ ଏଭଳି ଯୁକ୍ତିଯୁକ୍ତ ଏବଂ ଜ୍ଞାନଗର୍ଭକ ଥିଲା ଯେ; ତାହାର ଉତ୍ତର କେହି ଦେଇପାରିଲେ ନାହିଁ। ୧୯୪୬ରୁ କଟକ ଖ୍ରୀଷ୍ଟ କଲେଜରେ ଶ୍ରୀଯୁକ୍ତ ବ୍ରହ୍ମା ଅଧ୍ୟାପକ ହେବାପରେ, ସେ ସମୟର ଅନେକ ଲେଖକ, ଯଥା- ବସନ୍ତକୋକିଳ ଶ୍ରୀଯୁକ୍ତ ପତି, ବୁଦ୍ଧିଜୀବୀ ଶ୍ରୀଯୁକ୍ତ ରଘୁନାଥ ଦାଶ, ପ୍ରବୀଣ ଚିନ୍ତାନାୟକ ଶ୍ରୀଯୁକ୍ତ ଶ୍ୟାମସୁନ୍ଦର ମିଶ୍ର ଏବଂ ବୁଦ୍ଧିଜୀବୀ ନବକିଶୋର ଦାସ ପ୍ରମୁଖ ପ୍ରତିଷ୍ଠିତ ବ୍ୟକ୍ତିମାନେ ସଭାସମିତିରେ ବ୍ରହ୍ମାଙ୍କ ପ୍ରବନ୍ଧର ଗୌରବକଥା ପ୍ରକାଶ କରୁଥିଲେ।

ବର୍ତ୍ତମାନ ବିଂଶ ଶତାବ୍ଦୀ ପୂରିଯାଇଛି ଏବଂ ଆମେ ଏକବିଂଶ ଶତାବ୍ଦୀରେ ପ୍ରବେଶ କରିସାରିଛୁ। ୧୯୪୧ରୁ ଆଜି ପର୍ଯ୍ୟନ୍ତ ଅଧ୍ୟାପକ ବ୍ରହ୍ମା ଦୀର୍ଘ ଷାଠିଏ ବର୍ଷ ଧରି ବରାବର ବକ୍ତୃତା ଦେଇ ଆସୁଛନ୍ତି। ନାନା ବିଷୟରେ ଆଲୋଚନାତ୍ମକ ପ୍ରବନ୍ଧ, ଓଡ଼ିଆରେ, ଇଂରାଜୀରେ (ଏବଂ) ବେଳେବେଳେ ହିନ୍ଦୀରେ ଲେଖି ଆସୁଛନ୍ତି। ବଙ୍ଗଳାରୁ ଓଡ଼ିଆରେ, ହିନ୍ଦୀରୁ ଓଡ଼ିଆରେ ଏବଂ ଇଂରାଜୀରୁ ଓଡ଼ିଆରେ ପ୍ରବନ୍ଧ ଅନୁବାଦ କରି ଯଶସ୍ୱୀ ହୋଇପାରିଛନ୍ତି। ଏ ପର୍ଯ୍ୟନ୍ତ ଚାରି ଭାଷାରେ ଅଧ୍ୟାପକ ବ୍ରହ୍ମାଙ୍କର ପ୍ରାୟ ଶହେ ଖଣ୍ଡ ବହି (ପୁସ୍ତକ ଓ ପୁସ୍ତିକା) ପ୍ରକାଶ ପାଇଛି। ସାହିତ୍ୟ ସାଧନାର ବହୁ ଚମତ୍କାର, ବିସ୍ମୟକର ଏବଂ ଅଭିନନ୍ଦନୀୟ ଗୁଣ ତାଙ୍କ ମସ୍ତିଷ୍କରେ ଭଗବାନ ରଖିଦେଇଛନ୍ତି। ଏତେ ଗୁଣ ଥିବା ବ୍ୟକ୍ତି ଭାରତର ଯେକୌଣସି ରାଜ୍ୟରେ ଖୋଜିବୁଲିଲେ ମିଳିବା କଷ୍ଟକର ହେବ। ଏବେ ତାଙ୍କୁ ବୟାଅଶୀ ବର୍ଷ ହୋଇଗଲା। ତାଙ୍କ କଣ୍ଠର ମଧୁର ସ୍ୱର ଏ ପର୍ଯ୍ୟନ୍ତ ବିଲୁପ୍ତ ହୋଇନାହିଁ। ଏବେ ଏହି ବୃଦ୍ଧ ବୟସରେ ମଧ ତାଙ୍କ ମୁଖର ପ୍ରସନ୍ନତା ଟିକିଏ ହେଲେ କମିଯାଇ ନାହିଁ। ଏ ପର୍ଯ୍ୟନ୍ତ ଡାକବାଜି ଯନ୍ତ୍ର ନଥିଲେ ମଧ ହଜାର ହଜାର ଲୋକଙ୍କୁ ଦୁଇ/ତିନିଘଣ୍ଟା ଅନର୍ଗଳ ଭାଷଣ ଦେଇପାରୁଛନ୍ତି। ତାଙ୍କର ଯୌବନରେ ଯେପରି ସ୍ୱର ଲହର ସଂଯୋଗ କରି ଅସଂଖ୍ୟ ଛାତ୍ର ଏବଂ ଅଗଣିତ ଶ୍ରୋତାଙ୍କୁ ବିମୁଗ୍ଧ କରି ରଖିପାରୁଥିଲେ, ଏବେ ମଧ ତାହା ବିଶେଷ କମି ନାହିଁ। କ୍ଲାସ୍‌ରେ ବଡ଼ ବଡ଼ କାବ୍ୟ ପଢ଼ାଇଲାବେଳେ ଖଣ୍ଡିଏ ବହି ହାତରେ ନଧରି ମନରୁ ଗାଇଯିବା ଏବଂ ଜଟିଳ ପଦମାନଙ୍କର ଅର୍ଥ ବୁଝାଇବା କିଭଳି କଷ୍ଟ କଥା, ତାହା ଅନୁଭବରେ ନ ଆଣିପାରିଲେ, ଜାଣିହେବ ନାହିଁ। ସେ ସମୟରେ ବ୍ରହ୍ମାଙ୍କର ଏହି ବିଦଗ୍ଧତା ଏବଂ ସାରସ୍ୱତ ଶକ୍ତି ଦେଖି କେହି କେହି ଗୁଣମୁଗ୍ଧ ଲୋକ କହୁଥିଲେ- ''ବୋଧହୁଏ ସାରା ଭାରତରେ ଏଭଳି ଶିକ୍ଷକ ଖୁବ୍ କମ୍ ଥିବେ।'' ରେଭେନ୍‌ସା କଲେଜର ୨୧ ନଂ ରୁମ୍‌ରେ (ଓଡ଼ିଶାର ଏକ ବିଶାଳ କ୍ଲାସ୍‌ରୁମ୍ ଭାବରେ ଯାହା ସୁପରିଚିତ ଥିଲା) ବ୍ରହ୍ମା ପଢ଼ାଉଥିଲାବେଳେ, ସନ୍ଧ୍ୟା ପୂର୍ବରୁ, ଶେଷ କ୍ଲାସ୍ ପରେ ମଧ, ଖେଳପଡ଼ିଆ ଛାଡ଼ି ବିଭିନ୍ନ Subject ର ଛାତ୍ରଛାତ୍ରୀମାନେ ଆଗ୍ରହରେ

ଆସିଯାଇ ବ୍ରହ୍ମାଙ୍କ କ୍ଲାସ୍‌ରେ ଧୀରସ୍ଥିର ଭାବରେ ଠିଆହୋଇ, ସତେ ଯେପରିକି ସାହିତ୍ୟରସ ପିଇଯାଉଥିଲେ । ଏଭଳି ଆଉଜଣେ ବିଚିତ୍ର ଶକ୍ତିସମ୍ପନ୍ନ ସାହିତ୍ୟ ଅଧ୍ୟାପକ କେତେବର୍ଷ ପରେ ଓଡ଼ିଶାର କୌଣସି ମହାବିଦ୍ୟାଳୟରେ ଆତ୍ମପ୍ରକାଶ କରିବ, ତାହା ଜାଣିବା ମନୁଷ୍ୟର ଚିନ୍ତାଶକ୍ତିର ବାହାରେ ବୋଲି ଅନେକ ଲୋକ ସେତେବେଳେ କହୁଥିଲେ ।

## ସାହିତ୍ୟିକ ଅବଦାନ :

ଅବଦାନ ଶବ୍ଦର ଅର୍ଥ ଶୁଦ୍ଧକର୍ମ (ଯେପରିକି ସୁବିଖ୍ୟାତ 'ଅଶୋକ ଅବଦାନ' ନାମକ ଗ୍ରନ୍ଥ) । କିନ୍ତୁ ଦୀର୍ଘକାଳ ଧରି ଇଂରାଜୀ ଶିକ୍ଷାର ପ୍ରସାର ଫଳରେ, ଇଂରାଜୀ ଶବ୍ଦ Contributation ର ପ୍ରତିଶବ୍ଦ ଭାବରେ ଓଡ଼ିଆରେ ଅବଦାନ ବୋଲି କୁହାଯାଉଛି । ଯେଉଁମାନେ ଅଧ୍ୟାପକ ବ୍ରହ୍ମାଙ୍କର ପ୍ରକାଶିତ ଗ୍ରନ୍ଥରାଜି ଉପରେ ଆଲୋଚନା କରିଛନ୍ତି, ସେମାନେ ତାଙ୍କର ପୁସ୍ତକଗୁଡ଼ିକୁ ତାତ୍ତ୍ୱିକ ଭେଦ ବା ପ୍ରକାରଭେଦ ଦୃଷ୍ଟିରୁ ବିଭିନ୍ନ ଶ୍ରେଣୀରେ ବିଭାଗ କରିଅଛନ୍ତି ।

## ସାହିତ୍ୟ ସମାଲୋଚନା :

ଅଧ୍ୟାପକ ବ୍ରହ୍ମା ବିଶିଷ୍ଟ ଓଡ଼ିଆ କବିମାନଙ୍କର ତଥା ପ୍ରସିଦ୍ଧ ସଂସ୍କୃତ କବିମାନଙ୍କର ରଚନା ଉପରେ ବିଶ୍ଳେଷଣାତ୍ମକ ବା ତୁଳନାତ୍ମକ ବିଚାର କରି ଅପୂର୍ବ କୃତିତ୍ୱ ଦେଖାଇଛନ୍ତି । ତାଙ୍କର ତପସ୍ୱିନୀ ଓ ମେହେର ସାହିତ୍ୟ, ଶକୁନ୍ତଳା ଓ ଗଙ୍ଗାଧର, ରସକଲ୍ଲୋଳ ସମୀକ୍ଷା, ଜଗନ୍ନାଥ ଦାସଙ୍କ ଓଡ଼ିଆ ରାସ ପଞ୍ଚାଧ୍ୟାୟୀର ମୌଳିକତା ଓ ସୌନ୍ଦର୍ଯ୍ୟ, ସମର ତରଙ୍ଗରେ ବ୍ରଜନାଥଙ୍କ ପ୍ରତିଭା, ଭଞ୍ଜଙ୍କ ବିଭିନ୍ନ କାବ୍ୟ ଉପରେ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା, ରାଧାନାଥଙ୍କ ଚିଲିକା ଉପରେ ବିଶାଳ ଆଲୋଚନା, ଉଷା କାବ୍ୟ ଉପରେ ଆଗରୁ କେହି କରିନଥିବା ସମ୍ପୂର୍ଣ୍ଣ ମୌଳିକ ତଥ୍ୟ ଉପସ୍ଥାପନମୂଳକ ସମୀକ୍ଷାରେ କବିଙ୍କର ବିଚିତ୍ର ପ୍ରତିଭା ପ୍ରକାଶ, ନୀଳକଣ୍ଠ ଦାସଙ୍କର କାବ୍ୟସାହିତ୍ୟ ଉପରେ ତାଙ୍କର ପ୍ରତିଭାବିକାସର ତର୍ଜମା, ସାରଳା ଦାସ, ବଳରାମ ଦାସ ପ୍ରଭୃତିଙ୍କ ରଚନାବଳୀ ଉପରେ ମୌଳିକ ଆଲୋଚନା, କବିସୂର୍ଯ୍ୟଙ୍କ ଚମ୍ପୂ ଏବଂ ସଙ୍ଗୀତମାଳା ଉପରେ ମୌଳିକ ତଥ୍ୟ ପ୍ରକାଶ, ଏ ସମସ୍ତ ବିଷୟ-ସୂଚିତ ଜ୍ଞାନଗର୍ଭକତା ପ୍ରାୟ ପଚାଶ ବର୍ଷ ଧରି ଓଡ଼ିଶାର ସମସ୍ତ ଅଞ୍ଚଳରେ ଅସଂଖ୍ୟ ସଭାସମିତିରେ ଏବଂ ବହୁସଂଖ୍ୟକ ମହାବିଦ୍ୟାଳୟରେ ତାଙ୍କୁ ହଜାର ହଜାର ଲୋକଙ୍କର ହୃଦୟକୁ ଟାଣିନେଉଛି । ସାରଳାଯୁଗରୁ ଆରମ୍ଭକରି ଓଡ଼ିଶା ପ୍ରଦେଶ ଗଠନ ପର୍ଯ୍ୟନ୍ତ ଶତାଧିକ ଓଡ଼ିଆ ଲେଖକଙ୍କର ସାହିତ୍ୟ ସେ ପଢ଼ିଛନ୍ତି, ପଢ଼ାଉଛନ୍ତି

ଏବଂ ପ୍ରବନ୍ଧ ବା ନିବନ୍ଧ ଲେଖି ନିଜର ପାଣ୍ଡିତ୍ୟ ଏବଂ ପ୍ରତିଭାର ବିଶେଷତ୍ୱ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରିଯାଇଛନ୍ତି । ଓଡ଼ିଆ ସାହିତ୍ୟର ସେ ଜଣେ Human Encyclopaedia ।

ଶ୍ରେଷ୍ଠ ଓଡ଼ିଆ କବିମାନଙ୍କ ଉପରେ ସେ ଗବେଷଣା କରିଛନ୍ତି, ପୁସ୍ତକ ବା ପ୍ରବନ୍ଧ ଲେଖିଛନ୍ତି ଏବଂ ନିଜର ପ୍ରଶଂସନୀୟ କୃତିତ୍ୱ ଦେଖାଇଛନ୍ତି । ତାଙ୍କର ସାଧନାମୟ ଜୀବନରେ ସେ ଯଦି କେବଳ ଏତିକି କରିଥାଆନ୍ତେ ଏବଂ ଆଉ କିଛି ଲେଖି ନଥା'ନ୍ତେ, ତଥାପି ଓଡ଼ିଶାର ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା କ୍ଷେତ୍ରରେ ତାଙ୍କର ବିଜୟ-ପତାକା, ଗୌରବ-ଆକାଶର ଅତି ଉଚ୍ଚରେ ଫରଫର ହୋଇ ଉଡୁଥାଆନ୍ତା ।

## ଅଧ୍ୟାପକ ବ୍ରହ୍ମାଙ୍କ ସାହିତ୍ୟ-ଭଣ୍ଡାରର କେତୋଟି ରତ୍ନ-ଅଳଙ୍କାର

### ମହାକବି ଉପେନ୍ଦ୍ରଭଞ୍ଜଙ୍କର ଗୌରବାବହ ମହାକାବ୍ୟ 'ବୈଦେହୀଶ ବିଳାସ' ଉପରେ ଟୀକା :

ଏହା ଏକ ଜାତୀୟଗୌରବ ମଣ୍ଡିତ ମହାକାବ୍ୟ ହୋଇଥିବାରୁ ଏବଂ ଏହା ଉପରେ ପ୍ରକାଶିତ ହୋଇଥିବା ଟୀକାମାନଙ୍କ ଅପେକ୍ଷା ଅଧିକ ଗବେଷଣାମୂଳକ ଓ ଜ୍ଞାନଗର୍ଭକ ଟୀକା ଦରକାର ବୋଲି ଜନମତ ପ୍ରକାଶ ପାଉଥିବାରୁ ଏହା ଉପରେ ପୁଣି ଟୀକା ରଚନାର ଦାୟିତ୍ୱ କାହା ଉପରେ ଦିଆଯିବ ବୋଲି ଡକ୍ଟର ମହତାବ ପ୍ରମୁଖ ବିଜ୍ଞ ଓ ତୁଙ୍ଗ ନେତାମାନେ ଆଲୋଚନା କରିଥିଲେ । ସେକାଳର ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ କହିଲେ- ''ଆପଣମାନେ କହୁଥିବା ପ୍ରକାରେ ଏ ଦାୟିତ୍ୱ ଗୌରୀ କୁମାର ବ୍ରହ୍ମାଙ୍କୁ ଦିଆଯାଉ ।'' ତେଣୁ ବିଧାନସଭାରେ ଏ ବିଷୟ ଉପସ୍ଥାପିତ ହେଲା ଏବଂ ସମସ୍ତ ସଭ୍ୟ ଅଧ୍ୟାପକ ବ୍ରହ୍ମାଙ୍କୁ ହର୍ଷଧ୍ୱନିରେ ଅଭିନନ୍ଦନ ଜଣାଇ ତାଙ୍କୁ ସମ୍ପାଦକ ଓ ଟୀକାକାର ଦାୟିତ୍ୱ ଦେବା ପ୍ରସ୍ତାବକୁ ସମର୍ଥନ କଲେ । ମାତ୍ର ଏପରି ହେଲେ ଅଧ୍ୟାପକ ବ୍ରହ୍ମାଙ୍କର ଗୌରବ ବଢ଼ିଯିବ । ଏହି କାର୍ଯ୍ୟ କିପରି ନହେବ, ସେଥିପାଇଁ କେତେକ କର୍ମଚାରୀ ନାନା ପ୍ରକାର ଷଡ଼ଯନ୍ତ୍ର କଲେ । ବ୍ରହ୍ମା ଭୀଷଣ ପରିଶ୍ରମ କରି, ପ୍ରକାଶିତ ବିଭିନ୍ନ ଟୀକା ଭଲଭାବରେ ଅଧ୍ୟୟନ କଲେ ଏବଂ ଯେଉଁଠାରେ ଭଞ୍ଜଙ୍କ ରଚନା ବ୍ୟାଖ୍ୟାନରେ ଅସ୍ୱଚ୍ଛତା ବା ଦୁର୍ବୋଧତା ଥିଲା, ତାକୁ ମାର୍ଜିତ କରି ଓ ନିଜ ଗବେଷଣାରୁ କେତେକ ସ୍ଥଳରେ ଚମତ୍କାର ଅର୍ଥ ପ୍ରକଟନ କରି, ଆଠ ହଜାର ପୃଷ୍ଠାର ପାଣ୍ଡୁଲିପି (manuscript) ସରକାରଙ୍କୁ

ଦେଇଥିଲେ । ତାହାର ପ୍ରାୟ ଅର୍ଦ୍ଧଅଂଶ ବୈଦେହୀଶ ବିଳାସର (ଅର୍ଥାତ୍ କାବ୍ୟର ମୋଟ ୫୨ ଛାନ୍ଦରୁ ୨୮ ଛାନ୍ଦର ଟୀକା) ବିଶାଳ ମୁଖବନ୍ଧ ସହିତ ୧୯୭୪ରେ ପ୍ରକାଶ ପାଇଥିଲା । ଆଉ ପ୍ରାୟ ୪୦୦୦ ପୃଷ୍ଠାର ପାଣ୍ଡୁଲିପି ସରକାରୀ ଶୀତଳଭଣ୍ଡାରରେ ଗତ ୧୦/୧୨ ବର୍ଷ ତଳୁ ଆଜି ପର୍ଯ୍ୟନ୍ତ ପଡ଼ିରହିଛି ।

ଭଞ୍ଜଙ୍କ ଉପରେ ଓଡ଼ିଆରେ ଏବଂ ଇଂରାଜୀରେ ଆଉ ଦୁଇଟି ବହି ସେ ଲେଖିଛନ୍ତି । ଇଂରାଜୀ ବହିଟିର ନାମ "The Election Manifesto of Upendra Bhanja" । ଏହି ପୁସ୍ତକ ଭାରତରେ ସୁପ୍ରଚାରିତ ହେଲେ କବିସମ୍ରାଟଙ୍କ ଜନସେବାମୂଳକ ପରିକଳ୍ପନା ସହିତ ଅଧ୍ୟାପକ ବ୍ରହ୍ମାଙ୍କର ପ୍ରତିଭା ମଧ ଅଭିନନ୍ଦିତ ହେବ । ସମଗ୍ର ଭାରତରେ ଏଭଳି ମୌଳିକ ଓ ଅଭିନବ ଚିନ୍ତାଗର୍ଭକ ପୁସ୍ତକ ଏକାନ୍ତ ବିରଳ । ଭଞ୍ଜଙ୍କ ବିଚିତ୍ର ପ୍ରତିଭାମୂଳକ ଅନ୍ୟ ଏକ ଇଂରାଜୀ ପୁସ୍ତକ ଯନ୍ତ୍ରସ୍ଥ ।

ଯେଉଁ ଅଧ୍ୟାପକ ଓଡ଼ିଆ ସାହିତ୍ୟର ଶ୍ରେଷ୍ଠ କବିମାନଙ୍କ ଉପରେ ପାଣ୍ଡିତ୍ୟପୂର୍ଣ୍ଣ ସମାଲୋଚନା ଲେଖି ଅଶେଷ ଜନପ୍ରିୟତା ଅର୍ଜନ କରିଅଛନ୍ତି, ସେ ପୁଣି ଭଞ୍ଜଙ୍କ ମହାକାବ୍ୟ 'ବୈଦେହୀଶ ବିଳାସ' ଉପରେ ପୂର୍ବରୁ ପ୍ରକାଶ ପାଇ ନଥିବା ଚିନ୍ତା-ସମ୍ବଳିତ ଟୀକା ଲେଖି ଅସାଧ ସାଧନର ଅଧିକାରୀ ହୋଇଅଛନ୍ତି ।

ଅଧ୍ୟାପକ ବ୍ରହ୍ମା ଆଉ କିଛି ନ ଲେଖି ଯଦି କେବଳ 'ବୈଦେହୀଶ ବିଳାସ'ର ଟୀକା ଲେଖିଥାଆନ୍ତେ, ତଥାପି, ଜାତୀୟ ସ୍ତରରେ ତାଙ୍କର ଗୌରବ-ପତାକା ଅତି ଉଚ୍ଚରେ ଉଡୁଥାଆନ୍ତା ।

## ଗୀତାର ପ୍ରଥମ ଶ୍ଳୋକ :

ସାହିତ୍ୟର ରସସାଧନାରେ ଏବଂ ସାହିତ୍ୟିକ ଓ ଆଳଙ୍କାରିକ ତତ୍ତ୍ୱ ପ୍ରକାଶରେ ଗୌରବ-ମଣ୍ଡିତ ହୋଇ ଉଠିଥିବା ଜଣେ ବ୍ୟକ୍ତି, ଇଂରାଜୀରେ ମଧ ଭଞ୍ଜଙ୍କ ଅସାମାନ୍ୟ ମହନୀୟତା ବ୍ୟକ୍ତି କରିବାକୁ ତାଙ୍କ ଉପରେ ବହି ଲେଖିଛନ୍ତି- The Election Manifesto of Upendra Bhanja । ସେ ପୁଣି ଅନ୍ୟ ଦିଗରେ ନିଜର ବିଚିତ୍ର ଚିନ୍ତା ପ୍ରସାରିତ କରି ସଂସ୍କୃତ ସାହିତ୍ୟର ମଉଡ଼ମଣି ଶ୍ରୀମଦ୍ ଭଗବଦ୍ ଗୀତାର ଏକ ବିସ୍ମୟକର ଏବଂ ପୂର୍ବରୁ ଭାରତବର୍ଷର କୌଣସି ପ୍ରବୀଣ ପଣ୍ଡିତ ଆଲୋଚନା କରି ନଥିବା ଏକ ନୂତନ ମାର୍ଗରେ ନିଜର ମୌଳିକ ଚିନ୍ତା ଚାଳନା କରି ବୋଧହୁଏ ସମଗ୍ର ଭାରତବର୍ଷର ଗୀତାର ଆଲୋଚକମାନଙ୍କ ମଧ୍ୟରେ ଗୋଟିଏ ନୂଆ ବାଟ ଫିଟାଇଛନ୍ତି । ଶ୍ରୀମଦ୍ ଭଗବଦ୍ ଗୀତାର ପ୍ରଥମ ଶ୍ଳୋକଟି ହେଉଛି-

''ଧର୍ମକ୍ଷେତ୍ରେ କୁରୁକ୍ଷେତ୍ରେ
ସମବେତା ଯୁଯୁତ୍ସବଃ
ମାମକାଃ ପାଣ୍ଡବାଶ୍ଚୈବ
କିମକୁର୍ବତ ସଞ୍ଜୟ ।''

ଅଧ୍ୟାପକ ବ୍ରହ୍ମା ଏହି ଗୋଟିଏ ଶ୍ଳୋକକୁ ଛଅ ପ୍ରକାର ଅର୍ଥ କରିଛନ୍ତି । କାରଣ ଏଥିରେ ଅଛି 'କିମ୍' ଶବ୍ଦ । ଏ ଶବ୍ଦର ଛଅଗୋଟି ଅର୍ଥ ପଣ୍ଡିତମାନେ ବ୍ୟାଖ୍ୟାନ କରିଯାଇଛନ୍ତି ଏବଂ ବିଭିନ୍ନ ଅଧ୍ୟାୟର ତତ୍ତ୍ୱ ଏଥିରେ ରହିଥିବା ବିଷୟ ଦର୍ଶାଇଛନ୍ତି ।

ଏହି ଗ୍ରନ୍ଥରେ ଅଧ୍ୟାପକ ବ୍ରହ୍ମା ଦେଖାଇଛନ୍ତି ଯେ; ଶ୍ରୀମଦ୍ ଭଗବଦ୍ ଗୀତାର ଅଠରଗୋଟି ଅଧ୍ୟାୟରେ ଯେଉଁ ସାତଶହ ଶ୍ଳୋକ ରହିଛି, ସେ ସମସ୍ତ ଶ୍ଳୋକରେ ଥିବା ଅସଂଖ୍ୟ ସାମାଜିକ, ଐତିହାସିକ, ପୌରାଣିକ ଏବଂ ଦାର୍ଶନିକ ତତ୍ତ୍ୱ ଏହି ପ୍ରଥମ ଶ୍ଳୋକରେ ବୀଜୀଭୂତ । ତେଣୁ ଏହି ପ୍ରଥମ ଶ୍ଳୋକଟିକୁ ହିଁ ସମଗ୍ର ଗୀତାର ସଂକ୍ଷିପ୍ତସାର ରୂପେ ଗ୍ରହଣ କରାଯିବା ଉଚିତ । ଭାରତର ସୁବିଖ୍ୟାତ ଦାର୍ଶନିକ ଏବଂ ଭାରତର ରାଷ୍ଟ୍ରପତି ଡକ୍ଟର ରାଧାକ୍ରିଷ୍ଣନ୍‌କୁ ଭେଟି ଅଧ୍ୟାପକ ବ୍ରହ୍ମା ନିଜର ଏହି ପୁସ୍ତକର ସଂକ୍ଷିପ୍ତସାର ଶୁଣାଇଥିଲେ । ପୁସ୍ତକଟିକୁ ଇଂରାଜୀରେ ଅନୁବାଦ କରିଦେବା ପାଇଁ ଅଧ୍ୟାପକ ବ୍ରହ୍ମାଙ୍କୁ ସେ କହିଥିଲେ । କିନ୍ତୁ ଜୀବନର ନାନା ଘାତ-ପ୍ରତିଘାତ ମଧ୍ୟରେ ଅଧ୍ୟାପକ ବ୍ରହ୍ମା ଏ ପର୍ଯ୍ୟନ୍ତ ଏହି ଲକ୍ଷ୍ୟସାଧନ କରିପାରି ନାହାନ୍ତି । ସେ ପୁଣି କହନ୍ତି- ''ତାହାର ବେଳ ନ ଆସିଲେ ମୋ ଆଡୁ ମୁଁ କିଛି କରିପାରିବି ନାହିଁ ।'' କିନ୍ତୁ ଏହି ଗୀତାତତ୍ତ୍ୱ ଉପରେ ସେ ଅନେକ ଭାଷଣ ଦେଇ ଓଡ଼ିଶାରେ ଏବଂ ଓଡ଼ିଶା ବାହାରେ ମଧ୍ୟ ସୁନାମ ଅର୍ଜନ କରିଛନ୍ତି ।

## Fresh light on Some Slokas of Kalidasa :

ମହାକବି କାଳିଦାସ ହେଉଛନ୍ତି ବିଶ୍ୱବିଖ୍ୟାତ କବି । ଗତ ପ୍ରାୟ ପନ୍ଦରଶହ ବର୍ଷ ମଧ୍ୟରେ ଭାରତର ବିଭିନ୍ନ ଅଞ୍ଚଳର ବହୁ ପ୍ରବୀଣ ପଣ୍ଡିତ କାଳିଦାସଙ୍କର କାବ୍ୟମାନଙ୍କ ଉପରେ ଟୀକା ଲେଖିଅଛନ୍ତି । ଅଧ୍ୟାପକ ବ୍ରହ୍ମାଙ୍କ କହିବା ଅନୁସାରେ, ତାଙ୍କ ପିତା ତାଙ୍କର ପ୍ରାୟ ପାଞ୍ଚବର୍ଷ ବୟସରୁ ତାଙ୍କୁ କାଳିଦାସଙ୍କୁ କୁମାରସମ୍ଭବ କାବ୍ୟ ଏବଂ ଋତୁସଂହାରର ଶ୍ଳୋକଗୁଡ଼ିକୁ ମୁଖସ୍ଥ କରାଇଥିଲେ । ତାଙ୍କର ବୟସ ୧୦/୧୨ ହେଲାବେଳକୁ ସେ ଶ୍ଳୋକମାନଙ୍କର ପଦାନ୍ୱୟ ଏବଂ ଅର୍ଥ ତାଙ୍କୁ ବୁଝାଇବାକୁ ଆରମ୍ଭ କରିଥିଲେ । ଅଧ୍ୟାପକ ବ୍ରହ୍ମା କହନ୍ତି ଯେ; ସେ ଯେତେବେଳେ କଲେଜରେ ଓଡ଼ିଆ ପଢ଼ାଇଲେ, ସେତେବେଳେ ପିଲାଦିନରୁ ମୁଖସ୍ଥ କରିଥିବା

ଶ୍ଳୋକଗୁଡ଼ିକ ତାଙ୍କର ଓଡ଼ିଆ ଅଧ୍ୟାପନା କ୍ଷେତ୍ରରେ ବିଶେଷ ସହାୟକ ହୋଇଥିଲା । ତା'ପରେ ସାରାଜୀବନ ସେ ସେହି ଶ୍ଳୋକଗୁଡ଼ିକ ତାଙ୍କର ଭାଷଣମାନଙ୍କର ଜନପ୍ରିୟତା ବଢ଼ାଇବା ଦିଗରେ ମଧ୍ୟ ବିଶେଷ ସହାୟକ ହୋଇଥିଲା ।

ଏପରି ହେଉ ହେଉ ସମୟ ଆସିଲା, ଯେତେବେଳେ କାଳିଦାସଙ୍କର କେତେକ ଶ୍ଳୋକ ତାଙ୍କୁ ନୂତନ ଭାବରେ ପ୍ରତିଭାତ ହେଲା । ନୂତନ ଅର୍ଥର ଚମତ୍କାରିତା ନିଜେ ଉପଭୋଗ କରି ସେ ଭାବବିହ୍ୱଳ ହୋଇଗଲେ । କେତେକ ସଂସ୍କୃତ ପଣ୍ଡିତଙ୍କୁ ସେ ନିଜ ମନକୁ ଆସୁଥିବା ନୂତନ ଭାବଗୁଡ଼ିକ ଯେତେବେଳେ ବୁଝାଇଲେ, ସେମାନେ ମଧ୍ୟ ଅତିଶୟ ଆନନ୍ଦ ଅନୁଭବ କଲେ । ଗଞ୍ଜାମର କେତେଜଣ ବୟସ୍କ ସାହିତ୍ୟିକ କହିଲେ- ''ଆପଣଙ୍କ ପିତା କୁଲାଡ଼ର ବାଗ୍‌ଦେବୀ ମନ୍ଦିରରେ ଆପଣଙ୍କ ପାଇଁ ବହୁଲକ୍ଷ ଗାୟତ୍ରୀମନ୍ତ୍ର ଜପ କରିଥିଲେ ଏବଂ ଦେବୀଙ୍କ କୃପା ବଳରେ ବର୍ତ୍ତମାନ ଏଭଳି ଅର୍ଥ ଆପଣଙ୍କ ମନକୁ ଆସଅଛି । ଅନେକ ଶ୍ଳୋକର ନୂତନ ବ୍ୟାଖ୍ୟାନ ଦିନେ ସାରା ବିଶ୍ୱରେ ଚମକ ସୃଷ୍ଟି କରିପାରେ ।''

ଏହି ପୁସ୍ତକଟି ଅଧ୍ୟାପକ ବ୍ରହ୍ମା ଭାରତର ଅନେକ ପଣ୍ଡିତଙ୍କ ପାଖକୁ ପଠାଇଛନ୍ତି । ସବୁଠାରୁ ଉଚ୍ଚପ୍ରଶଂସାମୂଳକ ପତ୍ର ଆସିଛି । କିନ୍ତୁ ଅଧ୍ୟାପକ ବ୍ରହ୍ମା କହନ୍ତି- ''ମୋ ଜନ୍ମଭୂମି ଓଡ଼ିଶାରେ ଏଥିପାଇଁ ଉଚିତ ପ୍ରଶଂସା ସମ୍ଭବ ନୁହେଁ, କାରଣ ଗୁଣଗ୍ରାହକତା ଏ ମାଟିରେ ଅତି ଦୁର୍ବଳ । ତା'ଛଡ଼ା ଏଠାରେ ପୁସ୍ତକ ପଢ଼ିବାର ପରମ୍ପରା ଅତ୍ୟନ୍ତ କ୍ଷୀଣ ।''

## ଶ୍ରୀମଦ୍ ଭଗବଦ୍ ଗୀତା ଉପରେ ଭାଷ୍ୟ ପ୍ରଣୟନ :

ପ୍ରାୟ ଦୁଇବର୍ଷ ତଳେ ନୂଆଦିଲ୍ଲୀ-୩ ର ତ୍ୟାଗରାଜ ମାର୍ଗ ପାର୍ଶ୍ୱରେ ଯେଉଁ ଜଗନ୍ନାଥ ମନ୍ଦିର ନିର୍ମିତ ହୋଇଥିଲା, ସେଠାରେ ମନ୍ଦିର ପ୍ରତିଷ୍ଠା ଉତ୍ସବରେ ଅଧ୍ୟାପକ ବ୍ରହ୍ମା ଚାରିଦିନ କାଳ ଦୀର୍ଘ ଭାଷଣ ଦେଇ ଫେରିବା ପରେ କଟକର କେତେଜଣ ପୁସ୍ତକ ପ୍ରକାଶକ ତାଙ୍କୁ କହିଲେ- ''ଆପଣ ଶ୍ରୀମଦ୍ ଭଗବଦ୍ ଗୀତା ଉପରେ ଗୋଟିଏ ନୂଆ ଧରଣର ଟୀକା ଏବଂ ବହୁମୁଖୀ ଭୂମିକା ଲେଖି ଆମକୁ ମାସକ ଭିତରେ ପାଣ୍ଡୁଲିପି ଦେବାପାଇଁ ଚେଷ୍ଟା କରନ୍ତୁ ।'' ଏହାକୁ ଜଗନ୍ନାଥ ମହାପ୍ରଭୁଙ୍କର ଆଦେଶ ବୋଲି ଭାବି ଅଧ୍ୟାପକ ବ୍ରହ୍ମା ସଙ୍ଗେ ସଙ୍ଗେ କାର୍ଯ୍ୟ ଆରମ୍ଭ କଲେ । ଦିନରାତି କଠୋର ପରିଶ୍ରମ କରି dictation ଆରମ୍ଭ କରିଦେଲେ । ଦୈନିକ ଅକ୍ଳାନ୍ତ ପରିଶ୍ରମ କରି ପ୍ରାୟ ତିନି ସପ୍ତାହରେ ସେ ଦୁଇହଜାରରୁ ଅଧିକ ପୃଷ୍ଠା ଲେଖିଦେଲେ । ୮୦୦ ପୃଷ୍ଠାରେ ଏ ପୁସ୍ତକଟି ଅକ୍ଳେଶରେ ପ୍ରକାଶ ପାଇଗଲା । ପ୍ରାୟ ଦୁଇଶହ ପୃଷ୍ଠାର ମୁଖବନ୍ଧରେ ଅଧ୍ୟାପକ ବ୍ରହ୍ମା ଅନେକ କଥା ଲେଖିଛନ୍ତି,

ଯାହାକି ଆଜି ଉଚ୍ଚଶିକ୍ଷିତମାନଙ୍କ ପକ୍ଷରେ ମଧ କେତେକ ପରିମାଣରେ ନୂଆ ଭଳି ଜଣାଯିବ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ନିଜେ ଲେଖିଥିବା ସୁଦୀର୍ଘ ମୁଖବନ୍ଧକୁ ସେ ଏବେ ଇଂରାଜୀରେ ଅନୁବାଦ କରୁଛନ୍ତି ।

### ସଂସ୍କୃତ ଭାଷାରେ କବି :

ଅଧ୍ୟାପକ ବ୍ରହ୍ମା ଛଅଷଠି ବର୍ଷ ବୟସ ପର୍ଯ୍ୟନ୍ତ ଅର୍ଥାତ୍ ୧୯୮୫ ପର୍ଯ୍ୟନ୍ତ ବେଳେବେଳେ ଗୋଟିଏ ଦୁଇଟି ସଂସ୍କୃତ ଶ୍ଳୋକ ବା ସଙ୍ଗୀତମୟ ପଦ ତାଙ୍କର ଚିତ୍ତବିନୋଦନ ପାଇଁ ଲେଖିଥିଲେ । କିନ୍ତୁ ୧୯୮୬ରେ ହଠାତ୍ ଦିନେ ରାତି ନଅଟା ବେଳେ ପୁରୀ ସମୁଦ୍ରକୂଳରେ ବସି ପଠାଣିସାମନ୍ତଙ୍କ ସଂସ୍କୃତ ଶ୍ଳୋକରେ ଜଗନ୍ନାଥଙ୍କୁ ବନ୍ଦନା କରୁଥିଲାବେଳେ, ସେଦିନର ଆଉ ଏକ ଘଟଣାକୁ ଭିତ୍ତି କରି ନିଜେ କିପରି ସଂସ୍କୃତରେ ମଧ ଲେଖିପାରିବେ, ସେକଥା ମନଭିତରେ ଜଗନ୍ନାଥଙ୍କୁ ଜଣାଉଥିଲେ ।

### ସଂସ୍କୃତ କବିତ୍ୱ- ସଂସ୍କୃତରେ ବହୁ ବିଷୟ ଉପରେ ରଚନା :

ସେଦିନ ରାତିରେ ଏକ ଅଦ୍ଭୁତ ଘଟଣା ଘଟିଗଲା । ସେହି ରାତି ୧୨ଟା ପରେ ଜଗନ୍ନାଥଙ୍କ କୃପାବଳରେ ବ୍ରହ୍ମାଙ୍କର ସଂସ୍କୃତ କବିତ୍ୱ ହଠାତ୍ ବିକଶିତ ହେଲା । ଇଚ୍ଛା କଲାମାତ୍ରେ ୧୦/୧୫ ଶ୍ଳୋକ, ଭ୍ରମହୀନ ସଂସ୍କୃତ ଛନ୍ଦରେ ସେ ଲେଖିବସିଲେ । ଏପରି ହେଲା ଯେ; ଥରେ କଟକ Town Hall ରେ କର୍ମଯୋଗୀ ଗୌରୀଶଙ୍କର ସ୍ମୃତିସଭା ଚାଲିଥାଏ । ତାହାର ଜଣେ ମୁଖ୍ୟ ଉଦ୍‌ଯୋକ୍ତା ସାମ୍ବାଦିକ ଶ୍ରୀ ପ୍ରବୀର ସରକାର ବ୍ରହ୍ମାଙ୍କୁ କହିଲେ- ''ଏଣେ ତ ସଭା ଚାଲିଛି, ୨/୩ ଜଣ ବକ୍ତା ଅଛନ୍ତି । ଆପଣଙ୍କ ପାଳି ପଡୁ ପଡୁ ପ୍ରାୟ ଦେଢ଼ଘଣ୍ଟା ଚାଲିଯିବ । ଯା'ରି ଭିତରେ ଆପଣ ଏହି ମଞ୍ଚ ଉପରେ ବସି ଗୌରୀଶଙ୍କର ଉପରେ ଗୋଟିଏ ସଂସ୍କୃତ କବିତା ଲେଖିଦେଇ ପାରିବେ କି ?'' ବ୍ରହ୍ମା ହଁ କଲେ ଏବଂ ପ୍ରାୟ ଦେଢ଼ଘଣ୍ଟା ପରେ ଭାଷଣ ଦେବାପାଇଁ ତାଙ୍କୁ ଅନୁରୋଧ କରାଯିବା ବେଳକୁ ତାଙ୍କର ସଂସ୍କୃତ କବିତା ଶେଷ ହୋଇଯାଇଥିଲା । ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହେଲେ । ପ୍ରବୀରବାବୁ ବ୍ରହ୍ମାଙ୍କ ଲେଖାଟି ନେଇଯାଇ ଏକ ପୁସ୍ତିକା ଆକାରରେ ଛାପିଦେଲେ । ତା'ର ନାମ ରଖିଛନ୍ତି ''ଗୌରୀଶଙ୍କର ଗୌରବମ୍'' ।

ଆଉଦିନେ ଠାଏ ରାବଣକୃତ ଶିବତାଣ୍ଡବ ସ୍ତୋତ୍ର ପଢ଼ାଯାଉଥିଲା । କିଏ ଜଣେ କହିଲା- ''ଜଗନ୍ନାଥଙ୍କ ଉପରେ ଏଭଳି ତାଣ୍ଡବ ସ୍ତୋତ୍ରଟିଏ ଲେଖାଗଲେ ଭଲ ହୁଅନ୍ତା ନାହିଁ କି ?'' ତା'ପରେ କିଏ କ'ଣ କହିଲା ଓ କଥାଟି ସେତିକିରେ ବନ୍ଦ ହେଲା । ଶେଷରେ ଜଣେ କହିଲା- ''ସମସ୍ତେ ଏଭଳି ରଚନା ଲେଖିପାରିବେ

ନାହିଁ। ଯେଉଁ ଲୋକ ଲେଖିପାରିବ, ସେଭଳି ଲୋକ ଭାରତରେ ଜନ୍ମ ହୋଇ ନାହିଁ।'' ତା'ପରେ ଆଉଦିନେ ଅନ୍ୟ ପ୍ରସଙ୍ଗରେ ଠିକ୍ ସେଇକଥା ଉଠିଲା। ବ୍ରହ୍ମା ଯେତେ ଚେଷ୍ଟା କଲେ ମଧ ଧାଡ଼ିଏ ଲେଖିପାରିଲେ ନାହିଁ। ଜଗନ୍ନାଥଙ୍କୁ ଚିନ୍ତା କରୁଥାଆନ୍ତି। ଦୁଇଦିନ ପରେ ହଠାତ୍ ଲେଖିବାକୁ ପ୍ରବୃତ୍ତି ଜାତ ହେଲା ଏବଂ ଅକ୍ଳେଶରେ ''ଜଗନ୍ନାଥ ତାଣ୍ଡବ ସ୍ତୋତ୍ରମ୍'' ବ୍ରହ୍ମା ଲେଖିଦେଲେ। ନିଜେ ଜଗନ୍ନାଥଙ୍କ କୃପା ଅନୁଭବ କରି, ବନ୍ଧୁମାନଙ୍କ ଆଗରେ ବ୍ରହ୍ମା ଆଖିରୁ ଲୁହ ଗଡ଼ାଇଦେଲେ।

ଏପରି ଭାବରେ କେତେଗୋଟି କବିତାରେ ଲେଖିବା ପରେ କଟକ ଭଞ୍ଜଜୟନ୍ତୀର ସମୟ ଆସିଗଲା। ଅନ୍ୟମାନଙ୍କର ଅନୁରୋଧକ୍ରମେ ଭଞ୍ଜଙ୍କ ଜୀବନୀ ଓ ସାହିତ୍ୟ ସର୍ଜନା ଉପରେ ବ୍ରହ୍ମା ୫୦ଗୋଟି ସରଳ-ତରଳ ଶ୍ଳୋକ ଲେଖିଦେଲେ। ନାମ ହେଲା ''ଭଞ୍ଜ ପଣ୍ଚଶିଳା''। ଏହା କାଳକାଳକୁ ବ୍ରହ୍ମାଙ୍କର ଏକ ପ୍ରଶଂସନୀୟ କାବ୍ୟ ହୋଇ ରହିବ। ଏପରି ପ୍ରାୟ ୨୦/୨୫ଟି କବିତା ସେ ଲେଖିସାରିଲେଣି।

ଅଧାପକ ବ୍ରହ୍ମା ଅନ୍ୟ କିଛି ନଲେଖି ଏବଂ ସାରାଜୀବନ ପରିଶ୍ରମ କରି କରି ଯଦି କେବଳ ଏଇ ୨୦/୨୫ ଖଣ୍ଡ ସଂସ୍କୃତ କବିତା ଲେଖିଯାଇଥା'ନ୍ତେ, ତେବେ ମଧ ଓଡ଼ିଶାର ଅନେକ ଗୁଣଗ୍ରାହୀ ପାଠକ ବହୁ କାଳ ଧରି ତାଙ୍କର ଗୁଣଗାନ କରୁଥାଆନ୍ତେ। ଗୋପବନ୍ଧୁ, ଡଃ ମହତାବ, ଲିଙ୍ଗରାଜ ମନ୍ଦିର, ଜଗନ୍ନାଥ ଧାମ ଓ ଧର୍ମ (ଜଗନ୍ନାଥ ଶତକଦ୍ୱୟମ୍- ଜଗନ୍ନାଥଙ୍କ ଉପରେ ଦୁଇଶତ ଶ୍ଳୋକ) ପ୍ରଭୃତିରେ ତାଙ୍କର ଚିନ୍ତାର ପରିସର ବିଶାଳ ଉପରେ ବିସ୍ତାରିତ ହୋଇ ରହିଛି। ସଂସ୍କୃତ ଏବଂ ଇଂରାଜୀରେ ବ୍ରହ୍ମାଙ୍କର ଏହି ସମସ୍ତ ପୁସ୍ତକ ଗୌରବ-ମଣ୍ଡିତ ହୋଇ ଉଭୟ ଭାଷାରେ ତାଙ୍କର ଦକ୍ଷତା ପ୍ରମାଣିତ କରୁଅଛି।

## ପର୍ଯ୍ୟଟନ ସାହିତ୍ୟ :

ସରକାରୀ ଚାକିରିରୁ ଅଧାପକ ବ୍ରହ୍ମା ୧୯୭୮ ମାର୍ଚ୍ଚ ପହିଲାରେ ଅବସର ଗ୍ରହଣ କରିବା ପରେ ଉତ୍କଳ ବିଶ୍ୱବିଦ୍ୟାଳୟ ସହିତ ସହବନ୍ଧନ (affiliation) ଯୁକ୍ତ Regional College of Management ର P.G. ବିଭାଗରେ (Tourism) H.O.D. ଭାବରେ ନିଯୁକ୍ତ ହୋଇଥିଲେ। ପର୍ଯ୍ୟଟନ ବିଭାଗର ମୁଖ୍ୟ ଅଧାପକ ଓ ପ୍ରଫେସର ରୂପେ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ୱୀକୃତି ଲାଭକରିବା ଦ୍ୱାରା ସାଧାରଣ ଲୋକଙ୍କ ଦୃଷ୍ଟିରେ ଗୋଟିଏ ଶିକ୍ଷାଗତ ସମ୍ମାନ ଲାଭକରି ପାରିଥିଲେ।

ଏ ସ୍ଥଳରେ କହିବାର କଥା, ପର୍ଯ୍ୟଟନ ଉପରେ, ବିଶେଷକରି ଓଡ଼ିଶାର ପର୍ଯ୍ୟଟନ ଉପରେ, ଅଧାପକ ବ୍ରହ୍ମା ଇଂରାଜୀରେ ଓ ଓଡ଼ିଆରେ ନିଜର ବହୁ ସଂଖ୍ୟକ ପ୍ରବନ୍ଧ ପ୍ରକାଶ କରିଛନ୍ତି। କିନ୍ତୁ ସବୁଠାରୁ ବଡ଼କଥା ହେଉଛି, ପର୍ଯ୍ୟଟନ

ଉପରେ ସେ ସଂସ୍କୃତରେ ଦୁଇଟି ଖଣ୍ଡକାବ୍ୟ ଲେଖିଛନ୍ତି ଏବଂ ପ୍ରତ୍ୟେକ ଶ୍ଳୋକର ଅର୍ଥ ଇଂରାଜୀ ଭାଷାରେ ବୁଝାଇ ଦେଇଅଛନ୍ତି । ଦୁଇଟି ଖଣ୍ଡକାବ୍ୟ ହେଉଛି-

୧ । ଆନ୍ଧ୍ରପ୍ରଦେଶ ପର୍ଯ୍ୟଟନମ୍

୨ । ଓଡ଼ିଶା ପର୍ଯ୍ୟଟନ ଶତକମ୍ ।

ଭାରତର ଅନେକ ବିଶିଷ୍ଟ ବ୍ୟକ୍ତି, ଯଥା- କାଶ୍ମୀରର ଭୂତପୂର୍ବ ମହାରାଜା କର୍ଣ୍ଣ ସିଂହ (ଯେ ଥିଲେ ଭାରତର ଭୂତମନ୍ତ୍ରୀ ଓ ଭାରତର ସୁବିଖ୍ୟାତ ସଂସ୍କୃତ ବିଦ୍ୱାନ୍)ଙ୍କ ସମେତ କଲିକତାରୁ ପ୍ରକାଶ ପାଉଥିବା 'ସତ୍ୟାନନ୍ଦମ୍' ନାମକ ସଂସ୍କୃତ ପତ୍ରିକା ଏବଂ କୁରୁକ୍ଷେତ୍ରରୁ ପ୍ରକାଶ ପାଉଥିବା ଅନ୍ୟ ଏକ ସଂସ୍କୃତ ପତ୍ରିକାରେ ଅଧ୍ୟାପକ ବ୍ରହ୍ମାଙ୍କର ଏହି ଅଭିନବ କବିତ୍ୱ କୌଶଳର ଉଚ୍ଚପ୍ରଶଂସା କରିଛନ୍ତି । କହିବାକୁ ଗଲେ. ଯଥାସମ୍ଭବ, ଭାରତର ବିଭିନ୍ନ ପର୍ଯ୍ୟଟନ ପୀଠମାନଙ୍କୁ ସଂସ୍କୃତ ସାହିତ୍ୟର ରତ୍ନ ସିଂହାସନ ଉପରେ ବସାଇବା ସଙ୍ଗେ ସଙ୍ଗେ ବିଶ୍ୱସ୍ତରରେ ପର୍ଯ୍ୟଟନ ପୀଠଗୁଡ଼ିକର ଜନପ୍ରିୟତା ବଢ଼ାଇବା ପାଇଁ ଲେଖକଙ୍କର ନିଜକୃତ ଇଂରାଜୀ ଅନୁବାଦ ଅଧ୍ୟାପକ ବ୍ରହ୍ମାଙ୍କୁ ହୁଏତ ଭବିଷ୍ୟତରେ ସଂସ୍କୃତ ସାହିତ୍ୟରେ ଏକ ନୂତନ ଧାରାର ପ୍ରବର୍ତ୍ତକ ଭାବରେ କନକ କିରୀଟ ପିନ୍ଧାଇଦେବ। 'ଦୂତ ସାହିତ୍ୟ'ର ପ୍ରବର୍ତ୍ତକ ରୂପେ ଯେପରି କାଳିଦାସଙ୍କର 'ମେଘଦୂତ' ଏବଂ ପ୍ରକୃତିର ସୌନ୍ଦର୍ଯ୍ୟ ବର୍ଣ୍ଣନା ପ୍ରସଙ୍ଗରେ ଯେପରି ରାଧାନାଥଙ୍କର 'ଚିଲିକା' କାବ୍ୟ, ସେହିପରି ଦିନେ ଅଧ୍ୟାପକ ବ୍ରହ୍ମାଙ୍କର ପର୍ଯ୍ୟଟନ-ଚରିତ-ଭିତ୍ତିକ ଏହି ଦୁଇଟି ଖଣ୍ଡକାବ୍ୟ ଦିନେ ତାଙ୍କୁ ଅଶେଷ ସମ୍ମାନରେ ମଣ୍ଡିତ କରିଦେବ ।

## ଜଗନ୍ନାଥ ଧର୍ମର ମହିମା ପ୍ରଚାରକ :

୧୯୦୫ରେ ପୁରୀକୁ ଆସିଥିବା ଭାରତର ଶତାଧିକ ପ୍ରଖ୍ୟାତ ପଣ୍ଡିତ ଜଗନ୍ନାଥ ମନ୍ଦିରର 'ମହାପ୍ରସାଦ' ବିରୁଦ୍ଧରେ କଟୁ ମନ୍ତବ୍ୟ ପ୍ରକାଶ କରିବାରୁ, ପୁରୀର ପଣ୍ଡିତମାନେ ସେମାନଙ୍କ ସହିତ ତର୍କଯୁଦ୍ଧ କରିବାପାଇଁ ତରୁଣ ପଣ୍ଡିତ ଚନ୍ଦ୍ରଶେଖର ବ୍ରହ୍ମାଙ୍କୁ ଠିଆ କରାଇଥିଲେ । ପ୍ରାୟ ପାଞ୍ଚଦିନଧରି ତର୍କଯୁଦ୍ଧ ଚାଲିବାପରେ ପଣ୍ଡିତ ବ୍ରହ୍ମା ସେ ସମସ୍ତଙ୍କୁ ହରାଇଦେଇଥିଲେ ଏବଂ ଗଜପତି ମହାରାଜା ତଥା ଜଗନ୍ନାଥ ମନ୍ଦିର ପକ୍ଷରୁ ସେ ସମ୍ମାନିତ ହୋଇଥିଲେ । ତାଙ୍କର ପୁତ୍ର ଅଧ୍ୟାପକ ବ୍ରହ୍ମା ୧୯୪୦ରୁ ଜଗନ୍ନାଥ ଧର୍ମ ଉପରେ ଗବେଷଣା କରୁଛନ୍ତି ଏବଂ ପ୍ରଚାର କରୁଛନ୍ତି । ତା' ଉପରେ ଇଂରାଜୀ ଏବଂ ଓଡ଼ିଆରେ ସେ ବହୁ ପୁସ୍ତକ ଏବଂ ପ୍ରବନ୍ଧ ପ୍ରକାଶ କରିଛନ୍ତି । ଜଗନ୍ନାଥ ଧାମ ଓ ଧର୍ମ ଉପରେ ସେ ସଂସ୍କୃତରେ ଦୁଇଶହ ଶ୍ଳୋକ ନିଜେ ରଚନା କରି ପ୍ରତ୍ୟେକ ଶ୍ଳୋକର ନିଜକୃତ

ଇଂରାଜୀ ଅନୁବାଦ ସହିତ ଏବେ ପ୍ରକାଶ କରୁଅଛନ୍ତି । ଏହାଛଡ଼ା 'ଶ୍ରୀଜଗନ୍ନାଥ ମହିମା' ନାମକ ପୁସ୍ତକ (ଏବେ ଯନ୍ତ୍ରସ୍ଥ)ରେ ବହୁ ନୂତନ ତଥ୍ୟର ଆଲୋଚନା ସମାବେଶିତ ହୋଇଛି ଏବଂ ଚାରିଆଡ଼େ ସେ ଜଗନ୍ନାଥ ଧର୍ମ ଉପରେ ବକ୍ତୃତା ଦେଉଛନ୍ତି । ଏହାପରେ 'ମହିମାମୟ ଜଗନ୍ନାଥ' ନାମକ ଆଉ ଏକ ବିଶାଳ ଗ୍ରନ୍ଥ ପ୍ରକାଶ କରିବାକୁ ଉତ୍କଳ ବିଶ୍ୱବିଦ୍ୟାଳୟର ସାହାଯ୍ୟ ଲୋଡ଼ିଛନ୍ତି । ଏହାଛଡ଼ା 'ଜଗନ୍ନାଥ ଜ୍ଞାନକୋଷ' ନାମକ ଅନ୍ୟ ଏକ ଗ୍ରନ୍ଥ ରଚନାରେ ମଧ୍ୟ ସେ ଆତ୍ମନିବେଶ କରିଅଛନ୍ତି ।

## ବିଭିନ୍ନ ଭାଷାରୁ ବ୍ରହ୍ମାଙ୍କର ଓଡ଼ିଆରେ ଅନୁବାଦ :

ଅନୁବାଦ କଳାରେ ମଧ୍ୟ ଲେଖକର ବ୍ୟକ୍ତିତ୍ୱ ଗଭୀର ଭାବରେ ଫୁଟି ଉଠିଥାଏ । ଅଧ୍ୟାପକ ବ୍ରହ୍ମା କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପକ୍ଷରୁ ନିଯୁକ୍ତ ହୋଇ-

(୧) ଧର୍ମାନନ୍ଦ କୋସମ୍ବୀଙ୍କର ହିନ୍ଦୀ ଭାଷାରେ ଲିଖିତ 'ଭଗବାନ୍ ବୁଦ୍ଧ' ନାମକ ଗ୍ରନ୍ଥ ଅନୁବାଦ କରିଥିଲେ ।

(୨) ରବୀନ୍ଦ୍ରନାଥ ଠାକୁରଙ୍କର ଅନେକ ପ୍ରବନ୍ଧ ବଙ୍ଗଳାରୁ ଏବଂ ଇଂରାଜୀରୁ ଅନୁବାଦ କରି କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପକ୍ଷରୁ ପ୍ରକାଶ କରାଇଥିଲେ । 'ନିବନ୍ଧମାଳା' ନାମରେ ଏହି ଅନୁବାଦ ୧୯୭୨ରେ ପ୍ରକାଶ ପାଇଥିଲା ।

(୩) ଜଣେ ଗୁଜୁରାଟୀ ଗାନ୍ଧିଭକ୍ତଙ୍କ ଅନୁରୋଧରେ 'ବାପୁଙ୍କ ଆଶୀର୍ବାଦ' ପୁସ୍ତକ ହିନ୍ଦୀରୁ ଓଡ଼ିଆକୁ ଅନୁବାଦ କରିଥିଲେ (୧୯୬୪) ।

(୪) ସେ ବହୁ ସଂଖ୍ୟକ ସଂସ୍କୃତ ଶ୍ଳୋକର ଓଡ଼ିଆ ଅନୁବାଦ କରିଯାଇଛନ୍ତି ।

(୫) ଶ୍ରୀମଦ୍‌ଭଗବଦ୍ ଗୀତାର ସାତଶହ ଶ୍ଳୋକର ଓଡ଼ିଆ ଅନୁବାଦ ବିଷୟ ପୂର୍ବରୁ ଉଲ୍ଲିଖିତ ହୋଇଛି ।

(୬) ସଂସ୍କୃତ ଚୌରପଞ୍ଚାଶିକାର ଓଡ଼ିଆ ଅନୁବାଦ ମଧ୍ୟ ସେ କରିଯାଇଛନ୍ତି ।

## ଓଡ଼ିଆ ଛନ୍ଦର ଗବେଷକ ଅଧ୍ୟାପକ ବ୍ରହ୍ମା :

ଓଡ଼ିଆ ସାହିତ୍ୟ ଯୁଗ ଯୁଗ ଧରି ପଦ୍ୟପ୍ରଧାନ ଥିଲା । ଗତ ପ୍ରାୟ ଶତାଧିକ ବର୍ଷ ମଧ୍ୟରେ ଗଦ୍ୟ ସାହିତ୍ୟର କଳେବର ବୃଦ୍ଧି ହୋଇଥିଲେ ମଧ୍ୟ ଶତାଧିକ ଲେଖକ ପଦ୍ୟସର୍ଜନା ପାଇଁ ଉଦ୍ୟମଶୀଳ ହୋଇଅଛନ୍ତି । ତେବେ ଆଧୁନିକ ଯୁଗ

ଅପେକ୍ଷା ପୂର୍ବବର୍ତ୍ତୀ ଲେଖକମାନେ ଶତାଧିକ ଛନ୍ଦରେ, ବୃତ୍ତରେ ବା ରାଗ-ରାଗିଣୀର ଉତ୍କଳଭାରତୀଙ୍କର ସୌନ୍ଦର୍ଯ୍ୟ ବର୍ଦ୍ଧନ କରିଛନ୍ତି ।

ଛନ୍ଦମାନଙ୍କର ତାତ୍ତ୍ୱିକ ଆଲୋଚନା କିନ୍ତୁ ବଡ଼ କଷ୍ଟସାଧ । ପାରଳାର ସ୍ୱର୍ଗତ ଶ୍ୟାମସୁନ୍ଦର ରାଜଗୁରୁ, କଳାହାଣ୍ଡିର ବଳଭଦ୍ର ବହିଦାର ଏବଂ ବାମଣ୍ଡାରାଜା ସୁଡ଼ଳଦେବ ତଥା ଭାଷାକୋଷର ସଂଗ୍ରାହକ ଗୋପାଳ ଚନ୍ଦ୍ର ପ୍ରହରାଜ ତଥା ପଣ୍ଡିତ ବିନାୟକ ମିଶ୍ରଙ୍କ ପରି ଅଳ୍ପ କେତେଜଣ ଗବେଷକ ଏ କ୍ଷେତ୍ରରେ ନିଜ ନିଜର ପ୍ରତିଭା ଦେଖାଇଯାଇଛନ୍ତି । ଛନ୍ଦମାନଙ୍କର କ୍ରମବିକାଶ ଓ ତାତ୍ତ୍ୱିକ ଚର୍ଚ୍ଚା ଦୃଷ୍ଟିରୁ ଅଧ୍ୟାପକ ବ୍ରହ୍ମା ଜଣେ ସ୍ମରଣୀୟ ସାଧକ । ତାଙ୍କର 'ଓଡ଼ିଆ ଛନ୍ଦର କ୍ରମବିକାଶ' ଭଳି ଗ୍ରନ୍ଥ ଏକ ପାଣ୍ଡିତ୍ୟପୂର୍ଣ୍ଣ କୃତି । ଶ୍ରୀଯୁକ୍ତ ବ୍ରହ୍ମା ଏବେ ବହୁଶତ ପୃଷ୍ଠା ବ୍ୟାପୀ 'ଓଡ଼ିଆରେ ଛନ୍ଦ' ପୁସ୍ତକର ପ୍ରଣୟନ ଶେଷ କରିଛନ୍ତି । ଏହି ଗ୍ରନ୍ଥ ମଧ୍ୟ ତାଙ୍କର ସାର୍ବିକ ସାଧନାର ଆଉ ଏକ ମହନୀୟ ଅବଦାନର ଦ୍ୟୋତକ ହେବ ।

## ପୁସ୍ତକ ସମ୍ପାଦନା ( Editing of Books) କ୍ଷେତ୍ରରେ ଅଧ୍ୟାପକ ବ୍ରହ୍ମାଙ୍କର ସାଧନା ଓ ସିଦ୍ଧି :

ଅଧ୍ୟାପକ ବ୍ରହ୍ମା କେବଳ ଜଣେ ବିଜ୍ଞ, ବରେଣ୍ୟ ଓ ବରିଷ୍ଠ ସମାଲୋଚକ ନୁହନ୍ତି, ସେ ହେଉଛନ୍ତି, (ଆଧୁନିକ ସାରସ୍ୱତ ରୁଚି ଅନୁସାରେ) ବିଶିଷ୍ଟ କବି ଓ ଲେଖକମାନଙ୍କ ଗ୍ରନ୍ଥରାଜିର ସମ୍ପାଦକ । ଗ୍ରନ୍ଥ ସମ୍ପାଦନା ଏକ ଶ୍ରମସାଧ ଓ ବୁଦ୍ଧି-ବିଳାସମୂଳକ ସାରସ୍ୱତ-କୃତି । ଅଧ୍ୟାପକ ବ୍ରହ୍ମାଙ୍କର କେତୋଟି ସମ୍ପାଦିତ ଗ୍ରନ୍ଥ/ଗ୍ରନ୍ଥାବଳୀ ହେଉଛି-

୧ । ଅଭିମନ୍ୟୁ ସାମନ୍ତ ସିଂହାର ଗ୍ରନ୍ଥାବଳୀ (ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗ)

୨ । ଅନଙ୍ଗରେଖା (ଧନଞ୍ଜୟ ଭଞ୍ଜ)- ଓଡ଼ିଶା ସାହିତ୍ୟ ଏକାଡ଼େମୀ

୩ । ସଂସ୍କୃତ କାବ୍ୟ- ମେଘଦୂତ- (କାଳିଦାସ)- ବ୍ରହ୍ମ ପ୍ରକାଶିକା ଟୀକା ସହିତ

୪ । ସଂସ୍କୃତ-ନାଟ୍ୟକଳା ଗ୍ରନ୍ଥ- ନାଟ୍ୟ ମନୋରମା

୫ । ସଂସ୍କୃତ-କାବ୍ୟ-ଦଶଗ୍ରୀବ ବଧ- ମହାକାବ୍ୟ (ମହାକବି ମାର୍କଣ୍ଡେୟ)

୬ । ଗୋଦାବରୀଶ ରଚନାବଳୀ (ସ୍ୱର୍ଗତ ଗୋଦାବରୀଶ ମହାପାତ୍ରଙ୍କ ସମସ୍ତ ରଚନା (ବହୁ ଖଣ୍ଡରେ)

୭ । ବ୍ରଜରାଜ ଗ୍ରନ୍ଥାବଳୀ- କଳାହାଣ୍ଡିର ମହାରାଜା ବ୍ରଜରାଜଙ୍କ ରଚନା ସମୂହ

୮ । ଇଚ୍ଛାବତୀ (ଧନଞ୍ଜୟ ଭଞ୍ଜ)- ଓଡ଼ିଶା ସାହିତ୍ୟ ଏକାଡ଼େମୀ

୯ । ବୈଦେହୀଶ ବିଳାସ (ଉପେନ୍ଦ୍ର ଭଞ୍ଜ)- ଓଡ଼ିଶା ସାଂସ୍କୃତିକ ବ୍ୟାପାର ବିଭାଗ

୧୦ । ସମର ତରଙ୍ଗ- ବ୍ରଜନାଥ ବଡ଼ଜେନା
୧୧ । ଶ୍ରୀମଦ୍ ଭଗବଦ୍ ଗୀତା (ବିଶାଳ ମୁଖବନ୍ଧ ସହିତ)
୧୨ । ବିଦଗ୍ଧ ଚିନ୍ତାମଣିର କେତେକ ଛାନ୍ଦ

## ସାହିତ୍ୟସୃଷ୍ଟିର ସାମୂହିକତା ବିଚାରରେ ବ୍ରହ୍ମାଙ୍କ ସ୍ଥାନ :

ପ୍ରାୟ ୧୫୦୦୦ ଦୀର୍ଘ ଭାଷଣ ଦେଇଥିବା ଅଧ୍ୟାପକ ବ୍ରହ୍ମା କାୟିକ, ବାଚିକ, ମାନସିକ ଓ ବୌଦ୍ଧିକ ବିଚାରରେ ସାମ୍ପ୍ରତିକ ଓଡ଼ିଶାର ଏକ ଅସାମାନ୍ୟ ସୃଷ୍ଟି । ତାଙ୍କ ପରି ବହୁ ଯୋଗ୍ୟତାସମ୍ପନ୍ନ ବ୍ୟକ୍ତି ଯଦି ଦିଲ୍ଲୀରେ ବା କୋଲ୍‌କାତାରେ ଥାଆନ୍ତେ, ଷମଗ୍ର ଭାରତର ଶୁଭଦୃଷ୍ଟି ତାଙ୍କ ଉପରେ ଅଜାଡ଼ି ହୋଇ ପଡୁଥାଆନ୍ତା । ବହୁ ଭାଷାରେ ଜ୍ଞାନ, ଭାରତୀୟ ଶାସ୍ତ୍ରମାନଙ୍କରେ ସୁଗଭୀର ପ୍ରବେଶ, ୪ ଭାଷାରେ ଲେଖିବାର ଶକ୍ତି, ଭାଷଣ ପ୍ରଦାନରେ ଅନୁପମ ଦକ୍ଷତା, ସଂସ୍କୃତ ରଚନାରେ ଅତୁଳନୀୟ କୃତିତ୍ୱ, ଓଡ଼ିଶାର ଗୌରବ ଗାନରେ ଓ ପ୍ରଚାରରେ ଅପ୍ରତିହତ ପ୍ରତିପତ୍ତି, ପର୍ଯ୍ୟଟନ କ୍ଷେତ୍ରରେ ଅପୂର୍ବ କୃତିତ୍ୱ ଏବଂ ଓଡ଼ିଶା ତଥା ଭାରତର ସାଂସ୍କୃତିକ-ସୌରଭ ପ୍ରସାର କରାଇବାରେ ସର୍ବଭାରତୀୟ ସ୍ୱୀକୃତି ବ୍ରହ୍ମାଙ୍କୁ ମହନୀୟ କରି ରଖିଛି । ତାଙ୍କର ଗୁଣାବଳୀର ପୂଜାପାଇଁ ଯଥାର୍ଥ ଗ୍ରାହକ ଦରକାର । ଦେଖାଯାଉ, ସେଭଳି ଦିନ ତାଙ୍କର ଭାଗ୍ୟ-ଭଣ୍ଡାରରେ ଅଛି କି ନାହିଁ ? ନୀତି ତ କହେ- ''ଭାଗ୍ୟଂ ଫଳତି ସର୍ବତ୍ର'' ।

## ଅଧ୍ୟାପକ ଗୌରୀ କୁମାର ବ୍ରହ୍ମାଙ୍କ ପୁସ୍ତକାବଳୀ

୧ । ପାଠ ପ୍ରଭାତ (ପିଲାଙ୍କ ପାଇଁ)
୨ । କୁମାର ସାହିତ୍ୟ (ପିଲାଙ୍କ ପାଇଁ)
୩ । ଚିଲିକା ବିଚାର
୪ । ଅଳଙ୍କାର ସାହିତ୍ୟର କ୍ରମବିକାଶ
୫ । ତପସ୍ୱିନୀ ଓ ମେହେର ସାହିତ୍ୟ (ସମୀକ୍ଷା)
୬ । କୁସୁମାଞ୍ଜଳି ଆଲୋଚନା (ସମୀକ୍ଷା)
୭ । ରସକଲ୍ଲୋଳ ସମୀକ୍ଷା (ସମୀକ୍ଷା)
୮ । ପ୍ରଣୟବଲ୍ଲରୀ ପ୍ରବେଶ (ସମୀକ୍ଷା)
୯ । ବଜାରବୋଲି (ଟୀକା ସହିତ ଭଞ୍ଜଙ୍କ ରମ୍ୟରଚନା)
୧୦ । ଭକ୍ତଚରଣ ଓ ମଥୁରାମଙ୍ଗଳ (ସମୀକ୍ଷା)
୧୧ । ଅଭିମନ୍ୟୁ ସାମନ୍ତସିଂହାର (ସମୀକ୍ଷା)
୧୨ । ଲେଖା ଓ ଲେଖକ (ପ୍ରବନ୍ଧ)

୧୩ । ବିଜ୍ଞାନ ଯୁଗରେ ଈଶ୍ୱର (ଦାର୍ଶନିକ ବିଚାର)
୧୪ । ବିଦଗ୍ଧ ଚିନ୍ତାମଣି (ଟୀକା)- ପ୍ରଥମ ଖଣ୍ଡ
୧୫ । ଭଞ୍ଜ ଜୀବନୀ (ସଂକ୍ଷିପ୍ତ)
୧୬ । ସମସ୍ୟା ଓ ସମାଧାନ (ଗଭୀର ପାଣ୍ଡିତ୍ୟମୂଳକ ପ୍ରବନ୍ଧମାଳା)
୧୭ । ସଂସ୍କୃତି ଓ ସାହିତ୍ୟ (ସାହିତ୍ୟିକ ପ୍ରବନ୍ଧମାଳା)
(କଲିକତା ବି:ବି:ରେ ବହୁବର୍ଷଧରି ପାଠ୍ୟ)
୧୮ । ଓଡ଼ିଆ ବ୍ୟାକରଣ (ଯୁଗ୍ମ ଲେଖକ)
୧୯ । ଭଗବାନ ବୁଦ୍ଧ (ହିନ୍ଦୀରୁ ଅନୁବାଦ)
୨୦ । ଓଡ଼ିଆ ସାହିତ୍ୟରେ ପ୍ରକୃତି (ଆଲୋଚନା)
୨୧ । ଦଶଗ୍ରୀବ ବଧ ମହାକାବ୍ୟମ୍ (ସଂସ୍କୃତ-ମହାକାବ୍ୟମ୍ ସମ୍ପାଦିତ)
୨୨ । ନାଟ୍ୟ ମନୋରମା (ସଂସ୍କୃତ ଗ୍ରନ୍ଥ)- ସମ୍ପାଦିତ
୨୩ । ଇଚ୍ଛାବତୀ (ଧନଞ୍ଜୟ ଭଞ୍ଜ)- ସମ୍ପାଦନା
୨୪ । ମେଘଦୂତମ୍ (ରଥଯାତ୍ରା ବର୍ଣ୍ଣନା ପ୍ରତିପାଦକ 'ବ୍ରହ୍ମ ପ୍ରକାଶିକା ଟୀକା' ସହିତ ସମ୍ପାଦନା)
୨୫ । ଚିଲିକା ଓ ରାଧାନାଥ- (ମୂଳ ପାଠ ଓ ଟୀକା ସହିତ ବିଶାଳ ସମୀକ୍ଷା)
୨୬ । କବିଶ୍ରୀମାଳା (ହିନ୍ଦୀ ରଚନା)- କବି କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ଉପରେ
୨୭ । ବାପୁଙ୍କ ଆଶୀର୍ବାଦ (ହିନ୍ଦୀରୁ ଅନୁବାଦ)
୨୮ । ଓଡ଼ିଆ କବିତାର ଛନ୍ଦ (ଆଲୋଚନା)
୨୯ । ରାଧାନାଥଙ୍କ 'ଉଷା' (ସମୀକ୍ଷା)
୩୦ । ଉଷା (ରାଧାନାଥ)- ସମ୍ପାଦନା ଓ ମୁଖବନ୍ଧ
୩୧ । ଶକୁନ୍ତଳା ଓ ଗଙ୍ଗାଧର (କାଳିଦାସଙ୍କ ଶକୁନ୍ତଳା ନାଟକ ସହିତ ବିସ୍ତୃତ ତୁଳନା)
୩୨ । ନିବନ୍ଧମାଳା (ବିଶ୍ୱକବିଙ୍କ ଅନେକ ବଙ୍ଗଳା ଏବଂ ଇଂରାଜୀ ପ୍ରବନ୍ଧର ଅନୁବାଦ- ପ୍ରଥମ ଖଣ୍ଡ)
୩୩ । ଭଞ୍ଜଙ୍କ ନିର୍ବାଚନ ଇସ୍ତାହାର (କେତେଗୁଡ଼ିଏ ଭଞ୍ଜଭିତ୍ତିକ ମୌଳିକ ପ୍ରବନ୍ଧର ସମାହାର)
୩୪ । ଗୀତାର ପ୍ରଥମ ଶ୍ଳୋକ
୩୫ । ବୈଦେହୀଶ ବିଳାସ (ଭଞ୍ଜ)- ପ୍ରଥମାର୍ଦ୍ଧର ଟୀକା
୩୬ । Visit Puri (ପର୍ଯ୍ୟଟନ ସାହିତ୍ୟ)
୩୭ । ଭଞ୍ଜଭୂମିକା (ଭଞ୍ଜଙ୍କ ଉପରେ ବହୁ ନୂତନ ତଥ୍ୟ ସମ୍ବଳିତ ବିଶାଳ ଗ୍ରନ୍ଥ)

୩୮ । ଚିନ୍ତା ଓ ଚେତନା (ଅନେକ ପ୍ରବନ୍ଧର ସମାହାର)
୩୯ । ଜଗନ୍ନାଥ ପୁରୀ ଦେଖନ୍ତୁ (ପର୍ଯ୍ୟଟନ)
୪୦ । ବ୍ରଜରାଜ ଗ୍ରନ୍ଥାବଳୀ (ସମ୍ପାଦନା)
୪୧ । ରସକଲ୍ଲୋଳ ସମୀକ୍ଷା (ଆଲୋଚନା)
୪୨ । ଅଭିମନ୍ୟୁ ଗ୍ରନ୍ଥାବଳୀ (ସମ୍ପାଦନା)
୪୩ । ମଥୁରାମଙ୍ଗଳ (ସମ୍ପାଦନା ଓ ସମୀକ୍ଷା)
୪୪ । ଓଡ଼ିଆ ସାହିତ୍ୟର ଇତିହାସ (କଲେଜ ପାଠ୍ୟ ପାଇଁ)
୪୫ । ରାସ ପଞ୍ଚାଧ୍ୟାୟୀ (ଜଗନ୍ନାଥ ଦାସ)- ଟୀକା ଓ ସମୀକ୍ଷା
୪୬ । ଗୀତାର ପ୍ରଥମ ଶ୍ଳୋକ (ପରିବର୍ଦ୍ଧିତ)
୪୭ । ସମରତରଙ୍ଗ (ବ୍ରଜନାଥ)- ଟୀକା ଓ ସମୀକ୍ଷା
୪୮ । ରାଜକବି ରାଧାମୋହନ ରାଜେନ୍ଦ୍ର
୪୯ । ଓଡ଼ିଆ ସାହିତ୍ୟର ଇତିହାସ (ପରିବର୍ଦ୍ଧିତ)
୫୦ । ଚିଲିକାଚିନ୍ତନ (ମୂଳପାଠ, ଟୀକା ଓ ବିଶାଳ ସମୀକ୍ଷା)
୫୧ । ବୈଦେହୀଶ ବିଳାସ (ଦ୍ୱିତୀୟାର୍ଦ୍ଧର ଟୀକା- ପ୍ରାୟ ଚାରି ହଜାର ପୃଷ୍ଠାର - ପାଣ୍ଡୁଲିପି ସରକାରଙ୍କ ଦ୍ୱାରା ପ୍ରକାଶନ ନିମନ୍ତେ ଗୃହୀତ)
୫୨ । ଜଗନ୍ନାଥ କୀର୍ତ୍ତନମ୍ (ସଂସ୍କୃତ ରଚନା, ଇଂରାଜୀ ଅର୍ଥ ସହିତ)
୫୩ । ଜଗନ୍ନାଥ କୀର୍ତ୍ତନମ୍ (ଓଡ଼ିଆ ଅର୍ଥ ସହିତ)
୫୪ । ରଞ୍ଜ ପଞ୍ଚାଶିକା (ସଂସ୍କୃତ ରଚନା, ଇଂରାଜୀ ଅର୍ଥ ସହିତ)
୫୫ । ଗୋପବନ୍ଧୁ ନକ୍ଷତ୍ରମାଳା (ସଂସ୍କୃତ ରଚନା, ଇଂରାଜୀ ଅର୍ଥ ସହିତ)
୫୬ । ଗୋପବନ୍ଧୁ ନକ୍ଷତ୍ରମାଳା (ଓଡ଼ିଆ ଅର୍ଥ ସହିତ)
୫୭ । ମହତାବ ନକ୍ଷତ୍ରମାଳା (ସଂସ୍କୃତ ରଚନା, ଇଂରାଜୀ ଅର୍ଥ ସହିତ)
୫୮ । ମହତାବ ନକ୍ଷତ୍ରମାଳା (ଓଡ଼ିଆ ଅର୍ଥ ସହିତ)
୫୯ । Fresh light on some Slokas of Kalidas
୬୦ । ଶିଶୁଗୀତିକା (ସଂସ୍କୃତ ରଚନା, ଇଂରାଜୀ ଅର୍ଥ ସହିତ)
୬୧ । ସଂସ୍କୃତ-ଗୌରବମ୍ (ସଂସ୍କୃତ ଗୀତିକା, ଇଂରାଜୀ ଅର୍ଥ ସହିତ)
୬୨ । ଭାରତ-ଗୌରବମ୍ (ସଂସ୍କୃତ ଗୀତିକା, ଇଂରାଜୀ ଅର୍ଥ ସହିତ)
୬୩ । ଭାରତ-ସଂହତିଃ (ସଂସ୍କୃତ ରଚନା, ଇଂରାଜୀ ଅର୍ଥ ସହିତ)
୬୪ । ଜବାହର ନକ୍ଷତ୍ରମାଳା (ସଂସ୍କୃତ ରଚନା, ଇଂରାଜୀ ଅର୍ଥ ସହିତ)
୬୫ । ଶ୍ରୀକ୍ଷେତ୍ର ଭ୍ରମଣ (ପର୍ଯ୍ୟଟକଙ୍କ ପାଇଁ)
୬୬ । ସତ୍ୟଭାମା ନକ୍ଷତ୍ରମାଳା (ସଂସ୍କୃତ ରଚନା, ଓଡ଼ିଆ ଅର୍ଥ ସହିତ)

୬୭ । ବିଜୟାନନ୍ଦ ସମ୍ବର୍ଦ୍ଧନମ୍ (ବିଜୁବାବୁଙ୍କ ଗୌରବଗାନ)
୬୮ । ଜଗନ୍ନାଥ ତାଣ୍ଡବ ସ୍ତୋତ୍ରମ୍ (ସଂସ୍କୃତ ରଚନା, ଇଂରାଜୀ ଅର୍ଥ ସହିତ)
୬୯ । ନୂତନ-ଜଗନ୍ନାଥାଷ୍ଟକମ୍ (ସଂସ୍କୃତ ରଚନା, ଓଡ଼ିଆ ଅର୍ଥ ସହିତ)
୭୦ । ଜଗନ୍ନାଥ-ତାଣ୍ଡବ-ସ୍ତୋତ୍ରମ୍ (ଓଡ଼ିଆ ଅର୍ଥ ସହିତ)
୭୧ । ଗୌରୀଶଙ୍କର-ଗୌରବମ୍ (କର୍ମଯୋଗୀ ଗୌରୀଶଙ୍କର ରାୟଙ୍କ ଗୌରବଗାନ)
୭୨ । ଶିଶୁଗୀତିକା (ସଂସ୍କୃତ ରଚନା, ଓଡ଼ିଆ ଅର୍ଥ ସହିତ)
୭୩ । ଜଗନ୍ନାଥ-ଦଶାବତାର ସ୍ତୋତ୍ରମ୍ (ଓଡ଼ିଆ ଅର୍ଥ ସହିତ, ସଂସ୍କୃତ ରଚନା)
୭୪ । ଜଗନ୍ନାଥ-ପ୍ରଶାନ୍ତି-ପଞ୍ଚକମ୍ (ସଂସ୍କୃତ ରଚନା, ଓଡ଼ିଆ ଅର୍ଥ ସହିତ)
୭୫ । ନବବର୍ଷ-ବନ୍ଦନମ୍ (ସଂସ୍କୃତ ରଚନା, ଇଂରାଜୀ ଅର୍ଥ ସହିତ)
୭୬ । ଜଗନ୍ନାଥ-ପ୍ରାତଃ-ସ୍ମରଣମ୍ (ସମ୍ପାଦନା)
୭୭ । Jagannath Puri (Visit Puri ର ପରିବର୍ଦ୍ଧିତ ସଂସ୍କରଣ)
୭୮ । ନୂତନ-ଜଗନ୍ନାଥାଷ୍ଟକମ୍ (ସଂସ୍କୃତ ରଚନା, ଇଂରାଜୀ ଅର୍ଥ ସହିତ)
୭୯ । ଆନ୍ଧ୍ରପ୍ରଦେଶ-ପର୍ଯ୍ୟଟନମ୍ (ଆନ୍ଧ୍ରପ୍ରଦେଶର ପର୍ଯ୍ୟଟନ ପୀଠମାନଙ୍କ ସମ୍ପର୍କରେ ସଂସ୍କୃତ ରଚନା, ଇଂରାଜୀ ଅର୍ଥ ସହିତ)
୮୦ । ଜଗନ୍ନାଥ ମନ୍ଦିରର ପ୍ରାଚୀନତା ବିରୋଧୀଙ୍କୁ ଉତ୍ତର (ସମାଲୋଚନା)
୮୧ । ସତ୍ୟଭାମା-ନକ୍ଷତ୍ରମାଳା (ସଂସ୍କୃତ ରଚନା, ଇଂରାଜୀ ଅର୍ଥ ସହିତ)
୮୨ । ଜଗନ୍ନାଥାଷ୍ଟକମ୍ (ଏହି ସ୍ତୋତ୍ରର ଓଡ଼ିଆରେ ପ୍ରାଞ୍ଜଳ ଟୀକା)
୮୩ । ଜଗନ୍ନାଥ-ଦଶାବତାରସ୍ତୋତ୍ରମ୍ (ସଂସ୍କୃତ ରଚନା, ଇଂରାଜୀ ଅର୍ଥ ସହିତ)
୮୪ । ତିରୁପତି-ନକ୍ଷତ୍ରମାଳା (ସଂସ୍କୃତ ରଚନା, ଇଂରାଜୀ ଅର୍ଥ ସହିତ)
୮୬ । ସାତଗୋଟି ଶବ୍ଦରେ ଭଞ୍ଜଙ୍କ ମୁକ୍ତିତତ୍ତ୍ୱ (ଆଲୋଚନା)
୮୭ । ଗୋଦାବରୀଶ ରଚନାବଳୀ (୪ ଖଣ୍ଡ- ସମ୍ପାଦିତ)
୮୮ । ଓଡ଼ିଶା ପର୍ଯ୍ୟଟନ ଶତକମ୍ (ସଂସ୍କୃତ ଖଣ୍ଡକାବ୍ୟ, ଇଂରାଜୀ ଅର୍ଥ ସହିତ)
୮୯ । Jagannath : Symbol of Upendra Bhanja
୯୦ । Election Manifesto of Upendra Bhanja
୯୧ । Godavarisa Mohapatra—Monograph (in English)
୯୨ । ଗଣଗାନ ଦଶକମ୍ (ଗୋଷ୍ଠୀଗାନ ପାଇଁ- ସଂସ୍କୃତ ଗୌରବ)

ଏସବୁ ବ୍ୟତୀତ, ଓଡ଼ିଶା ତଥା ଓଡ଼ିଶା ବାହାରର ବହୁ ପତ୍ରପତ୍ରିକାରେ ଇଂରାଜୀରେ ଏବଂ ଓଡ଼ିଆରେ ଶତାଧିକ ପ୍ରବନ୍ଧ ଓ କବିତା ପ୍ରଭୃତି ପ୍ରକାଶ ପାଇଛି (୧୯୩୮ରୁ ୨୦୦୧ ପର୍ଯ୍ୟନ୍ତ) । ପୁନଶ୍ଚ ଚାରି ଭାଷାରେ ଲିଖିତ ପ୍ରାୟ ଷାଠିଏ ଖଣ୍ଡ ପୁସ୍ତକର ପାଣ୍ଡୁଲିପି ପ୍ରକାଶନ ନିମନ୍ତେ ରହିଅଛି ।

## ଅଧ୍ୟାପକ ବ୍ରହ୍ମାଙ୍କ ସମ୍ପର୍କୀୟ ବିଭିନ୍ନ ଗ୍ରନ୍ଥ :

ଭାରତର ବିଭିନ୍ନ ସ୍ଥାନରୁ ପ୍ରକାଶିତ ବିଶିଷ୍ଟ ଲେଖକ-ପରିଚିତିଭିତ୍ତିକ ଗ୍ରନ୍ଥରାଜିରେ ଅଧ୍ୟାପକ ବ୍ରହ୍ମାଙ୍କ ଜୀବନୀ ପ୍ରକାଶ ପାଇଛି। ଉଦାହରଣ ସ୍ୱରୂପ ସମଗ୍ର ଏସିଆ ମହାଦେଶର ବିଶିଷ୍ଟ ସାଧକମାନଙ୍କର ଜୀବନୀ ସଂକଳିତ ହୋଇ ଯେଉଁ ବିରାଟ ଇଂରାଜୀ ଗ୍ରନ୍ଥ ନୂଆଦିଲ୍ଲୀରୁ ପ୍ରକାଶ ପାଇଛି (Reference Asia), ତହିଁରେ ୪୮୫ ପୃଷ୍ଠାରେ ଅଧ୍ୟାପକ ବ୍ରହ୍ମାଙ୍କର ଫଟୋଚିତ୍ର ସହିତ ତାଙ୍କର ଜୀବନ-ବିବରଣୀ, ତାଙ୍କ ସାଧନାର ବିଭିନ୍ନ ଦିଗ ଏବଂ ତାଙ୍କର କେତେଗୋଟି ପ୍ରସିଦ୍ଧ ଗ୍ରନ୍ଥ ସମ୍ପର୍କୀୟ ସୂଚନା ତନ୍ମଧ୍ୟରେ ପ୍ରଦତ୍ତ ହୋଇଛି। ଏତଦ୍‌ବ୍ୟତୀତ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପକ୍ଷରୁ, କଲିକତା ତଥା ଓଡ଼ିଶାର ବିଭିନ୍ନ ସ୍ଥାନରୁ ଯେଉଁସବୁ ଲେଖକ-ପରିଚିତିମୂଳକ ଗ୍ରନ୍ଥ ପ୍ରକାଶ ପାଇଛି, ତହିଁରେ ମଧ୍ୟ ଅଧ୍ୟାପକ ବ୍ରହ୍ମାଙ୍କ ସମ୍ପର୍କୀୟ ବିବରଣୀ ରହିଛି। ଏହାଛଡ଼ା ବ୍ରହ୍ମାଙ୍କ ସମ୍ପର୍କରେ କେତେଗୋଟି ସ୍ୱତନ୍ତ୍ର ଗ୍ରନ୍ଥ ମଧ୍ୟ ଲିଖିତ ହୋଇ ପ୍ରକାଶ ପାଇଛି। ସେଗୁଡ଼ିକ ହେଉଛି-

୧। Prof. G.K. Brahma— A. Monograph— By S.K. Misra
୨। ଉତ୍କଳର ବରପୁତ୍ର ଗୌରୀ କୁମାର ବ୍ରହ୍ମା- ଅଧ୍ୟାପକ ପ୍ରଫୁଲ୍ଲ କୁମାର ଦାଶ (ଏହାର ପୃଷ୍ଠା ସଂଖ୍ୟା ୪୫୦- ଅଧ୍ୟାପକ ବ୍ରହ୍ମାଙ୍କ ଉପରେ ଏହା ହେଉଛି ବୃହତ୍ତମ ଗ୍ରନ୍ଥ)
୩। ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା- କବିରାଜ ଗୋପୀନାଥ ସେନାପତି
୪। ବାଗ୍ମୀପ୍ରବର ଓ ମହାପୁରୁଷ ଗୌରୀ କୁମାର ବ୍ରହ୍ମା- ତରୁଣକବି ଶ୍ରୀ ଜଗନ୍ନାଥ ଦାଶ (ରମ୍ଭା- ଗଞ୍ଜାମ)
୫। ଉତ୍କଳଗୌରବ ଗୌରୀ କୁମାର ବ୍ରହ୍ମା- କବି ବିଘ୍ନେଶ୍ୱର ତ୍ରିପାଠୀ
୬। ଗଞ୍ଜାମ ଗୌରବ (କବିତା ଗୁଚ୍ଛ)- କବି ମଧୁସୂଦନ ମିଶ୍ର
୭। ଗୌରୀ ବ୍ରହ୍ମାଙ୍କ ଗୁଣଗୌରବ- (କବିତା)- ଶ୍ରୀମତୀ ଜୟନ୍ତୀ ରଥ

## ବିଭିନ୍ନ ସମ୍ମାନ ଓ ପଦବୀ :

ଅଧ୍ୟାପକ ବ୍ରହ୍ମାଙ୍କ ପାଣ୍ଡିତ୍ୟ ଓ ପ୍ରତିଭାରେ ମୁଗ୍ଧ ହୋଇ ତାହାଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ ପୂର୍ବକ ଓଡ଼ିଶା ତଥା ଓଡ଼ିଶା ବାହାରର ବହୁ ଅନୁଷ୍ଠାନ ତାହାଙ୍କୁ ବିଭିନ୍ନ ପଦବୀରେ ଭୂଷିତ କରିଛନ୍ତି। ତନ୍ମଧ୍ୟରୁ କେତେଗୋଟି ସମ୍ମାନସୂଚକ ପଦବୀ ହେଉଛି- (୧) ମହାପୁରୁଷ (ନୂଆଦିଲ୍ଲୀ), (୨) ବାଗ୍ମୀପ୍ରବର (କଲିକତା), (୩) ପୁରୁଷ ସରସ୍ୱତୀ (ମହୀଶୂର), (୪) ବିଦ୍‌ବନ୍-ମାନସ-ମରାଳ (ବାରାଣସୀ), (୫) ଭାରତର ରାମାୟଣ ପୁରୁଷ (ଚିତ୍ରକୂଟ), (୬) ଉତ୍କଳ ବାଚସ୍ପତି

(ପଣ୍ଡିଚେରୀ), (୭) ଭାରତ ପ୍ରଦୀପ (ଓଡ଼ିଶା), (୮) ସାହିତ୍ୟ ମାର୍ତ୍ତଣ୍ଡ (ଓଡ଼ିଶା), (୯) ଉତ୍କଳ ଭାରତୀ (ଓଡ଼ିଶା), (୧୦) ଭଞ୍ଜ ବିଶାରଦ (ଓଡ଼ିଶା), (୧୧) ମେହେର ସାହିତ୍ୟ ବିଶାରଦ (ଓଡ଼ିଶା), (୧୨) ପର୍ଯ୍ୟଟନ ବିଶାରଦ (ଓଡ଼ିଶା), (୧୩) ଭାରତ ଭୂଷଣ (ଓଡ଼ିଶା), (୧୪) ଜଗନ୍ନାଥଲୀଳା-ବିନୋଦ (ଓଡ଼ିଶା) ।

ଓଡ଼ିଶା ତଥା ଭାରତର ବିଭିନ୍ନ ସାହିତ୍ୟିକ, ଧାର୍ମିକ ଓ ସାଂସ୍କୃତିକ ଅନୁଷ୍ଠାନ ଅଧାପକ ବ୍ରହ୍ମାଙ୍କୁ ଏହି ସମସ୍ତ ପଦବୀରେ ଭୂଷିତ କରି ଉପାୟନ ଓ ମାନପତ୍ର ପ୍ରଦାନ କରିଛନ୍ତି ।

ଏହିପରି ସାମଗ୍ରିକ ଭାବରେ ବିଚାର କରିବାକୁ ଗଲେ, ଅଧାପକ ଶ୍ରୀଯୁକ୍ତ ଗୌରୀ କୁମାର ବ୍ରହ୍ମା ହେଉଛନ୍ତି ଜଣେ ଅଲୌକିକ ପ୍ରତିଭାସମ୍ପନ୍ନ ବିଦ୍ୱାନ୍ ବ୍ୟକ୍ତି । ଉତ୍କଳ ତଥା ଭାରତର ଗୌରବ ବର୍ଦ୍ଧନ କ୍ଷେତ୍ରରେ ତାହାଙ୍କର ଅବଦାନ ଅବିସ୍ମରଣୀୟ ।

❑ ❑

# ଆମ ସମୟର ଶ୍ରେଷ୍ଠ ଭାଷା ବିଜ୍ଞାନୀ
# ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ

ଡକ୍ଟର ବିଜୟାନନ୍ଦ ସିଂହ

ଆଧୁନିକ ଓଡ଼ିଆ ସାହିତ୍ୟର ଜଣେ ବିଶିଷ୍ଟ ସାରସ୍ୱତ ସାଧକ ଭାବେ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ ଯଥେଷ୍ଟ ଖ୍ୟାତି ଅର୍ଜନ କରିଛନ୍ତି । ପ୍ରସିଦ୍ଧ ଗଦ୍ୟ ଲେଖକ, ସୁ-ସମାଲୋଚକ, ପ୍ରାବନ୍ଧିକ ଭାବରେ ଡକ୍ଟର ପଟ୍ଟନାୟକଙ୍କ ସ୍ଥାନ ସ୍ୱତନ୍ତ୍ର । ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ବିଶେଷକରି ଭାଷା ଗବେଷଣା କ୍ଷେତ୍ରରେ ତାଙ୍କର ଅନୁଶୀଳନ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଛି । ଓଡ଼ିଆ ଭାଷା, ସାହିତ୍ୟର ମୌଳିକ ଚେତନାକୁ ସ୍ପଷ୍ଟ ଭାବରେ ଉପସ୍ଥାପିତ କରିବାରେ ସେ ଅନନ୍ୟ ଭୂମିକା ଗ୍ରହଣ କରିଛନ୍ତି । ତାତ୍ତ୍ୱିକ ବିଚାର ସହ ଆଧୁନିକ ଭାଷା ବିଜ୍ଞାନ ସମ୍ପର୍କରେ କେବଳ ଓଡ଼ିଆ ଭାଷାରେ ନୁହେଁ, ଇଂରାଜୀ ଭାଷାରେ ଅନେକ ମୂଲ୍ୟବାନ୍ ଗ୍ରନ୍ଥ ରଚନା କରିଛନ୍ତି । ଦେବୀବାବୁ ଉଚ୍ଚକୋଟୀର ଗବେଷଣା ମନୋବୃତ୍ତି ଓ ନିଜସ୍ୱ ସମାଲୋଚନା ପାଇଁ ସ୍ମରଣୀୟ ହୋଇ ରହିବେ । ସହଜ, ସରଳ ଭାଷାରେ ଗୂଢ଼ ଗବେଷଣାମୂଳକ ତଥ୍ୟ ଓ ତତ୍ତ୍ୱାବଳୀର ପ୍ରକାଶ ତାଙ୍କ ଉନ୍ନତ ଗଦ୍ୟଶୈଳୀର ବୈଶିଷ୍ଟ୍ୟ । ଡକ୍ଟର ପଟ୍ଟନାୟକଙ୍କ ଗଦ୍ୟ ରଚନାରେ ସାହିତ୍ୟ, ସଂସ୍କୃତି, ଭାଷା ପ୍ରାଧାନ୍ୟ ଲାଭ କରିଥିଲେ ମଧ୍ୟ ସେ ସମ୍ପର୍କୀୟ ବିଭିନ୍ନ ସମସ୍ୟାର ଉତ୍‌ଥାପନ ଓ ସମାଧାନର ପଥ ସେଥିରେ ଉନ୍ମୁକ୍ତ । ବହୁ ଅନାଲୋଚିତ ତଥ୍ୟାବଳୀର ଉପସ୍ଥାପନାରେ ତାଙ୍କର ଆଲୋଚନା ସମୃଦ୍ଧ । ତାଙ୍କର ଆଲୋଚନା ରୀତି ପାଣ୍ଡିତ୍ୟପୂର୍ଣ୍ଣ । ଯୁକ୍ତି ଓ ତଥ୍ୟକୁ ଯଥାଯଥ ଭାବରେ ଉପସ୍ଥାପନ କରି ସେ ନିଜ ସଫଳତାର ଦିଗ ନିର୍ଦ୍ଦେଶ କରିଛନ୍ତି । ବହୁ ଉଚ୍ଚମାନର ସାହିତ୍ୟ ଗବେଷଣାମୂଳକ ଗ୍ରନ୍ଥର ଲେଖକ ଭାବରେ ସେ ସୁଖ୍ୟାତ । ଓଡ଼ିଆ ଭାଷାର ସୁରକ୍ଷା, ସର୍ବୋପରି ଏହି ପ୍ରାଚୀନ ଭାଷା, ସାହିତ୍ୟର ପ୍ରସାରରେ ତାଙ୍କର ଭୂମିକା ଅନବଦ୍ୟ । ଓଡ଼ିଶା ଏବଂ ଓଡ଼ିଶା ବାହାରେ ଆମ ଭାଷା ସାହିତ୍ୟର ମୌଳିକ ସ୍ଥିତିକୁ ପ୍ରକାଶ କରିବା ସହିତ ଜାତୀୟ ସ୍ୱାଭିମାନ ପ୍ରତିଷ୍ଠା କରିବାରେ ଦେବୀବାବୁଙ୍କ ସମଗ୍ର ଜୀବନ

ନିବେଦିତ ହୋଇଛି । ଓଡ଼ିଆ ଭାଷା ସହିତ ଅନ୍ୟାନ୍ୟ ଭାଷା ଯଥା ବଙ୍ଗଳା, ଆସାମୀ, ହିନ୍ଦୀ ପ୍ରଭୃତିର ଐତିହାସିକ ପୁନର୍ଗଠନ ସମ୍ପର୍କରେ ସୁଚିନ୍ତିତ ଆଲୋଚନା ସେ ପ୍ରଦାନ କରିଛନ୍ତି । ଉତ୍କଳମାତାର ସୁଯୋଗ୍ୟ ସନ୍ତାନ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ସାଧନାର ସିଦ୍ଧି ଜାତୀୟ ସ୍ତରରେ ସ୍ୱୀକୃତି ଲାଭ କରିଛି । ଖ୍ୟାତନାମା ଭାଷାତତ୍ତ୍ୱବିତ୍, ପ୍ରଖ୍ୟାତ ସାରସ୍ୱତ ସ୍ରଷ୍ଟା ରୂପେ ଯେଉଁ ସମ୍ମାନ, ଆଦର ସର୍ବଭାରତୀୟ ସ୍ତରରେ ପାଇଛନ୍ତି, ତାହା ଆମ ଭାଷା ସାହିତ୍ୟର ଗୌରବର ସାମଗ୍ରୀ । ତାଙ୍କର ବିପୁଳ ସାରସ୍ୱତ କୃତି ଓ କୀର୍ତ୍ତିକୁ ଜାଣିବା ପୂର୍ବରୁ ତାଙ୍କ ଜୀବନ ଚରିତ ସମ୍ପର୍କରେ ଜାଣିବା ଆମର କାମ୍ୟ ।

**ଜୀବନ ଚରିତ :**

୧୯୩୧ ମସିହା ମାର୍ଚ୍ଚ ୧୪ ତାରିଖ । ଏହି ଯଶସ୍ୱୀ ସାରସ୍ୱତ ସ୍ରଷ୍ଟା, ବିଶିଷ୍ଟ ଭାଷାବିଜ୍ଞାନୀ ଡଃ ଦେବୀପ୍ରସନ୍ନ ପଟ୍ଟନାୟକ କଟକ ଜିଲ୍ଲାର ଆଠଗଡ଼ ସବ୍‌ଡିଭିଜନ୍ ଅନ୍ତର୍ଗତ ତିଗିରିଆ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଏହି ତିଗିରିଆ ଅଞ୍ଚଳ ଓଡ଼ିଶାରେ ବିଭିନ୍ନ କାରଣ ପାଇଁ ପ୍ରସିଦ୍ଧ । ଏହି ସ୍ଥାନର ରହିଛି ସ୍ୱତନ୍ତ୍ର ମର୍ଯ୍ୟାଦା । ତିଗିରିଆର ରହିଛି ପୁଣି ସ୍ୱତନ୍ତ୍ର ଐତିହ୍ୟ । ନିଜ ଜନ୍ମ ସମ୍ପର୍କିତ କଥା କହିବାକୁ ଯାଇ ଡଃ ପଟ୍ଟନାୟକ ଲେଖିଛନ୍ତି- ୧୯୩୧ ମାର୍ଚ୍ଚ ୧୪ରେ ତିଗିରିଆ ବେବର୍ତ୍ତା ବଂଶରେ ମୋର ଜନ୍ମ । ହିନ୍ଦୁ ପାଞ୍ଜି ଅନୁସାରେ ପଞ୍ଚୁଦୋଳ ଦିନ ମୋର ଜନ୍ମ । ପାଖଆଖ ଦଶ ଗଡ଼ଜାତରେ ତିଗିରିଆ ନାଁ ଡାକ । ତିଗିରିଆ ଖଜାପିଠା, ତିଗିରିଆ ହାବେଳୀ, ତିଗିରିଆ ପାଟ, ମଠା, କାଣ୍ଡିଆ ଖାଲି ଓଡ଼ିଶା ଭିତରେ ନୁହେଁ, ଓଡ଼ିଶା ବାହାରେ ଜଣାଶୁଣା । ତିଗିରିଆର ଦାଶରଥି ବେବର୍ତ୍ତା ଥରେ କଲିକତାରେ ତିଗିରିଆ ନିଲାମରେ କିଣି ତିଗିରିଆ ରାଜାଙ୍କୁ ଫେରେଇ ଦେଇଥିଲେ । ଓଡ଼ିଶାର ପ୍ରଥମ ନାରୀକବି ସୁଲକ୍ଷଣା ଦେବୀ ଏଇ ବଂଶର ଝିଅ । ସିଏ ଦାଶରଥି ବେବର୍ତ୍ତାଙ୍କ ଭଉଣୀ । ମୋର ଜେଜେବାପା ରଘୁନାଥ ପାଞ୍ଜିଆ ପଟ୍ଟନାୟକ ବଡ଼ ଧର୍ମଭୀରୁ । ଥରେ ଦି'ପହରରେ ଖାଇବାପରେ ଟିକିଏ ଆଖି ଲାଗିଚି । ସିଏ ସପନରେ ଦୁର୍ଗାଦେବୀଙ୍କୁ ଦେଖିଲେ । ଦୁର୍ଗାଦେବୀ ତାଙ୍କୁ ହଲେଇଦେଇ କହିଲେ- ''ଶୋଇଚୁ କଅଣ ? ଯା' ଦେଖିବୁ ତୋର ନାତି ହୋଇଚି ।'' ସିଏ ମତେ ଦେଖି ନାଁ ଦେଲେ ଦେବୀପ୍ରସନ୍ନ । ଦେବୀପ୍ରସନ୍ନଙ୍କ ପିତାଙ୍କ ନାମ ମଧୁସୂଦନ ପଟ୍ଟନାୟକ, ମାତାଙ୍କ ନାମ ମୀନାମାଳା ପଟ୍ଟନାୟକ । ସେ ଜନ୍ମ ହେଲା ବେଳକୁ ତାଙ୍କର ପିତା ମଧୁସୂଦନ ଜେଲରେ ଥିଲେ । ମଧୁସୂଦନ ଥିଲେ ଜଣେ ପ୍ରସିଦ୍ଧ ସ୍ୱାଧୀନତା ସଂଗ୍ରାମୀ । ଜାତିର ଜନକ ଗାନ୍ଧିଜୀଙ୍କ ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ସେ ମାତୃଭୂମିର ମୁକ୍ତି ପାଇଁ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ । ସେ ଏଥିପାଇଁ

କାରାବରଣ ମଧ୍ୟ କରିଛନ୍ତି । ଦେବୀବାବୁଙ୍କ ଭାଷାରେ- ''ମୁଁ ଜନ୍ମ ହେଲା ବେଳକୁ ବାବା ଜେଲ୍‌ରେ । ବିନୋଦ ଜାନୁନ୍‌ଗୋ ମତେ କହିଥିଲେ ଯେ; ମୋ' ଜନ୍ମ ଖବର ପାଇ ଜେଲ୍‌ରେ ମିଠେଇ ବଣ୍ଟା ହୋଇଥିଲା ।''

ଦେବୀବାବୁଙ୍କ ଶୈଶବ ଥିଲା ବେଶ୍ ସ୍ନେହ, ଶ୍ରଦ୍ଧାରେ ପରିପୂର୍ଣ୍ଣ । ପରିବାରର ସମସ୍ତେ ତାଙ୍କୁ ନିବିଡ଼ ଭାବରେ ଭଲ ପାଉଥିଲେ । ସେ ଥିଲେ ସମସ୍ତଙ୍କର ପ୍ରିୟ ଅତିପ୍ରିୟ । ସେଦିନର କଥାକୁ ସ୍ମରଣ କରି ସେ ଲେଖିଛନ୍ତି- ''ମୋ' ଡାକ ନାଁ କିଏ ବୁଲୁ ଦେଇଥିଲା ମୋର ହେଜ ନାହିଁ । ବୋଉ ସବୁବେଳେ ଡାକୁଥିଲା ବୁଲା । ମୁଁ ଆଇ.ଏ. ପଢ଼ିଲା ଯାଏ ବୋଉ କୋଳରେ ଶୋଇପଡୁଥିଲି । ମୋ ଜେଜେମା' ଡାକୁଥିଲେ ପ୍ରସନି । ଜେଜେମା' ଓ ପାଞ୍ଜିଆ ବାପା ଜଗନ୍ନାଥଙ୍କ ଭକ୍ତ ଥିଲେ । ମୋ ଜେଜେମା' ବଡ଼ଦେଉଳରେ ସୁନା ଗୋସେଇଁଙ୍କ ପାଖରେ ଫୁଲ ଗୁନ୍ଥୁଥିଲେ । ମୁଁ ଭଲ ପିଲା ହେବାପାଇଁ ସୁନା ଗୋସେଇଁଙ୍କଠାରୁ ଜଗନ୍ନାଥଙ୍କ କିଆ ଦାନ୍ତକାଠି, ଚନ୍ଦନ, ଫୁଲମାଳ ଲାଞ୍ଚ ମିଳୁଥିଲା ।'' ଏତିକିରେ ତାଙ୍କ ବାଲ୍ୟକାଳର ଜୀବନ ସୀମାବଦ୍ଧ ନଥିଲା- ତାହା ପୁଣି ବିସ୍ତାରିତ ହୋଇଛି ବିଭିନ୍ନ ଦିଗକୁ । ସୁଖ, ଅୟସ ଭିତରେ ତାଙ୍କ ଜୀବନର ଗତି । ସେ ତେଣୁ କହିଛନ୍ତି- ''ପିଲାଦିନେ ତିଗିରିଆ ଉଆସରେ ଗୋଟିଏ କୋଳରୁ ଆଉ ଗୋଟିଏ କୋଳକୁ ଡେଇଁ ଡେଇଁ ବେଳ କଟିଯାଉଥିଲା । କାଠର କାଠୁଆରେ କାଠୁଏ ହଳଦୀ, ତା' ମଝିରେ ତେଲ ପୂର୍ବରାତିରୁ ରଖା ହୋଇଯାଏ । ସକାଳୁ ଉଆସର ପୁଅମା', ଚାନ୍ଦ, ସୁନା ଆଦି କେତେ ଯେ ମାଲିସ୍ କରନ୍ତି କହିବା କଥା ନାହିଁ । ସେଇଥିପାଇଁ ବଡ଼ ହେଲେ ଚର୍ମରୋଗ ନାହିଁ କହିଲେ ଚଳେ । ଘରକୁ ଆସିଲେ ମାମା, ମାଉସୀମାମା, ନୂଆମା', ଗୋରା ମାମା, କକେ ମାମାଙ୍କ ଗହଣରେ ବେଳ କଟୁଥିଲା । ଏମାନଙ୍କ ସଙ୍ଗରେ ଅପା (ମୋ' ବଡ଼ ଭଉଣୀ ହେମନ୍ତ କୁମାରୀ) ପ୍ରେମ ଅପା, ନିର୍ମଳ ଅପା, ସୁଧା ଅପା, ନଳିନୀ ଅପା, ଚାରୁ ଅପାଙ୍କ ଚୁଡ଼ା ଚନ୍ଦ୍ର ଅପା, ବିନ୍ଦୁ ଅପା, ରାଧା ଅପା, ହୀନା ଅପା ଆଦି କେତେ ଯେ ଭଉଣୀ ଆଉ ପିଇସୀଙ୍କ ମେଳରେ ବେଳ କଟୁଥିଲା, କହିଲେ ସରିବ ନାହିଁ । ମୋ' ସାନ ଭଉଣୀ ଚୁନି (ବିନୋଦିନୀ) । ପରେ ସିଏ ଗୀତ ଲେଖି ନାଁ କଲା ।'' ପରିବାରର ଅନ୍ତରଙ୍ଗ ଭାବନା, ଆତ୍ମୀୟ ଚେତନାରେ ଦେବୀପ୍ରସନ୍ନ କେବଳ ବିଭୋର ହେଉଥିଲେ ତାହା ନୁହେଁ; ବାପା-ମାଆଙ୍କର ଥିଲେ ପ୍ରାଣାଦପି ପ୍ରିୟ ପୁତ୍ର । ଏହି ସତ୍ୟକୁ ସ୍ୱୀକାର କରିବାକୁ ଯାଇ ସେ ଲେଖିଛନ୍ତି- ''ପିଲାଦିନେ ବାପା-ବୋଉ କେବେହେଲେ ମତେ ମାଡ଼ ମାରି ନାହାନ୍ତି କି ଗାଳି ଦେଇ ନାହାନ୍ତି । ଥରେ ମୁଁ ଆମ ଉପର ଅଗଣାରେ ବସି ଧୂଳିରେ ଖେଳୁଥିଲି । ବାପା ମୋ' ମୁଣ୍ଡକୁ ଧରି ପଛ ଆଡ଼କୁ ପେଲିଦେବାରୁ ମୁଁ

ଚିତ୍ ହୋଇ ଗଡ଼ିପଡ଼ିଲି । ଏଥିପାଇଁ ବାବା-ବୋଉଙ୍କ ଭିତରେ କଥା କଟାକଟି ହୋଇଥିଲା । ବାବା ମତେ କେବେ ଆକଟ କରିଥିବା କଥା ମନେ ନାହିଁ ।''

**ଶିକ୍ଷା :**

ଦେବୀବାବୁଙ୍କ ପିତା ଦେଶ କାମରେ ନିଜକୁ ସମର୍ପିତ କରିଥିବାରୁ ତତ୍କାଳୀନ ଶାସକ, ରାଜାମାନଙ୍କର କୋପଦୃଷ୍ଟିରେ ପଡ଼ିଥିଲେ । ମଧୁସୂଦନ ପଟ୍ଟନାୟକଙ୍କୁ କଂଗ୍ରେସ ପକ୍ଷରୁ କନିକା ଆନ୍ଦୋଳନର ଦାୟିତ୍ୱ ଦିଆଯାଇଥିଲା । ସେହି ଆନ୍ଦୋଳନର ନେତୃତ୍ୱ ନେଇଥିବାରୁ ତାଙ୍କୁ ରାଜ୍ୟ ବାହାରକୁ (ତତ୍କାଳୀନ ଆଠଗଡ଼ ରାଜ୍ୟ) ଚାଲିଯିବା ପାଇଁ ନିର୍ଦ୍ଦେଶ ହେଲା । ସେ ବ୍ରହ୍ମପୁରକୁ ଏଥିପାଇଁ ଚାଲି ଆସିଲେ । ଦେବୀବାବୁ ନିଜ ପିତାଙ୍କ ଦେଶପ୍ରେମ ସମ୍ପର୍କରେ ସୂଚନା ଦେଇ କହିଛନ୍ତି- ''ବାବା ଗାନ୍ଧିଙ୍କ ସାଙ୍ଗରେ କାମ କରୁଥିବାରୁ ତାଙ୍କୁ ରାଜ୍ୟ ବାହାର ହୁକୁମ୍ ହେଲା । ମୋ' ପିଲାଦିନ ବ୍ରହ୍ମପୁରରେ କଟିଲା । ସେତେବେଳେ ଆମ ସମ୍ବନ୍ଧ ଯେଉଁମାନଙ୍କ ସାଙ୍ଗରେ ଥିଲା, ତା' ଭିତରେ ଦିବାକର ପଟ୍ଟନାୟକ, ଉମାଚରଣ ପଟ୍ଟନାୟକ, ମହେନ୍ଦ୍ର ପଟ୍ଟନାୟକଙ୍କ ନାଁ ମୋର ମନେ ଅଛି । ବାବାଙ୍କ ବନ୍ଧୁ ଓ ସମ୍ପର୍କୀୟ ସ୍ୱାମୀ ବିଚିତ୍ରାନନ୍ଦ ଦାସ, ଭୁବନାନନ୍ଦ ଦାସ, ଗୋଦାବରୀଶ ମିଶ୍ର, ନୀଳକଣ୍ଠ ଦାସ, ବିନୋଦ କାନୁନ୍‌ଗୋ, ଲାଲ୍‌ମୋହନ ପଟ୍ଟନାୟକ, ଡାକ୍ତର ଅଭିନ୍ନ ରାଓ, ବୀରକିଶୋର ରାୟ, ସରଳା ଦେବୀ, ଲତିକା ଦେବୀ ଆଦିଙ୍କ ନାଁ ମନକୁ ଆସେ । ଗୋପବନ୍ଧୁ ଦାସଙ୍କ ସାଙ୍ଗରେ ବାବା ବହୁ ଜାଗାକୁ ଯାଇଚନ୍ତି ।'' ତେଣୁ ମଧୁସୂଦନ ପଟ୍ଟନାୟକ ବ୍ରହ୍ମପୁରରେ ରହୁଥିବାରୁ ଦେବୀପ୍ରସନ୍ନଙ୍କ ବାଲ୍ୟକାଳ ବ୍ରହ୍ମପୁରରେ ଅତିବାହିତ ହୋଇଥିଲା । ପ୍ରାଥମିକ ଶିକ୍ଷା ବ୍ରହ୍ମପୁରରେ ସେ ସମାପନ କରି ଚତୁର୍ଥ ଶ୍ରେଣୀରେ ତିଗିରିଆ ମିଡ଼ିଲ୍ ଇଂଲିଶ୍‌ରେ ନାମ ଲେଖାଇଲେ । ସେଠାରୁ ଚାଲିଆସି ତାଙ୍କ ପିଉସା ଶ୍ରୀ ରାଧାମୋହନ ପଟ୍ଟନାୟକଙ୍କ ଢେଙ୍କାନାଳ ସ୍ଥିତ ବାସଭବନରେ ରହି ଦୁଇବର୍ଷ କାଳ ଢେଙ୍କାନାଳ ସ୍କୁଲରେ ଅଧ୍ୟୟନ କଲେ । ଢେଙ୍କାନାଳରୁ ଦେବୀବାବୁ ଚାଲିଆସି ବିଶ୍ୱନାଥ ବିଦ୍ୟାପୀଠ ଆଠଗଡ଼ରେ ନାମ ଲେଖାଇଲେ । ଏହି ସ୍କୁଲରେ ପାଠ ପଢ଼ିଲା ବେଳର ଏକ କୌତୂହଳପ୍ରଦ ଘଟଣା ବର୍ଣ୍ଣନା କରି ସେ ଲେଖିଛନ୍ତି- ''ମୁଁ ଆଠଗଡ଼ ହାଇସ୍କୁଲରେ ପଢୁଥିଲା ବେଳେ ସେଠି ଗୋଟିଏ ଧର୍ମଘଟ ହୋଇଥିଲା । ହେଡ଼ମାଷ୍ଟର ପିଲାଙ୍କ ଅଭିଭାବକମାନଙ୍କୁ ଡାକିଥିଲେ । ସେମାନଙ୍କ ଭିତରେ କଅଣ କଥାବାର୍ତ୍ତା ହେଲା ମୁଁ ଜାଣେ ନାହିଁ । ବାବା ମତେ ସାଙ୍ଗରେ ଧରି ବଜାରରେ ଥିବା ଗୁଡ଼ିଆ ଦୋକାନକୁ ଆସିଲେ । ସେଠି ଆମେ କେତୋଟି ଜଳଖି ଖାଇଲୁ । ଚାରିଆଡ଼େ ପ୍ରଚାର ହୋଇଗଲା ଯେ; ଧର୍ମଘଟରେ ଯୋଗ ଦେଇଥିବାରୁ ବୁଲୁ ବାପା ତାଙ୍କୁ ଜଳଖି ଖୁଆଇଲେ ।''

୧୯୪୬ ମସିହାରେ ସେ କୃତିତ୍ୱର ସହିତ ମାଟ୍ରିକ୍ ପାଶ୍ କଲେ । କଟକ ସ୍ଥିତ ଖ୍ରୀଷ୍ଟ କଲେଜ ହେଲା ଦେବୀପ୍ରସନ୍ନଙ୍କ କଲେଜ ପାଠ୍ୟକ୍ରମର ପ୍ରଥମ ଅନୁଷ୍ଠାନ । ୧୯୪୮ ମସିହାରେ ଏହିଠାରୁ ଆଇ.ଏ. ପରୀକ୍ଷାରେ ପାଶ୍ କଲାପରେ ରେଭେନ୍ସା କଲେଜରେ ବି.ଏ. ଶ୍ରେଣୀରେ ସେ ନାମ ଲେଖାଇଲେ । ୧୯୫୦ ମସିହାରେ ବି.ଏ. ଓଡ଼ିଆ ଅନର୍ସ ପରୀକ୍ଷାରେ ଡଃ ପଟ୍ଟନାୟକ ଭକ୍ତକବି ଗୋଲ୍ଡ଼ ମେଡ଼ାଲ ସହ ଉତ୍ତୀର୍ଣ୍ଣ ହେଲେ । ୧୯୫୩ ମସିହାରେ ସେ ଓଡ଼ିଆ ଏମ୍.ଏ.ରେ ସର୍ବୋଚ୍ଚ ନମ୍ବର ଉତ୍କଳ ବିଶ୍ୱବିଦ୍ୟାଳୟରେ ରଖି ପାଶ୍ କରିବା ସହିତ ପୁଣି ଭକ୍ତକବି ଗୋଲ୍ଡ଼ ମେଡ଼ାଲ୍ ପାଇବାର ସୌଭାଗ୍ୟ ଲାଭକଲେ । ଏମ୍.ଏ. ଶ୍ରେଣୀରେ ଛାତ୍ର ଥିଲାବେଳେ ସେ ତତ୍କାଳୀନ ଛାତ୍ର ଆନ୍ଦୋଳନ ସହିତ ସମ୍ପୃକ୍ତ ହୋଇଥିଲେ । ମେଧାବୀ ଛାତ୍ର ଦେବୀପ୍ରସନ୍ନଙ୍କ ଜ୍ଞାନଲାଭ କରିବା ପାଇଁ ତାଙ୍କ ଭିତରେ ଅଦମ୍ୟ ପିପାସା ଥିଲା । ସେ ଏମ୍.ଏ. ପର୍ଯ୍ୟନ୍ତ ପାଠ ପଢ଼ିବା ଭିତରେ ସନ୍ତୁଷ୍ଟ ହୋଇପାରିଲେ ନାହିଁ । ଉଚ୍ଚତର ଗବେଷଣା ପାଇଁ ତାଙ୍କ ଭିତରେ ଉତ୍ସାହ ସୃଷ୍ଟି ହେଲା । ୧୯୫୭ ମସିହାରେ ବିଶ୍ୱଭାରତୀ ଶାନ୍ତିନିକେତନରୁ ଡିପ୍ଲୋମା ଇନ୍‌ଫ୍ରେଞ୍ଚ, ଡିଷ୍ଟିଙ୍କସନ୍, ୧୯୫୯ରେ ଡିପ୍ଲୋମା ଇନ୍ ଲିଙ୍ଗୁଇଷ୍ଟିକ୍ସ, ଡେକାନ୍ କଲେଜରୁ ଉପାଧି ପ୍ରାପ୍ତ ହୋଇ ତାଙ୍କ ଉଜ୍ଜ୍ୱଳ ପ୍ରତିଭାର ପରିଚୟ ଦେଲେ । ଜ୍ଞାନ ଓ ପ୍ରଜ୍ଞାକୁ ନିଜ ଜୀବନର ଶ୍ରେଷ୍ଠ ସମ୍ପଦ ମନେ କରିଥିବା ଏହି ସାରସ୍ୱତ ତପସ୍ୱୀ ଡଃ ଦେବୀପ୍ରସନ୍ନ ପଟ୍ଟନାୟକ ଗବେଷଣା କାର୍ଯ୍ୟରେ ନିଜକୁ ସମ୍ପୂର୍ଣ୍ଣ ନିୟୋଜିତ କଲେ । ଉଚ୍ଚତର ଗବେଷଣା କରି ସେଥିରେ ସଫଳତା ଅର୍ଜନ କଲେ । ୧୯୬୧ ମସିହାରେ କର୍ନେଲ୍ ୟୁନିଭର୍‌ସିଟି (Cornell University U.S.A.) ରୁ A Controlled Historical Reconstruction of Oriya, Assamese, Bengali, Hindi" ବିଷୟରେ Prof. Gordon Fairbamks ଅଧୀନରେ ଗବେଷଣା କରି Ph.D. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଓଡ଼ିଶାର ଗୌରବ ବୃଦ୍ଧି କରିବାରେ ସହାୟକ ହେଲେ ।

## ରାଜନୀତି ପ୍ରତି ଆକର୍ଷଣ :

ସ୍ୱାଧୀନ ବିଚାର, ମୁକ୍ତ ଭାବନା, ନିର୍ଭୀକ ଚେତନା, ସ୍ୱଚ୍ଛ, ସ୍ପଷ୍ଟ ଚିନ୍ତାଧାରାରେ ବିଶ୍ୱାସ କରୁଥିବା ମଣିଷ ଶ୍ରୀଯୁକ୍ତ ଦେବୀପ୍ରସନ୍ନ ପଟ୍ଟନାୟକ । ଅନ୍ୟାୟ, ଅନୀତିକୁ ସେ ସହିପାରୁ ନଥିଲେ ଏବଂ ଦୃପ୍ତ କଣ୍ଠରେ ତା'ର ତୀବ୍ର

ବିରୋଧ କରୁଥିଲେ । ଛାତ୍ର ଅବସ୍ଥାରେ ତାହା ପ୍ରମାଣିତ ହୋଇଛି । ନିର୍ଦ୍ଦିଷ୍ଟ ଆଦର୍ଶରେ ବିଶ୍ୱାସ ରଖିଥିବା ଦେବୀବାବୁ ସମାଜର ସାମଗ୍ରିକ ପରିବର୍ତ୍ତନ ପାଇଁ ସ୍ୱପ୍ନ ଦେଖୁଥିଲେ । ମାନବିକ ଅଧିକାର ପାଇଁ ଛାତ୍ର ଅବସ୍ଥାରୁ ସେ ସଂଗ୍ରାମ କରିଛନ୍ତି । ଆଠଗଡ଼ ହାଇସ୍କୁଲରୁ ଆରମ୍ଭ କରିଥିବା ଧର୍ମଘଟ ପରବର୍ତ୍ତୀ ସମୟରେ ତାଙ୍କୁ ବୃହତ୍ତର ଆନ୍ଦୋଳନରେ ଯୋଗଦେବା ପାଇଁ ପ୍ରୋତ୍ସାହିତ କରିଥିଲା । ତାଙ୍କ ଭାଷାରେ- ''୧୯୪୭ରେ ମୁଁ ଛାତ୍ର କଂଗ୍ରେସ ଓ ଯୁବକ ସମାଜବାଦୀ ଦଳରେ ଯୋଗଦେଲି । ବାବା କଂଗ୍ରେସରେ ଥାଇ ଗାନ୍ଧିଙ୍କ ଆଦର୍ଶରେ ଚାଲିବାକୁ ଚେଷ୍ଟା କରୁଥାଆନ୍ତି । ବୋଉଙ୍କୁ ସିଦ୍ଧାନ୍ତ ନେବା ଦରକାର ପଡ଼ିଲା- ସିଏ କଂଗ୍ରେସ କାମ କରିବ କି ନାହିଁ ? ଶେଷକୁ ସିଏ ପୁଅ ପଟରେ ରହିବାକୁ ଘୋଷଣା କଲା । କିନ୍ତୁ ଏଇ ରାଜନୈତିକ ପରିସ୍ଥିତି ଆମ ଘରେ କେବେ କନ୍ଦଳ ସୃଷ୍ଟି କରି ନାହିଁ ।'' ଛାତ୍ର ରାଜନୀତିରେ ଭାଗ ନେବା ଫଳରେ ସେ ବର୍ଷେ ବିଳମ୍ବରେ ଏମ୍.ଏ. ପରୀକ୍ଷା ଦେଲେ । ୧୯୫୨ରେ ହୋଇଥିବା କଲେଜ ଫି' ବୃଦ୍ଧି ପ୍ରତିବାଦରେ ଏକ ବିରାଟ ଆନ୍ଦୋଳନ ଓଡ଼ିଶାରେ ମୁଣ୍ଡ ଟେକିଥିଲା । ଦୀର୍ଘ ତିନି ମାସ କାଳ କଲେଜ ସବୁ ବନ୍ଦ ରହିଥିଲା । ନୀତି, ନିୟମରେ ବିଶ୍ୱାସ କରୁଥିବା ଛାତ୍ର ଦେବୀପ୍ରସନ୍ନ ଏହି ଆନ୍ଦୋଳନର ଅନ୍ୟତମ ନେତା ଥିଲେ । ଏହି ଆନ୍ଦୋଳନକୁ ସକ୍ରିୟ କରିବା ପାଇଁ ବାରିପଦା ଯାଇଥିଲାବେଳେ ଗିରଫ ହୋଇ କଟକ ଆସିଥିଲେ । ସମାଜବାଦରେ ସମ୍ପୂର୍ଣ୍ଣ ବିଶ୍ୱାସୀ ଦେବୀବାବୁ ଜୀବନର ଗତିପଥ ଥିଲା ବିଚିତ୍ର । ସମାଜବାଦୀ ଆନ୍ଦୋଳନର ସେ ଥିଲେ ଅନ୍ୟତମ ସକ୍ରିୟ ସଂଗ୍ରାମୀ ଛାତ୍ରନେତା । କିନ୍ତୁ ୧୯୫୩ ମସିହା ପରେ ସେ ଏହି ରାଜନୀତିରୁ ନିଜକୁ ଦୂରେଇଦେଲେ । ସେ ଏହି କଥାକୁ ମନେପକାଇ ଲେଖିଛନ୍ତି- ''ଛାତ୍ର ଆନ୍ଦୋଳନ ନେତୃତ୍ୱର ମୂଲ୍ୟ ଦେଇ ୧୯୫୨ ବଦଳରେ ୧୯୫୩ରେ ଏମ୍.ଏ. ପାଶ୍ କଲି । ୧୯୫୩ରେ ରେଙ୍ଗୁନ୍‌ରେ ହୋଇଥିବା ଏସୀୟ ସମାଜବାଦୀ ସମ୍ମିଳନୀରେ ଯୋଗଦେଇ ଫେରିଲାପରେ ରାଜନୀତି ଛାଡ଼ିବା ସ୍ଥିର କଲି ।'' ରାଜନୀତିକୁ ଛାଡ଼ିଦେଇ ଏକ ବୃହତ୍ତର ଜୀବନ ଗଠନ ପାଇଁ ସେ ଆଗୁସାର ହେଲେ ।

**କର୍ମ ହିଁ ଈଶ୍ୱର :**

''ମାନବ ଜୀବନ ନୁହଁଇ କେବଳ
ବର୍ଷ-ମାସ-ଦିନ-ଦଣ୍ଡ,
କର୍ମେ ଜୀଏଁ ନର କର୍ମ ଏକା ତା'ର
ଜୀବନର ମାନଦଣ୍ଡ ।।''

ଉତ୍କଳମଣି ଗୋପବନ୍ଧୁଙ୍କ ଏହି ପବିତ୍ର ଉକ୍ତି ଏଠାରେ ପ୍ରଯୁଜ୍ୟ । ଡଃ ଦେବୀପ୍ରସନ୍ନ ପଟ୍ଟନାୟକଙ୍କର କର୍ମ ଉପରେ ଗଭୀର ବିଶ୍ୱାସ । ତାଙ୍କୁ ଦେଖିଲେ ମନେହୁଏ ସତେ ଯେପରି ସେ କେବଳ କର୍ମ କରିବା ପାଇଁ ପୃଥିବୀରେ ଜନ୍ମ ହୋଇଛନ୍ତି । ଗଭୀର ଅଧ୍ୟବସାୟ, ନିଷ୍ଠା, ପୁଣି କର୍ମତତ୍ପରତା ତାଙ୍କୁ ସ୍ୱତନ୍ତ୍ର ମର୍ଯ୍ୟାଦା ଆଣି ଦେଇଛି । ବିଶ୍ରାମହୀନ ମଣିଷ ସତେ ଯେପରି ସେ । ସବୁବେଳେ ଚାଲିଛନ୍ତି, ଚାଲିଛନ୍ତି- ଲକ୍ଷ୍ୟସ୍ଥଳକୁ । ଯେତେ ଚାଲୁଛନ୍ତି ସେତେ ପଥ ରହିଯାଉଛି ବାକି ତାଙ୍କର । ଅଧ୍ୟୟନ, ଅଧ୍ୟବସାୟ, ସାହିତ୍ୟ, ସଂସ୍କୃତି ଭିତରେ ଡଃ ପଟ୍ଟନାୟକଙ୍କର ଜୀବନର ଗତି । ବାସ୍ତବିକ୍ ତାଙ୍କ କର୍ମଧାରାର ତୁଳନା ନାହିଁ । ଏବେ ବି ଏ ବୟସରେ ଯେ ଡଃ ପଟ୍ଟନାୟକଙ୍କ କାର୍ଯ୍ୟାବଳୀକୁ ଦେଖିବ ସେ ନିଶ୍ଚୟ ବିସ୍ମିତ ହେବ । ଅବସର ନେଲାପରେ ବି ପୂର୍ବପରି କର୍ମତତ୍ପର । କର୍ମ ହିଁ ଈଶ୍ୱର ବୋଲି ତାଙ୍କର ବିଶ୍ୱାସ । ଶିକ୍ଷାଦାନ ଏକ ପବିତ୍ର କାର୍ଯ୍ୟ । ସ୍ନାତକୋତ୍ତର ଡିଗ୍ରି ପରେ ଦେବୀବାବୁ ଶିକ୍ଷାଦାନକୁ ନିଜ ଜୀବନର କର୍ତ୍ତବ୍ୟ ଭାବରେ ଗ୍ରହଣ କରି ବିଶ୍ୱଭାରତୀ ଶାନ୍ତିନିକେତନଠାରେ ଓଡ଼ିଆ ଭାଷା, ସାହିତ୍ୟ ବିଭାଗର ଅଧ୍ୟାପକ ଭାବରେ ଯୋଗଦେଲେ । ତାଙ୍କର ଶିକ୍ଷାଦାନ ପ୍ରଣାଳୀ, ଛାତ୍ର, ଛାତ୍ରୀମାନଙ୍କ ସହ ସମ୍ପର୍କ ଦୃଷ୍ଟିରୁ ଜଣେ ସଫଳ, ପ୍ରବୀଣ ଅଧ୍ୟାପକ ଭାବରେ ଦେବୀବାବୁ ଯଥେଷ୍ଟ ଶ୍ରଦ୍ଧା ଓ ସମ୍ମାନର ଅଧିକାରୀ । ୧୯୫୩ରୁ ୧୯୬୪ ମସିହା ପର୍ଯ୍ୟନ୍ତ ତାଙ୍କର କର୍ମକ୍ଷେତ୍ର ଥିଲା ଶାନ୍ତିନିକେତନ । ଏହି ସମୟ ମଧ୍ୟରେ ଦେବୀପ୍ରସନ୍ନବାବୁ ବିଭିନ୍ନ ଦିଗରୁ ସାଫଲ୍ୟମଣ୍ଡିତ ହୋଇଛନ୍ତି । ଏହି ଶାନ୍ତିନିକେତନ ତାଙ୍କ କର୍ମମୟ ଜୀବନର କେବଳ ଶୁଭାରମ୍ଭ କଲା ତାହା ନୁହେଁ; ଏହି ଶୁଭଭିତ୍ତି ଭବିଷ୍ୟତ ଗଠନ ପାଇଁ ପଥନିର୍ଦ୍ଦେଶ କଲା । ୧୯୬୪-୧୯୬୯ ପର୍ଯ୍ୟନ୍ତ ସେ ଚିଫ୍ ଲିଙ୍ଗୁଇଷ୍ଟିକ୍ ଆମେରିକାନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଇଣ୍ଡିଆନ୍ ଷ୍ଟଡ଼ିଜ୍‌ରେ ଯୋଗଦେଇ ନିଜର ଗବେଷଣାଲବ୍ଧ ଜ୍ଞାନକୁ ଉପଯୋଗ କଲେ । ନିଷ୍ଠା, କର୍ତ୍ତବ୍ୟ, ପରିଶ୍ରମ କେବେ ବ୍ୟର୍ଥ ହୁଏ ନାହିଁ । ତାହା ପ୍ରମାଣିତ ହୋଇଛି ଡଃ ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ଜୀବନରେ । ମହୀଶୂରଠାରେ ଥିବା ଭାରତ ସରକାରଙ୍କ ସେଣ୍ଟ୍ରାଲ୍ ଇଷ୍ଟୋ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଇଣ୍ଡିଆନ୍ ଲାଙ୍ଗୁଏଜ୍ (Central Institute of Indian Language, Govt. of India)ର ପ୍ରତିଷ୍ଠାତା ନିର୍ଦ୍ଦେଶକ ଭାବରେ ୧୯୬୯ ମସିହାରେ ସେ ଯୋଗଦେଲେ । ଏହି କେନ୍ଦ୍ରର ପ୍ରଥମ ନିର୍ଦ୍ଦେଶକ ଭାବରେ ଦେବୀବାବୁ ଯେଉଁ ପରମ୍ପରା ସୃଷ୍ଟି କରିଛନ୍ତି, ତାହା କେନ୍ଦ୍ରର ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇଛି । ଏହି କେନ୍ଦ୍ର ଆଜି ସର୍ବଭାରତୀୟ ସ୍ତରରେ ଯେଉଁ ଖ୍ୟାତି ଲାଭ କରିଛି, ତାହା ଡଃ ପଟ୍ଟନାୟକଙ୍କର ନିରନ୍ତର ଚେଷ୍ଟା, ଉଦ୍ୟମର ଫଳ । ସ୍ୱକୀୟ ଦୃଷ୍ଟିଭଙ୍ଗୀ, ମୌଳିକ ଚିନ୍ତା, ନିଜର ଅଗାଧ ଜ୍ଞାନ, ବ୍ୟାପକ

ଦୂରଦୃଷ୍ଟିରେ ନୂତନ ରୂପ ନେଲା- ''କେନ୍ଦ୍ରୀୟ ଭାରତୀୟ ଭାଷା ପ୍ରତିଷ୍ଠା, ମହୀଶୂର''। କର୍ଣ୍ଣାଟକ, ମହୀଶୂରରେ ଦେବୀବାବୁଙ୍କ କାର୍ଯ୍ୟଦକ୍ଷତା, ଜନସ୍ୱୀକୃତି ପାଇଛି। ଓଡ଼ିଶାର ଯେକୌଣସି ଲୋକ ଏଥିନେଇ ଗର୍ବ କରିବ- ଏଥିରେ ସନ୍ଦେହ ନାହିଁ। ନିଜର ସମସ୍ତ ଶକ୍ତିର ଉପଯୋଗରେ ନିର୍ମିତ ଏହି ଐତିହାସିକ ଅନୁଷ୍ଠାନକୁ ଜାତୀୟ ସ୍ୱୀକୃତି ପ୍ରଦାନ କରିବାରେ ଦେବୀବାବୁଙ୍କ ଭୂମିକା ଅବର୍ଣ୍ଣନୀୟ। ଦୀର୍ଘ କୋଡ଼ିଏ ବର୍ଷକାଳ ଏହି ଅନୁଷ୍ଠାନ ସହିତ ସମ୍ମିଳିତ ହୋଇ କାର୍ଯ୍ୟ କରୁଥିବା ଭାରତବର୍ଷର ବିଶିଷ୍ଟ ଭାଷାବିଜ୍ଞାନୀ ଡଃ ଦେବୀପ୍ରସନ୍ନ ପଟ୍ଟନାୟକ ୧୯୮୯ ଜୁଲାଇ ମାସରେ ଅବସର ଗ୍ରହଣ କଲେ। ପୁଣି ଅବସର ସମୟକୁ ସେ କେବଳ ଭାଷା ପ୍ରତିଷ୍ଠାନର ନିର୍ଦ୍ଦେଶକ ଥିଲେ ତାହା ନୁହେଁ, ସେ ଏହି ସମୟରେ ଡଃ ପଟ୍ଟନାୟକ ଅତିରିକ୍ତ ଶାସନ ସଚିବ ଭାବରେ ଭାରତ ସରକାରଙ୍କର ଶିକ୍ଷା ବିଭାଗରେ (ମାନବ ସମ୍ବଳ ବିଭାଗ) କାର୍ଯ୍ୟ କରୁଥିଲେ। ଏହା ବ୍ୟତୀତ ବହୁ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ମଧ୍ୟ ସେ ସମ୍ପାଦନ କରି ସମସ୍ତଙ୍କର ପ୍ରିୟଭାଜନ ହୋଇଛନ୍ତି। Secretary, Treasurer, Indian Institute of Applied Language Science, ମହୀଶୂରର ନିର୍ଦ୍ଦେଶକ, ଭାଷା ବିଜ୍ଞାନ ପ୍ରତିଷ୍ଠାନ ଭୁବନେଶ୍ୱର, ଡେକାନ୍ କଲେଜ ପୁନାର ଲିଙ୍ଗୁଇଷ୍ଟିକ୍ ପ୍ରଫେସର ଭାବରେ, ବିଶ୍ୱଭାରତୀ ଶାନ୍ତିନିକେତନର ଓଡ଼ିଆ ବିଭାଗ ପାଠ୍ୟକ୍ରମର ସଭ୍ୟ ଭାବରେ କାର୍ଯ୍ୟ କରି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ।

### ସୃଷ୍ଟିରେ ପରମ ତୃପ୍ତି :

ସାହିତ୍ୟ ସୃଷ୍ଟି କରିବା ପାଇଁ ଡଃ ଦେବୀପ୍ରସନ୍ନ ଚିନ୍ତା କରି ସାହିତ୍ୟ ଲେଖିନାହାନ୍ତି, ପରିସ୍ଥିତି, ପରିବେଶ ତାଙ୍କୁ ସାହିତ୍ୟ ରଚନା ପାଇଁ ପ୍ରେରଣା, ପ୍ରୋତ୍ସାହନ ଯୋଗାଇଛି। ସରସ୍ୱତୀଙ୍କର ସେବା କରିବା ସହ ସାହିତ୍ୟ ପ୍ରତି ତାଙ୍କର ସଂକଳ୍ପକୁ ସାକାର କରାଇବା ପାଇଁ ସାଧନା ଅବ୍ୟାହତ ରଖିଛନ୍ତି। ସେ କେଉଁ ପରିସ୍ଥିତିରେ ସାହିତ୍ୟ ପ୍ରତି ଆକୃଷ୍ଟ ହେଲେ ସେ ସମ୍ପର୍କରେ କହିବାକୁ ଯାଇ ଯଥାର୍ଥରେ ଲେଖିଛନ୍ତି- ''ମୁଁ ଛାତ୍ର ଅବସ୍ଥାରେ ସମାଜବାଦୀ ଆନ୍ଦୋଳନରେ ସକ୍ରିୟ ଭାବେ କାମ କରୁଥିବା ବେଳେ ସମ୍ଭବତଃ ଲେଖିବାର କାରଣ ଥିଲା ସମସାମୟିକମାନଙ୍କ ଭିତରେ ଆପଣାକୁ ଅଲଗା କରି ଦେଖିବା ଓ ଦେଖେଇବା। ୧୯୩୩ରେ ଜବାହରଲାଲ୍ ଲେଖିଥିବା "Whether Socialism"ର ଅନୁବାଦ ''ସମାଜବାଦ କୁଆଡ଼େ'' 'କୃଷକ'ରେ ଛପାଇଥିଲି। ୧୯୩୩ର ଜବାହରଲାଲ ଓ ୧୯୪୭ର ଜବାହରଲାଲଙ୍କ ଭିତରେ ଫରକ ଦେଖିବା ପାଇଁ ମତେ ଅଧିକ

ସମୟ ଲାଗିଲା ନାହିଁ।'' ପୁଣି ତାଙ୍କ ଲେଖକ ଜୀବନର ଆଦ୍ୟକଥାକୁ ମନେପକାଇ ସେ ଲେଖିଛନ୍ତି- ''ପ୍ରବୋଧ ବାଗ୍‌ଚୀଙ୍କଠାରୁ ପ୍ରିୟରଞ୍ଜନ ସେନ୍‌ଙ୍କ ଜରିଆରେ ଗୋଦାବରୀଶ ମହାପାତ୍ରଙ୍କୁ ଦିଆଯାଇଥିବା ଖବର ମୋର ପ୍ରିୟ ଶିକ୍ଷକ ଗୌରୀ କୁମାର ବ୍ରହ୍ମାଙ୍କଠାରୁ ପାଇ ଶାନ୍ତିନିକେତନ ଗଲି। ମୁଁ ତଟକା ଏମ୍.ଏ. ପାଶ୍ କରିଛି। ଏମ୍.ଏ. ଦ୍ୱିତୀୟ ବର୍ଷ ପିଲାଙ୍କୁ ପଢ଼େଇବା ଯେ କେତେ ଚାଲେଞ୍ଜ୍ ଏକଥା ସହଜେ କହିହେବ ନାହିଁ। ପାଠପଢ଼ାରେ କ୍ଲାସ୍‌ଠାରୁ ଦିନକ ଆଗରେ ରହିବା ଯଥେଷ୍ଟ ନୁହେଁ। ଆପଣା ଅସ୍ମିତାକୁ ରୂପଦେବା ଦରକାର। ଭାରତୀୟ ଭାଷା, ଶିକ୍ଷକମାନଙ୍କର ନିମ୍ନ ମାନରୁ ଉପରକୁ ଉଠିବାକୁ ହେଲେ ଓଡ଼ିଆ ଓ ଇଂରାଜୀ ଉଭୟ ଭାଷାରେ ଲେଖିବାକୁ ସ୍ଥିର କଲି। All India Oriental Conference ଓ Pen ପାଇଁ ଇଂରାଜୀ ଲେଖା ଓଡ଼ିଶା ବାହାରେ ଥିବା ଓଡ଼ିଆ ଅଧ୍ୟାପକଙ୍କର ସମ୍ମାନ ପ୍ରତିଷ୍ଠା ପାଇଁ ଓଡ଼ିଆ ଲେଖା। ୧୯୫୩ରେ 'କବିଲିପି' ଓଡ଼ିଆରେ ପ୍ରଥମ ପତ୍ର ସାହିତ୍ୟ ବହି।'' ଓଡ଼ିଆ ଭାଷା ବିଜ୍ଞାନ କ୍ଷେତ୍ରରେ ଥିବା ଅଭାବକୁ ସେ ମର୍ମେ ମର୍ମେ ଉପଲବ୍ଧି କଲେ। ନୂତନ ଗବେଷଣାତ୍ମକ ସୃଷ୍ଟିର କାର୍ଯ୍ୟ ନେଇ ଭାଷା ବିଜ୍ଞାନ କ୍ଷେତ୍ରରେ ନୂତନ ନୂତନ ଗ୍ରନ୍ଥ ସୃଷ୍ଟି କରିବା ପାଇଁ ସ୍ଥିର କରି କାର୍ଯ୍ୟ ଆରମ୍ଭ କଲେ। ୧୯୬୪ରେ ଭାଷା ବିଜ୍ଞାନରେ ପିଏଚ୍.ଡି. କରି ଆମେରିକାରୁ ଫେରିଲି। ଭାଷା ବିଜ୍ଞାନ କ୍ଷେତ୍ରରେ ଆପଣାର ପ୍ରତିଷ୍ଠା ପ୍ରୟୋଜନ। ମୋର ଗୋଟିଏ ପଟେ ସାହିତ୍ୟିକ ପ୍ରବନ୍ଧ ଓ ଅନ୍ୟପଟେ ଓଡ଼ିଆ, ଇଂରାଜୀରେ ଭାଷା ବିଜ୍ଞାନ ପ୍ରବନ୍ଧ। ଯେ ଲେଖା ନୂଆ ସୁଆଦର ହେବା ମୋର ଲକ୍ଷ୍ୟ। 'ସାହିତ୍ୟ ବୀକ୍ଷା'ରେ ବାହାରିଥିବା ମୋର ଓଡ଼ିଆ ସାହିତ୍ୟିକ ପ୍ରବନ୍ଧ ଯେ ଭିନ୍ନ ଧରଣର; ଏକଥା ଓଡ଼ିଆ ଅଧ୍ୟାପକ ଓ ଛାତ୍ରମାନେ ମାନିବେ ବୋଲି ମୋର ଆଶା। ୧୯୬୪ରେ ପ୍ରେସ୍‌କୁ ନିଆଯାଇଥିବା "Introduction to Applied Linguistics" ଏହି ବିଷୟରେ ସେକାଳର ପ୍ରଥମ ବହି।'' କେବଳ ଭାଷା ବିଜ୍ଞାନ ରଚନା ନୁହେଁ- ଶିଶୁସାହିତ୍ୟ ପ୍ରଭୃତି ଲୋକପ୍ରିୟ ଲେଖା ଲେଖିବା ପାଇଁ ସେ ଅନୁରୋଧ ପାଇଲେ। ଯାହା ଫଳରେ ଭିନ୍ନ ସ୍ୱାଦର ସୃଷ୍ଟି କରିବା ପାଇଁ ସେ ପ୍ରୟାସ କଲେ- ''୧୯୬୪ରେ ଚାକିରି ଘେନି ମୁଁ ପୁନା ଯାଏ। ସେଠି ଦେଖେ ବମ୍ବେର ଧୀରେନ୍ ଦାଶ ହାତଲେଖା 'କୁଙ୍କୁମ' ପତ୍ରିକା ବାହାର କରୁଥା'ନ୍ତି। ତାଙ୍କର ସନିର୍ବନ୍ଧ ଅନୁରୋଧରେ ମୁଁ ପିଲାଙ୍କ ଲେଖା ଲେଖିବାକୁ ଆରମ୍ଭ କଲି। ଏହା ନିବୃତ୍ତା ଆନନ୍ଦର ଲେଖା। ଅତିଶୀଘ୍ର ପୁନାର ବୁଦ୍ଧିଜୀବୀ ମହଲରେ ସ୍ୱୀକୃତି ମିଳିଲା। ସେଥିପାଇଁ ଲେଖିବା ପ୍ରୟୋଜନ। ଆମେରିକା ଯୁବ ଆନ୍ଦୋଳନ ସପକ୍ଷରେ ମୋର ଲେଖା ବେଶ୍ ଆଲୋଡ଼ନ ସୃଷ୍ଟି କରିଥିଲା।''

'କବିଲିପି' ସମାଲୋଚନା ଗ୍ରନ୍ଥ ରଚନା କରି ଦେବୀପ୍ରସନ୍ନବାବୁ ନିଜ ଉଜ୍ଜ୍ୱଳ ସାରସ୍ୱତ ପ୍ରତିଭାର ପରିଚୟ ଦେଇଥିଲେ । 'କବିଲିପି' ଓଡ଼ିଆ ସାହିତ୍ୟରେ ଆଜି ପର୍ଯ୍ୟନ୍ତ ଅନତିକ୍ରମ୍ୟ ହୋଇ ରହିଛି । ସେହିପରି 'ସାହିତ୍ୟ ବୀକ୍ଷା' ମଧ୍ୟ ତାଙ୍କର ମୌଳିକ ଦୃଷ୍ଟିଭଙ୍ଗୀ ଓ ଉଚ୍ଚକୋଟୀର ଗବେଷଣା ମନୋବୃତ୍ତିର ସୂଚନା ପ୍ରଦାନ କରେ । ''ଓଡ଼ିଆ ଭାଷା ଓ ଭାଷା ବିଜ୍ଞାନ'' ଓଡ଼ିଆ ସାହିତ୍ୟର ଅମୂଲ୍ୟ ସୃଷ୍ଟି । କନ୍ନଡ଼ ବଚନରୁ (ଶୈବ୍ୟ ସାହିତ୍ୟ) ଓଡ଼ିଆ ଅନୁବାଦ ସେ କରିଛନ୍ତି । ତାହା ବଚନ ଗିତିକା ଗ୍ରନ୍ଥ ରୂପେ ପ୍ରକାଶିତ ହୋଇଛି । ଏତଦ୍‌ବ୍ୟତୀତ ସେ ଅନେକ ଲଘୁକଥା ରଚନା କରି ଅଜସ୍ର ପାଠକୀୟ ସ୍ୱୀକୃତି ଲାଭ କରିଛନ୍ତି । ''କିସ ପୁଣି ଦେଖା ନଯାଏ'' ଓ ''ଲଘୁକଥା'' ଗ୍ରନ୍ଥ ଦୁଇଟି ମଧ୍ୟ ତାଙ୍କ ରଚିତ ଅନେକ ଲଘୁକଥାର ଅପୂର୍ବ ସମାହାର । ଏ ରଚନା ସମ୍ପର୍କରେ ସେ କହିଛନ୍ତି- ''ସମାଜରେ ଯେତେ ଗଣ୍ଡିଆ, ପୋଚରା ବିଚାର ଦେଖିବାକୁ ମିଳେ, ତାକୁ ସଫା କରିବା ପାଇଁ 'ଲଘୁକଥା' ମୋର ପ୍ରଧାନ ଅସ୍ତ୍ର ।'' ''ଅନୁପଯୁକ୍ତ ଭାଷା ବିଜ୍ଞାନ'' ତାଙ୍କର ଏକ ସାର୍ଥକ କୃତି । ''ଶିକ୍ଷା ସନ୍ଧାନ'' ତାଙ୍କର ସଦ୍ୟତମ ପ୍ରକାଶନ । ଏତଦ୍‌ବ୍ୟତୀତ ସେ ବହୁ ଉଚ୍ଚ ମାନର ଇଂରାଜୀ ଗ୍ରନ୍ଥ ରଚନା କରି ଜାତୀୟ ସ୍ତରରେ ବହୁ ସୁନାମ ଅର୍ଜନ କରିଛନ୍ତି । "A controlled Historical Reconstruction of Oriya, Assamese, Bengali and Hindi," "A monograph of Kumaoni language," "Aspects of Applied Linguistics," "An Advance Hindi Reader," "An Introduction to the Reading and Writting to Oriya," "Indian Languages Bibliography of Grammars," "Dictionaries and Teaching Materials," "Language curriculum", "Advanced Tamil Reader", "An Introduction to Tamil Script," "Reading and Writting," "Multi Lingualism and Mothertongue Education," "Language and Social Issues," "Multilingualism in India", "Language Education and Culture" ପ୍ରଭୃତି ବହୁ ଉପାଦେୟ ଗ୍ରନ୍ଥ ରଚନା କରି ଡଃ ପଟ୍ଟନାୟକ ବହୁ ସମ୍ମାନର ଅଧିକାରୀ ହୋଇଛନ୍ତି । ତାଙ୍କର ଲେଖିବା ପ୍ରେରଣା ଗୋଟିଏ ନୁହେଁ ଅନେକ, ଏକାଧିକ । ତାହା ସେ ନିଜେ ମଧ୍ୟ ସ୍ୱୀକାର କରିଛନ୍ତି- ''ମୋଟ ଉପରେ ମୋ' ପରି ଲୋକଙ୍କ ପାଇଁ ଲେଖିବାର ପ୍ରେରଣା ଏକ ନୁହେଁ, ଏକାଧିକ ।'' ସେ ପୁଣି Papers in Indian Socio-Linguistics, (Central Institute of Indian Languages, Mysore), ଓ New Language Planning News Letter ର ସୁଯୋଗ୍ୟ ସମ୍ପାଦକ ଭାବରେ ଆମ ନିକଟରେ ପରିଚିତ ।

**ବ୍ୟକ୍ତି ନୁହନ୍ତି, ଅନୁଷ୍ଠାନ :**

ଡଃ ଦେବୀପ୍ରସନ୍ନ ପଟ୍ଟନାୟକ ସମ୍ପ୍ରତି ସେ ଜଣେ ବ୍ୟକ୍ତି ନୁହନ୍ତି । ସେ ଆଜି ଏକ ଅନୁଷ୍ଠାନ, ଜାତୀୟ ଅନୁଷ୍ଠାନରେ ପରିଣତ ହୋଇଛନ୍ତି । ଜାତୀୟ, ଆନ୍ତର୍ଜାତୀୟ, ରାଜ୍ୟସ୍ତରୀୟ ବହୁ ପ୍ରତିଷ୍ଠିତ ଅନୁଷ୍ଠାନର ସେ କର୍ମକର୍ତ୍ତା ହେବା ସହ ଦାୟିତ୍ୱ ବରଣ କରି କାର୍ଯ୍ୟ ସମ୍ପାଦନ କରି ପ୍ରଶଂସାର ପାତ୍ର ହୋଇଛନ୍ତି । ଲେକ୍ସିକୋଗ୍ରାଫର୍ସ ଆସୋସିଏସନ୍ ଅଫ୍ ଇଣ୍ଡିଆ, (Lexicographers Association of India) (୧୯୭୫-୮୦) ଲିଙ୍ଗୁଇଷ୍ଟିକ୍ ସୋସାଇଟି ଅଫ୍ ଇଣ୍ଡିଆର (Linguistic Society of India, 1976-78) ଫୋନେଟିକ୍ ସୋସାଇଟି ଅଫ୍ ଇଣ୍ଡିଆ (୧୯୮୮-୧୯୯୦), (Phonetic Society of India) ଇଣ୍ଡିଆନ୍ କାଉନ୍ସିଲ୍ ଅଫ୍ କମ୍ୟୁନିକେସନ୍ ଟ୍ରେନିଂ ଏଣ୍ଡ୍ ରିସର୍ଚ୍ଚ (Indian Council of Communication Training and Research-1986, ସେମିଓଟିକ୍ ସର୍କଲ ଅଫ୍ ମହୀଶୂର, Semi atic circle of Mysore, ଇଣ୍ଡିଆନ୍ ଏକାଡ଼େମୀ ଅଫ୍ ସୋସିଆଲ୍ ସାଇନ୍ସ- ୧୯୮୮ (Indian Academy of Social Sciences), ନେସ୍ନାଲ୍ ବୁକ୍ ଟ୍ରଷ୍ଟ-୧୯୮୭ (National Book Trust) ୱାନ୍ ମ୍ୟାନ୍ କମିଶନ୍, (ଆସାମ ସରକାରଙ୍କ ଦ୍ୱାରା ନିଯୁକ୍ତ କମିଟି) ନିଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମେଳନଶୀଳ ପ୍ରଭୃତିର ସଭାପତି ପଦ ମଣ୍ଡନ କରିବା ସହିତ ବହୁ ଗୁରୁତ୍ୱପୂର୍ଣ୍ଣ କମିଟି ଯଥା କେନ୍ଦ୍ର ଯୋଜନା କମିଶନର ଭାଷା ବିକାଶ, ପୁସ୍ତକ ପ୍ରଣୟନ, ପ୍ରକାଶନର ଓ ପଞ୍ଚମ ବାର୍ଷିକ ଶିକ୍ଷା ଯୋଜନାର ଷ୍ଟିଅରିଂ କମିଟି- ୧୯୭୫, ବିଶ୍ୱବିଦ୍ୟାଳୟ ମଞ୍ଜୁରି ଆୟୋଗ, (ଭାଷା ଓ ଭାଷାତତ୍ତ୍ୱ- ୧୯୭୫), ବୋର୍ଡ଼ ଅଫ୍ ଗଭର୍ଣ୍ଣର ସେଣ୍ଟ୍ରାଲ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଇଂଲିଶ୍ ଏଣ୍ଡ୍ ଫରେନ୍ ଲାଙ୍ଗୁଏଜ୍‌ସ, ହାଇଦ୍ରାବାଦ (୧୯୭୦-୧୯୭୬), ଭାରତୀୟ ଜ୍ଞାନପୀଠ କେନ୍ଦ୍ରୀୟ ପୁରସ୍କାର କମିଟି, ଇଣ୍ଟରନେସ୍ନାଲ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ତେଲୁଗୁ (୧୯୭୫), ଇଣ୍ଟରନେସ୍ନାଲ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ତାମିଲ୍ ଷ୍ଟଡ଼ିଜ୍ (୧୯୭୬), କେନ୍ଦ୍ରୀୟ ହିନ୍ଦୀ ସମିତି ପ୍ରଭୃତି ବହୁ ଗୁରୁତ୍ୱପୂର୍ଣ୍ଣ କମିଟିର ସଭ୍ୟ ହୋଇ ଓଡ଼ିଶାର ମାନବୃଦ୍ଧିରେ ସହାୟକ ହୋଇଛନ୍ତି । ସେହିପରି ଡଃ ପଟ୍ଟନାୟକ ବହୁ ଜାତୀୟ, ଅନ୍ତର୍ଜାତୀୟ ସେମିନାର, ସମ୍ମିଳନୀରେ ଯୋଗଦେବା ସହିତ ଉଦ୍‌ବୋଧନ ଓ ଭିତ୍ତିପତ୍ର ପ୍ରଦାନ କରି ସମ୍ମାନର ଅଧିକାରୀ ହୋଇଛନ୍ତି । Conference on Linguistic and Cultural Diversity, Government of Canada, UNBSCO, ପ୍ୟାରିସ୍, ୧୯୭୧, IX International congress of Anthropological and Ethnolosical Science ଚିକାଗୋ ୧୯୭୬,

VII, World Congress of Sociology, ଟରୋନଟ୍, କାନାଡ଼ା ୧୯୭୮, Chairman, UNESCO Workshop on problems relating to the Language of Instruction in multilingual countries in Asia. and the pacific, ମହୀଶୂର- ୧୯୮୦, North London Community Group, ଲଣ୍ଡନ- ୧୯୮୫ରେ ଯୋଗଦେଇ ଉଦ୍‌ବୋଧନ ଓ ଭିତ୍ତିପତ୍ର ମଧ୍ୟ ପ୍ରଦାନ କରି ନିଜର କୃତିତ୍ୱ ପ୍ରମାଣ କରିଛନ୍ତି । ସେହିପରି National Seminar on Ritualistic theatre, Mangalore 1986 ଓ କେନ୍ଦ୍ର ସାହିତ୍ୟ ଏକାଡ଼େମୀର ଗୋଆ ଠାରେ ୧୯୮୬ରେ ଅନୁଷ୍ଠିତ ଅନୁବାଦ ସମ୍ପର୍କୀୟ ସେମିନାରକୁ ସେ ଉଦ୍‌ଘାଟନ କରିବାର ସୌଭାଗ୍ୟ ଅର୍ଜନ କରିଥିଲେ । ମସ୍କୋଠାରେ ଅନୁଷ୍ଠିତ 'ଭାରତୀୟ ଉତ୍ସବ'ରେ ଯୋଗଦେବା ପାଇଁ ଭାଷାବିତ୍ ଓ ସାହିତ୍ୟିକମାନଙ୍କର ନେତୃତ୍ୱ ସେ ନେଇଥିଲେ । ପୃଥିବୀର ବହୁ ରାଷ୍ଟ୍ର ବେଲ୍‌ଜିୟମ୍, ବର୍ମା, କାନାଡ଼ା, ଡେନ୍‌ମାର୍କ, ଫିନ୍‌ଲାଣ୍ଡ, ଫ୍ରାନ୍ସ, ଜର୍ମାନୀ, ଗାଏନା, ହଂକଂ, ଇରାନ୍, ଇରାକ୍, ଇଟାଲି, ଜାପାନ, ଯୋର୍ଡାନ୍, ଲେବାନନ୍, ମାଲୟେସିଆ, ନେପାଳ, ନାଗ୍ରୋ, ସିଙ୍ଗାପୁର, ଦକ୍ଷିଣ ଆଫ୍ରିକା, ଶ୍ରୀଲଙ୍କା, ସୁଦାନ, ସୁଇଡ଼େନ୍, ସୁଇଜରଲାଣ୍ଡ, ତାଇୱାନ୍, ଥାଇଲାଣ୍ଡ, ଥ୍ରୀଲାଣ୍ଡ, ତୁର୍କୀ, ୟୁକେ, ଆମେରିକା, ଇଂଲଣ୍ଡ ପ୍ରଭୃତି ଦେଶକୁ ଡଃ ପଟ୍ଟନାୟକ ଗସ୍ତ କରି ଭାବ ବିନିମୟ କରି ଭାରତୀୟ ଶିକ୍ଷା, ସଂସ୍କୃତିର ବୈଶିଷ୍ଟ୍ୟ ପ୍ରତିପାଦନ କରିଛନ୍ତି ।

**ସମ୍ମାନ ଓ ସ୍ୱୀକୃତି :**

ଡଃ ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ଅନନ୍ୟ ପ୍ରତିଭା ବହୁ ପ୍ରଶଂସିତ ହୋଇଛି । ସେ ସମ୍ମାନିତ ହୋଇଛନ୍ତି । ଅନବଦ୍ୟ ଅବଦାନ ପାଇଁ ତାଙ୍କୁ ବହୁ ପ୍ରତିଷ୍ଠିତ ଅନୁଷ୍ଠାନ ଅଭିନନ୍ଦିତ କରି ଗୌରବାନ୍ୱିତ ହୋଇଛନ୍ତି । ଡଃ ପଟ୍ଟନାୟକଙ୍କ ନିଷ୍ଠା, ତ୍ୟାଗ, ସ୍ୱୀକୃତି ପାଇଛି । ୧୯୮୭ ମସିହାରେ ଭାରତର ରାଷ୍ଟ୍ରପତି ତାଙ୍କର ମହାନ୍ ଅବଦାନ ପାଇଁ 'ପଦ୍ମଶ୍ରୀ' ଉପାଧି ପ୍ରଦାନ କରି ଜାତୀୟ ସ୍ତରରେ ସମ୍ମାନିତ କରିଛନ୍ତି । 'ସମ୍ମାନ'- ଆସାମ ସାହିତ୍ୟ ସଭା ୧୯୮୨ରେ, ''ଦେଶର ସମ୍ମାନ'- ହିମାଚଳ ପ୍ରଦେଶ ୧୯୯୫ରେ, 'ସମ୍ମାନ'- ଲିଙ୍ଗୁଇଷ୍ଟିକ୍ ସୋସାଇଟି ଅଫ୍ ଇଣ୍ଡିଆ ୧୯୯୪, ସମ୍ମାନ- କେନ୍ଦ୍ରୀୟ ଲଳିତକଳା ଏକାଡ଼େମୀ ୧୯୯୩, ଜବାହରଲାଲ ସାହିତ୍ୟ ପୁରସ୍କାର- ୧୯୯୮ ପ୍ରଭୃତି ଦେବୀବାବୁ ଗ୍ରହଣ କରି ଓଡ଼ିଶାକୁ ଗୌରବାନ୍ୱିତ କରିଛନ୍ତି । ୧୯୮୩ ରୁ ୧୯୮୪ ଜବାହରଲାଲ ନେହେରୁ ଫେଲୋ ସହ କଟକ କଳାବିକାଶ କେନ୍ଦ୍ରର ପ୍ରତିଭା ପୁରସ୍କାର- ୧୯୮୭ । ୧୯୯୬ରେ ବିଷୁବ ମିଳନ ସମ୍ମାନ, ୧୯୯୭ରେ କ୍ଷେତ୍ରବାସୀ ବିଦ୍ୟା ପୁରସ୍କାର, ୧୯୯୮ରେ

ନନ୍ଦିଘୋଷ, ୧୯୮୭ରେ ଇନ୍ଦିରା ଏକାଡ଼େମୀ ଭୁବନେଶ୍ୱର ଦ୍ୱାରା ସମ୍ମାନିତ ହୋଇଛନ୍ତି । ସେ ପ୍ରତିଭାଧର ବ୍ୟକ୍ତିଙ୍କ କୃତି ଓ କୀର୍ତ୍ତିକୁ ପୁରସ୍କାର, ସମ୍ମାନରେ କଳନା କରାଯାଇ ପାରିବ ନାହିଁ ସତ, କିନ୍ତୁ ଏହା ପ୍ରଦାନ କରି ସାରସ୍ୱତ ଧାରାକୁ ସମୃଦ୍ଧ କରାଯାଇଛି । ସାହିତ୍ୟ, ସଂସ୍କୃତିର ଜୟଗାନ ହୋଇଛି ।

## ସାହିତ୍ୟ ଓ ସଙ୍ଗୀତର ସୁନ୍ଦର ମନ୍ଦିର :

ସାହିତ୍ୟ ଓ ସଙ୍ଗୀତ ସହିତ ମଣିଷର ସମ୍ପର୍କ ନିବିଡ଼ । ସାହିତ୍ୟ ଭିତରେ ସମାଜର ରୂପକୁ ଦେଖିଲାବେଳେ, ସଙ୍ଗୀତର ମୂର୍ଚ୍ଛନା ମଧ୍ୟରେ ଜୀବନର ମାଧୁର୍ଯ୍ୟକୁ ଉପଲବ୍ଧି କରିହୁଏ । ସାହିତ୍ୟ ଓ ସଙ୍ଗୀତ ମଣିଷ ଜୀବନର କଳାତ୍ମକ ବିଭବ । ସତରେ, ପୁଣି ସାହିତ୍ୟ, ସଙ୍ଗୀତ ଠିକ୍ ହୋଇଗଲେ ଜୀବନ ସତ୍ୟ, ଶିବ, ସୁନ୍ଦରରେ ପରିଣତ ହୁଏ । ଡଃ ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ପରିବାର ଯଥାର୍ଥରେ ସାହିତ୍ୟ ସଙ୍ଗୀତର ସୁନ୍ଦର ମନ୍ଦିର । ସେଠାରେ ସାହିତ୍ୟକୁ ପଢ଼ିହୁଏ, ସଙ୍ଗୀତକୁ ଶୁଣିହୁଏ । ଦେବୀପ୍ରସନ୍ନବାବୁଙ୍କ ସାହିତ୍ୟିକ ପ୍ରତିଭା ଆମେ ଆଲୋଚନା କରିଛେ; କିନ୍ତୁ ତାଙ୍କ ପତ୍ନୀ ସୁଲକ୍ଷଣା ପଟ୍ଟନାୟକ ସଙ୍ଗୀତ ଜଗତର ଜଣେ ସ୍ୱନାମଧନ୍ୟା କଣ୍ଠଶିଳ୍ପୀ । ସଙ୍ଗୀତ ପରିବେଷଣ କ୍ଷେତ୍ରରେ ତାଙ୍କର ସୁଖ୍ୟାତି ରହିଛି । ଦେବୀପ୍ରସନ୍ନଙ୍କ ସହ ସୁଲକ୍ଷଣା ଦେବୀଙ୍କ ବିବାହ ହେବାଦ୍ୱାରା ସାହିତ୍ୟ-ସଙ୍ଗୀତର ମଧୁର ସମନ୍ୱୟ ହେଲା । ସାହିତ୍ୟ-ସଙ୍ଗୀତ ଏକ ହୋଇଗଲେ । ଜୀବନ ଧନ୍ୟ ହୋଇଗଲା । ଏହି ବିବାହ ପ୍ରସଙ୍ଗର ମଧୁର କଥା ମନେପକାଇ ଡଃ ପଟ୍ଟନାୟକ କହିଛନ୍ତି- ''ମୋ ବାହାଘର ଠିକ୍ ହେଲା ଚାନ୍ଦୋଳର ବିଚିତ୍ରାନନ୍ଦ ମହାନ୍ତିଙ୍କ ଝିଅ ସୁଲକ୍ଷଣାଙ୍କ ସହିତ । ସୁଲକ୍ଷଣା କଟକ ରେଡ଼ିଓ ଷ୍ଟେସନର ପ୍ରଥମ କଳାକାର । ସିଏ ଉପେନ୍ଦ୍ର ତ୍ରିପାଠୀ, ଧ୍ରୁବ ସାହୁ, ଭୁବନେଶ୍ୱରୀ ମିଶ୍ର ଓ ବାଳକୃଷ୍ଣ ଦାସଙ୍କ ପାଖରୁ ଗୀତ ଶିଖିଥିଲେ । ସବୁଠାରୁ ବଡ଼ ସୌଭାଗ୍ୟ ଥିଲା କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ସାନ୍ନିଧ୍ୟ । ବିଚିତ୍ରାନନ୍ଦବାବୁଙ୍କର କାଳୀବାବୁଙ୍କ ସହିତ ଭଲ ସମ୍ପର୍କ ଥିଲା । ବାହାଘର (୧୯୫୫)ରେ ତାଙ୍କ ମାମୁ ନଟବର ଦାସଙ୍କ ସହ ପରିଚୟ ହେଲା । ସେ ବାଳକୃଷ୍ଣ କରଙ୍କର ଏକାନ୍ତ ବିଶ୍ୱସ୍ତ ଓ 'ମାତୃଭୂମି' କାଗଜର ମ୍ୟାନେଜର । ସୁଲକ୍ଷଣାର ଭାଇ ଖୋକା (ଅକ୍ଷୟ ମହାନ୍ତି) ସେତେବେଳେ ଗୀତ ବୋଲିବା ଆରମ୍ଭ କରିଥା'ନ୍ତି । ଖୋକା ପରେ ଖାଲି ଯେ ସଙ୍ଗୀତରେ ଯୁଗପୁରୁଷ ଭାବେ ପରିଚିତ ହେଲେ ତା' ନୁହେଁ; ଔପନ୍ୟାସିକ, କ୍ଷୁଦ୍ରଗଳ୍ପ ଲେଖକ, ସଙ୍ଗୀତ ନିର୍ଦ୍ଦେଶକ ଭାବରେ ମଧ୍ୟ ସ୍ୱୀକୃତି ପାଇଲେ । ସୁଲକ୍ଷଣା କ୍ଲାସିକାଲ୍ ସଙ୍ଗୀତ, ରବୀନ୍ଦ୍ର ସଙ୍ଗୀତରେ ଶାନ୍ତିନିକେତନରୁ ଡିଗ୍ରୀ ନେଲେ । ଆମେ ମହୀଶୂର ଗଲାପରେ ଆସାମରେ "Sentinal" ପତ୍ରିକାର ସମ୍ପାଦକ ଧୀରେନ୍ ବେଜବୁଆ ତାଙ୍କ ସ୍ତ୍ରୀ ଓ

ପୁଅକୁ ଧରି ପହଞ୍ଚିଲେ । ସେ ରିଜିଓନାଲ୍ କଲେଜର ଇଂରାଜୀ ଅଧ୍ୟାପକ ରୂପେ ଯୋଗଦେଲେ । ତାଙ୍କ ସ୍ତ୍ରୀଙ୍କ ସହଯୋଗରେ ସୁଲକ୍ଷଣା ଦୁଇଟି ରବୀନ୍ଦ୍ର ଗୀତିନାଟ୍ୟ ପରିବେଷଣ କରିଥିଲେ । ଆମେ ମହୀଶୂର ମ୍ୟୁଜିକ୍ ଆସୋସିଏସନ୍‌ର ପ୍ରତିଷ୍ଠାତା ସଭ୍ୟ ହେଲୁ । ମହୀଶୂରକୁ ପ୍ରଥମେ ରବୀନ୍ଦ୍ର ସଙ୍ଗୀତ ଆମେ ନେଲୁ ।''

ଡଃ ପଟ୍ଟନାୟକ ପରିବାରର ପୁଅ ଓ ଝିଅମାନେ ବିଭିନ୍ନ ନିଯୁକ୍ତି ପାଇ ବିଭିନ୍ନ ସ୍ଥାନରେ କର୍ମ କରି ସୁଖରେ ଅଛନ୍ତି । ସେମାନେ ସମାଜର ବିଭିନ୍ନ କ୍ଷେତ୍ରରେ ସୁପ୍ରତିଷ୍ଠିତ । ସେମାନଙ୍କ ସମ୍ପର୍କରେ ସୂଚନା ଦେଇଛନ୍ତି ଦେବୀପ୍ରସନ୍ନବାବୁ- ''ମୋ' ବଡ଼ପୁଅ ଚନ୍ଦ୍ରଭାନୁ ପଟ୍ଟନାୟକ ବାଙ୍ଗାଲୋରରେ ଘରଦୁଆର କରି ରହିଲେଣି । ସେ ପଞ୍ଜାବୀ ବ୍ରାହ୍ମଣଝିଅ ବିଭା ଶର୍ମାଙ୍କୁ ବାହା ହୋଇଛନ୍ତି । ମହୀଶୂରରେ ଗୋଟିଏ କଲେଜରେ ଇଂରାଜୀ ଅଧ୍ୟାପକ ରହିଲାପରେ ସେ ଇନ୍ଦିରା ଗାନ୍ଧି ଖୋଲା ବିଶ୍ୱବିଦ୍ୟାଳୟରେ କମ୍ୟୁନିକେସନ୍ ବିଭାଗରେ ଯୋଗଦେଲେ । ସେଇଠି ବିଭା ଶର୍ମାଙ୍କୁ ଭେଟିଲେ । ବାହା ହେଲେ । କାନାଡ଼ା ଯାଇ ସେଠାରେ ଛଅ ବର୍ଷ କଟାଇଲେ । ସେଠାରୁ ଫେରି ଗୋଟିଏ ଆମେରିକା ବିଶ୍ୱବିଦ୍ୟାଳୟରେ 'ସେମିଷ୍ଟର ଆବ୍ରଡ଼ର ଦକ୍ଷିଣ ଭାରତର କାର୍ଯ୍ୟକ୍ରମ ଚଳାଉଛନ୍ତି । ମୋର ଦ୍ୱିତୀୟ ପୁଅ ଉଦୟଭାନୁ (ଦୀପୁ, ଚୁପି) ଆର୍କିଟେକ୍‌ଚର ପଢ଼ିଲାବେଳେ ଉତ୍ତରଭାରତର ଗୁପ୍ତ ପରିବାରର ଝିଅ ସହପାଠିନୀ ମିନିକୁ ଭେଟିଲେ । ତାଙ୍କ ବାହାଘର ପରେ ସେମାନେ ଦିଲ୍ଲୀରେ ବସବାସ କଲେ । ଏବେ ଭାରତରେ ପ୍ରମୁଖ ଟାଉନ୍‌ପ୍ଲାନ୍‌ର ରେବେରାଙ୍କ ସହିତ ମିଶି ଆପଣା କାମ କରୁଛନ୍ତି । ମୋ ଝିଅ ଡାକ୍ତର ବନବିହାରୀ ପଟ୍ଟନାୟକଙ୍କ ଝିଅଙ୍କ ପୁଅକୁ ବାହା ହୋଇ ଟାଟାରେ ଅଛି । ଜ୍ୱାଇଁ ଡାକ୍ତର ମନସ୍ତତ୍ତ୍ୱ ବିଭାଗର ସବାସାନଝିଅ ବାହା ହେଲା ଓଡ଼ିଆ ବ୍ରାହ୍ମଣ ଘରେ । ଜ୍ୱାଇଁ ମୁକ୍ତିକାନ୍ତ ମିଶ୍ର । ମୁକ୍ତି ହିନ୍ଦୁସ୍ଥାନ ପେଟ୍ରୋଲିୟମରେ ଅଫିସର । ଝିଅ ବମ୍ବେ ଟାଟା ଇନ୍‌ଷ୍ଟିଚ୍ୟୁଟ୍‌ରେ ସୋସିଆଲ୍ ୱାର୍କରେ ଏମ୍.ଏ. କରି ବାଙ୍ଗାଲୋରର ନିମହାନସରୁ ଏମ୍.ଫିଲ୍. କରିଛି । ଅଷ୍ଟ୍ରେଲିଆରେ ପି.ଏଚ୍.ଡି. ମଧ୍ୟ କରିଛି । ପିଲାଏ ଏବେ ସେମାନଙ୍କ ପିଲାପିଲିଙ୍କୁ ଧରି ଆନନ୍ଦରେ ଅଛନ୍ତି । ଆମେ ମଝିରେ ମଝିରେ ଯାଇ ବୁଲିଆସୁ ।''

ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ଜୀବନ ସୁଖମୟ ଜୀବନ । ସାହିତ୍ୟ ଓ ସଙ୍ଗୀତର ସୁନ୍ଦର ସମନ୍ୱୟ ତାଙ୍କର ପରିବାରରେ ଘଟିଛି । ପତି-ପତ୍ନୀ ସାହିତ୍ୟ-ସଙ୍ଗୀତ ଭିତରେ ଅମୃତର ସନ୍ଧାନ କରୁଛନ୍ତି । ସାହିତ୍ୟ-ସଙ୍ଗୀତ, ସାହିତ୍ୟ ରଚନା, ସାହିତ୍ୟ ସୁରକ୍ଷା ବର୍ତ୍ତମାନ ତାଙ୍କର ପ୍ରଧାନ କର୍ତ୍ତବ୍ୟ ହୋଇଛି ।

### ସଂଗ୍ରାମର ପ୍ରଧାନ ଅସ୍ତ୍ର 'କଲମ' :

ବିନୟ, ସ୍ନେହ, ଶ୍ରଦ୍ଧା, ଗଭୀର ଆତ୍ମୀୟତାରେ ପରିପୂର୍ଣ୍ଣ ମଣିଷ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ । ମାନବିକତାକୁ ଗୁରୁତ୍ୱ ଦେବା ସହ ମୂଲ୍ୟବୋଧର ସୁରକ୍ଷା

ତାଙ୍କ ଜୀବନର ପରମ ଲକ୍ଷ୍ୟ ବୋଲି ମନେହୁଏ । ଉଚ୍ଚ ପରମ୍ପରା ପ୍ରତିଷ୍ଠା, ନବ୍ୟ ଚିନ୍ତାଧାରାର ବିକାଶ, ସର୍ବୋପରି ଭାଷା, ସାହିତ୍ୟର ଅଗ୍ରଗତି ପାଇଁ ସେ ସଦା ଚିନ୍ତିତ, କର୍ମରତ । ବିଶେଷକରି ଏକବିଂଶ ଶତାବ୍ଦୀରେ ଓଡ଼ିଆ ଭାଷା, ସାହିତ୍ୟକୁ ନୂଆ କରି ଉପସ୍ଥାପିତ କରିବା ପାଇଁ ସେ ଉଦ୍ୟମରତ । ଏହି ମହାନ୍ ଭାଷାର ଐତିହ୍ୟ, ପରମ୍ପରାକୁ ସୁରକ୍ଷିତ କରିବା ସହ ବିକାଶ ପଥରେ ଅଗ୍ରସର କରାଇବା ପାଇଁ ସେ ଚେଷ୍ଟିତ । ସତୁରି ବର୍ଷ ବୟସ ଅତିକ୍ରମ କଲେ ମଧ ସେ ମାତୃଭୂମି, ମାତୃଭାଷାର ସ୍ୱାର୍ଥ ପାଇଁ ନୂତନ ସ୍ୱପ୍ନ ଦେଖୁଛନ୍ତି । ଭାଷା ବିଜ୍ଞାନରେ ନୂତନ ଅନୁଶୀଳନ, ନୂତନ ଗବେଷଣା ପାଇଁ ସେ ଉଦ୍ୟମରତ । ସ୍ୱପ୍ନ ଓ ସମ୍ଭାବନାକୁ ସାକାର କରିବା ପାଇଁ ନବ ନବ ଯୋଜନାର ଶୁଭାରମ୍ଭ କରୁଛନ୍ତି । ଭାଷା, ସାହିତ୍ୟର ଉନ୍ନତି ପାଇଁ ଏକ ନୂତନ ଜାଗରଣ, ନୂତନ ସଂଗ୍ରାମ କରିବା ପାଇଁ ସେ ନେତୃତ୍ୱ ପ୍ରଦାନ କରିବେ । ଜୀବନର ପ୍ରତି ଇଞ୍ଚ ପାଇଁ ଡଃ ପଟ୍ଟନାୟକ ଲଢ଼ିବେ । ଏହି ଲଢ଼ିବା ବା ସଂଗ୍ରାମ କରିବାର ପ୍ରଧାନ ଅସ୍ତ୍ର ହେଉଛି କାଳି, କଲମ, କାଗଜ । ଲେଖିବା ମାଧମରେ ସାମାଜିକ ବିପ୍ଳବ ଓ ପରିବର୍ତ୍ତନ ସମ୍ଭବ ବୋଲି ଆମ ସମୟର ପ୍ରମୁଖ, ପ୍ରସିଦ୍ଧ ଭାଷା ବିଜ୍ଞାନୀ ଡଃ ପଟ୍ଟନାୟକ ବିଶ୍ୱାସ କରନ୍ତି । ଲେଖିବା କିମ୍ବା ସାହିତ୍ୟ ମାଧମରେ ଏହି ଅସ୍ଥିର ପୃଥିବୀକୁ ସ୍ଥିର କରିଦେଇ ହେବ । ତେଣୁ ସେ ଲେଖିଛନ୍ତି- ‘‘ମୁଁ ଜୀବନର ପ୍ରତି ଇଞ୍ଚ ପାଇଁ ଲଢ଼ିବି । ଏହି ଲଢ଼େଇରେ ପ୍ରଧାନ ଅସ୍ତ୍ର ହେଉଛି ଲେଖିବା । ନୂଆ କଥା ଲେଖିବା ପାଇଁ ନୂଆ କଥା ପଢ଼ିବା ପ୍ରୟୋଜନ ।’’

ଲେଖା ମାଧମରେ, ସାହିତ୍ୟ ମାଧମରେ ପରିବର୍ତ୍ତନ ଆସୁ । ପୃଥିବୀ ସହଜ, ସରଳ, ସୁନ୍ଦର ହେଉ । ମାନବିକ ସୁଖ, ଶାନ୍ତି ପ୍ରତିଷ୍ଠା ହେଉ । ଏକବିଂଶ ଶତାବ୍ଦୀରେ ମଣିଷର ସାମାଜିକ ବିକାଶର ପଥ ଉନ୍ମୁକ୍ତ ହେଉ । ଆମ ସମୟର ଶ୍ରେଷ୍ଠ ଭାଷା ବିଜ୍ଞାନୀ ଡଃ ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ସାରସ୍ୱତ ସଂଗ୍ରାମ ଅବ୍ୟାହତ ରହୁ । ତାଙ୍କର ଆଶା, ଲକ୍ଷ୍ୟ ପୂରଣ ହେଉ । ଓଡ଼ିଆ ଭାଷା, ସାହିତ୍ୟର ବିପୁଳ ବିଜୟ ହେଉ ।

❑ ❑

# ଜନସେବକ ହରିହର ବାହିନୀପତି

ଡଃ ଶ୍ରୀଚରଣ ଦାସ

**ସଂଘର୍ଷମୟ ବାଲ୍ୟଜୀବନ :**

ହରିହର ବାହିନୀପତି ଓଡ଼ିଶାର ଗୋଟିଏ ଜଣାଶୁଣା ନାମ । ସେ ଉତ୍କଳର ଆରାଧ୍ୟ ଦେବତା ଦାରୁବ୍ରହ୍ମ ପତିତପାବନ ଶ୍ରୀଜଗନ୍ନାଥଙ୍କ ସଂସ୍କୃତିକୁ ଦେଶ-ବିଦେଶରେ ଲୋକପ୍ରିୟ କରାଇବାରେ ପ୍ରମୁଖ ଭୂମିକା ଗ୍ରହଣ କରି ନିଜ ନାମର ସାର୍ଥକତା ପ୍ରତିପାଦନ କରିଅଛନ୍ତି । ଜଣେ ସୁସାହିତ୍ୟିକ, ବିଧାୟକ, ଆଇନଜୀବୀ, ସଙ୍ଗଠକ, ଜନସେବକ, ଔପନ୍ୟାସିକ ଓ ଗାଳ୍ପିକ ଭାବରେ ତାଙ୍କ ପ୍ରତିଭାର ପ୍ରସିଦ୍ଧି କିଛି କମ୍ ନୁହେଁ । ଅତୀତରୁ ଉପାଦାନ ସଂଗ୍ରହ କରି, ଅନୁଭୂତିପ୍ରାଣ ବାହିନୀପତି ଉଣସ ସତୁରୀରେ ପହଞ୍ଚିସାରିଥିଲେ ହେଁ ସେ ସର୍ବଦା ଯୁବପ୍ରାଣ ଓ କର୍ମଚଞ୍ଚଳ । ତାଙ୍କୁ ଦେଖିଲେ ମନେହୁଏ ବାର୍ଦ୍ଧକ୍ୟ ଯେପରି ତାଙ୍କ ଜୀବନର ସୀମା ମାଡ଼ିପାରିନି । ଜଗନ୍ନାଥଙ୍କର ଅପାର କରୁଣା ତାଙ୍କ ଉପରେ ବିଞ୍ଚିହୋଇ ପଡ଼ିଚି । ଏହି ମହାନ୍ ବ୍ୟକ୍ତିଙ୍କର ଜନ୍ମ ହୁଏ ୧୯୨୭ ମସିହା ସେପ୍ଟେମ୍ବର ମାସ ୧୦ ତାରିଖରେ । ପବିତ୍ର ତୀର୍ଥଭୂମି ପୁରୀରେ । ହରିହରଙ୍କର ପିତା ସ୍ୱର୍ଗତ ଚିନ୍ତାମଣି ବାହିନୀପତି ଜଣେ ଅଦ୍ଭୁତ ଧୀଶକ୍ତିସମ୍ପନ୍ନ ସଂସ୍କୃତ ପଣ୍ଡିତ ଥିଲେ । କିନ୍ତୁ ଅତ୍ୟନ୍ତ ତରୁଣ ସମୟରେ ସେ ପୁରୀର ଗଛକାଳୀଙ୍କ ପାଖରେ ତନ୍ତ୍ର ସାଧନା କରି ମସ୍ତିଷ୍କ ବିକାରର ସମ୍ମୁଖୀନ ହେଲେ । ପିତାମହ ସ୍ୱର୍ଗତ ଫକୀର ବାହିନୀପତି ଥିଲେ ଜଗନ୍ନାଥୈକପ୍ରାଣ ଏବଂ ଜଣେ ସଂସ୍କୃତ ବିଦ୍ୱାନ୍ । ହରିହରଙ୍କର ମାତା ସାକ୍ଷୀଗୋପାଳ ନିକଟସ୍ଥ ପ୍ରସିଦ୍ଧ ବ୍ରାହ୍ମଣ ଶାସନ ବୀରଗୋବିନ୍ଦପୁର ନିବାସୀ ସ୍ୱର୍ଗତ ନୀଳକଣ୍ଠ ନନ୍ଦଙ୍କର ଜ୍ୟେଷ୍ଠା କନ୍ୟା ହୋଇଥିଲେ ହେଁ, ସେ ଅନ୍ୟତମ ପ୍ରସିଦ୍ଧ ଶାସନ ବୀରନରସିଂହପୁରର ଖ୍ୟାତନାମା ପୁରୋହିତ ତାଙ୍କ ମାତୁଳ ସ୍ୱର୍ଗତ କୃଷ୍ଣଚନ୍ଦ୍ର ମିଶ୍ରଙ୍କ ଦ୍ୱାରା ଲାଳିତା ପାଳିତା ହୋଇଥିଲେ । ମାଆଙ୍କ ନାମ ଧାନମଣି ଏବଂ ସେ ତତ୍କାଳୀନ ବ୍ରାହ୍ମଣ ଶାସନର ପ୍ରଥାନୁଯାୟୀ ବାଲ୍ୟବିବାହ କରି ଚିନ୍ତାମଣିଙ୍କର ପାଣିଗ୍ରହଣ କଲେ । ହରିହର ମାତ୍ର ଚଉଦ ବର୍ଷ ବେଳକୁ ନିଜ ମା'ଙ୍କୁ ହରାଇଲେ । ସେତେବେଳେ

ସେ ମାଇନର ସ୍କୁଲରେ ପଢୁଥା'ନ୍ତି । ସ୍ନେହମୟୀ ମା'ଙ୍କୁ ହରାଇ ସେ ଭାଙ୍ଗିପଡ଼ିଲେ । ମା'-ଛେଉଣ୍ଡ ହେବାର ଦୁଃଖ ତାଙ୍କୁ କିଶୋର ଅବସ୍ଥାରେ ପ୍ରଥମ ଧକ୍କା ଦେଲା । ସ୍ୱାଭାବିକ ଭାବରେ, ଗୋଟିଏ ରକ୍ଷଣଶୀଳ ବ୍ରାହ୍ମଣ ପରିବାରରେ ବଡ଼ନାତି ବାଳକ ହରିହର ଓ ତାଙ୍କ ତଳକୁ ଆଉ ଗୋଟିଏ ଭାଇ ଓ ଦୁଇ ଭଉଣୀଙ୍କର ହେପାଜତ୍ ନେବାକୁ ପଡ଼ିଥିଲା ବୃଦ୍ଧା ପିତାମହୀ ମାଣିକଙ୍କ ଉପରେ । ସେତେବେଳକୁ ହରିହରଙ୍କ ବଡ଼ ଭଉଣୀ ବିବାହ କରିସାରିଥିଲେ । ସାନଭଉଣୀଙ୍କ ଜନ୍ମର ଅଳ୍ପ ଦିନ ପରେ ମାତୃବିୟୋଗ ହୋଇଥିବାରୁ ମାଆଙ୍କର ଭଉଣୀ ଯେ କି ନିଃସନ୍ତାନ ଥିଲେ, ସେ ନବଜାତ ଶିଶୁଟିକୁ କନ୍ୟା ରୂପରେ ଗ୍ରହଣ କରି ତାକୁ ନିଜ ଘରକୁ ନେଇ ଲାଳନ ପାଳନ କଲେ । ଏତଦ୍‌ବ୍ୟତୀତ ହରିହରଙ୍କ ଅନ୍ୟ ଭାଇ ଓ ଭଉଣୀଙ୍କର ଭରଣପୋଷଣ ଓ ଲାଳନପାଳନ ପାଇଁ ବୃଦ୍ଧ ମାତାମହୀଙ୍କୁ ଅନେକ କଷ୍ଟ କରିବାକୁ ପଡ଼ିଥିଲା । ପୁଅ ପାଗଳ- ବଞ୍ଚିବା ମରିବା ଭିତରେ ସାମାନ୍ୟ ବ୍ୟବଧାନ । ବୋହୂର ମୃତ୍ୟୁ ଓ ନିଜେ ସ୍ୱାମୀହରା । ବୃଦ୍ଧା ପିତାମହୀଙ୍କ ଜୀବନର ଦୁଃଖ କାହାଣୀ କହିଲେ କିଏ ବା ବୁଝିବ ! ପିତାମହ ଫକୀର ଶ୍ରୀକ୍ଷେତ୍ର ମାହାତ୍ମ୍ୟ ବର୍ଣ୍ଣନା ଓ ବସନ୍ତ ରୋଗର ପ୍ରାକୃତିକ ଚିକିତ୍ସାରେ ଅଦ୍ୱିତୀୟ ଥିଲେ ।

ଘରେ ପାଗଳ ପୁତ୍ରଙ୍କ ଛଡ଼ା ଚାରିଗୋଟି ନାବାଳକ ନାତି-ନାତୁଣୀ । ଯାହାକିଛି ସୀମିତ ସମ୍ବଳ ଥିଲା ପୁଅର ଚିକିତ୍ସା, ଚାରିଗୋଟି କନ୍ୟାର ବିବାହ ଓ ନାତିମାନଙ୍କର ଉପନୟନରେ ତାହା ସବୁ ଖର୍ଚ୍ଚ ହୋଇଗଲା । ଗ୍ରାମରେ ଅଳ୍ପ ଯେଉଁ ଚାଷଜମି ଥିଲା, ଭାଗଚାଷରୁ ମିଳୁଥିବା ଆୟ ବର୍ଷକ ଭାତଖର୍ଚ୍ଚ ଉଠିବା ତ ଦୂରର କଥା, ମାତ୍ର ତିନି ଚାରି ମାସର ଖୋରାକି କହିଲେ ଚଳେ । ମାତାଙ୍କ ବିୟୋଗ ବେଳକୁ ବୃଦ୍ଧ ପିତାମହ ଫକୀରଚରଣ ଜୀବିତ ଥିଲେ ହେଁ, ହରିହର ତଦାନୀନ୍ତନ ପୁରୀ ପୌରସଂସ୍ଥାର ନିମ୍ନ ମାଧ୍ୟମିକ ବିଦ୍ୟାଳୟର ସପ୍ତମ ଶ୍ରେଣୀର ଛାତ୍ର । ଅଳ୍ପ ଦିନ ପରେ ବୃଦ୍ଧ ପିତାମହ ଯେ କି ପରିଣତ ବୟସରେ କ୍ଷେତ୍ର ମାହାତ୍ମ୍ୟ ବର୍ଣ୍ଣନା ଓ ବସନ୍ତ ରୋଗର ପ୍ରାକୃତିକ ଚିକିତ୍ସା ଇତ୍ୟାଦି କରି ସ୍ୱଳ୍ପ ରୋଜଗାରରେ ପରିବାର ଚଳାଇବାରେ ସାହାଯ୍ୟ କରୁଥିଲେ, ତାଙ୍କର ମୃତ୍ୟୁ ହେଲା । କେବଳ ସେତିକି ନୁହେଁ, ପିତାମହଙ୍କ ମୃତ୍ୟୁର ଅଳ୍ପ କେତୁଟା ମାସ ପରେ ତାଙ୍କୁ ଅନେକ ସାହାଯ୍ୟ କରୁଥିବା ହରିହରଙ୍କ ବଡ଼ମାମୁ ଦାମୋଦର ନନ୍ଦଙ୍କର ମଧ୍ୟ ଅକାଳରେ ମୃତ୍ୟୁ ଘଟିଲା । ହରିହର ବଂଶର ବଡ଼ପୁଅ । ସେତେବେଳକୁ ସେ ମାତ୍ର ଅଷ୍ଟମ ଶ୍ରେଣୀର ଛାତ୍ର । ନୂଆ ହୋଇ ପୁରୀରେ ସେ ସମୟରେ ଥିବା 'ଏଡ୍‌ୱାର୍ଡ଼' ମଧ୍ୟଇଂରାଜୀ ବିଦ୍ୟାଳୟ ଏମାର ମଠ ମହନ୍ତ ଗଦାଧର ରାମାନୁଜ ଦାସଙ୍କ ସହାୟତାରେ ଗଦାଧର ଉଚ୍ଚ ଇଂରାଜୀ ବିଦ୍ୟାଳୟ ଭାବରେ ଗଢ଼ି ଉଠୁଥାଏ । ୧୯୪୨ ମସିହା

ବେଳକୁ ପୁରୀର ଆଦିମ ଅଧିବାସୀ ଅଧ୍ୟୁଷିତ ଅଞ୍ଚଳରେ ପ୍ରସ୍ତାବିତ ଉଚ୍ଚ ଇଂରାଜୀ ବିଦ୍ୟାଳୟ ଗରିବ ଛାତ୍ରଛାତ୍ରୀଙ୍କୁ ଅଧିକ ଆକର୍ଷିତ କରୁଥିଲା । ହରିହର ଅଷ୍ଟମ ଶ୍ରେଣୀରେ ପଢୁଥିବା ବେଳେ ସମ୍ପୃକ୍ତ ବିଦ୍ୟାଳୟର କର୍ତ୍ତୃପକ୍ଷ ଗରିବ ଛାତ୍ରଛାତ୍ରୀଙ୍କୁ ମାସିକ ବେତନରୁ ରିହାତି ଦେବାପାଇଁ ଯେଉଁ ଦାନ ସଂଗ୍ରହ କରୁଥିଲେ, ସେଥିରେ ହରିହରଙ୍କ ସମେତ ଅନ୍ୟ କେତେକ ଛାତ୍ର ସଂଘବଦ୍ଧ ଭାବରେ ନିୟୋଜିତ ଥିଲେ । ସେତେବେଳେ ପୁରୀରେ ଅବସ୍ଥାପିତ ଥିବା ଜଣେ ଗୋରା ପୋଲିସ୍ ସାହେବ ହରିହରଙ୍କ ଉପରେ ପ୍ରୀତ ହୋଇ ପ୍ରତ୍ୟେକ ମାସରେ ତାଙ୍କୁ ତିନି ଟଙ୍କା ଆର୍ଥିକ ସାହାଯ୍ୟ ପ୍ରଧାନଶିକ୍ଷକଙ୍କ ମାଧ୍ୟମରେ ପଠାଇଦେବାକୁ ଚିଠି ଲେଖିଥିଲେ । ଅଧ୍ୟୟନ ସାଙ୍ଗକୁ ପରିବାର ପୋଷଣ ଆଦି ଜୀବନସଂଗ୍ରାମ ହରିହରଙ୍କର ଏହି ତରୁଣ ଅବସ୍ଥାରୁ ଆରମ୍ଭ ହୋଇଯାଇଥିଲା । ସେ କହନ୍ତି- ଅଷ୍ଟମ ଶ୍ରେଣୀର ଛାତ୍ର ଥିଲାବେଳେ ଘରୋଇ ଶିକ୍ଷକତା କରି ଅର୍ଥାତ୍ ଗୋଟିଏ ଛୋଟ ପିଲାକୁ ପ୍ରଥମ ଶ୍ରେଣୀରେ ପାଠ ପଢ଼ାଇ ମାସଶେଷରେ ଯେଉଁଦିନ ଦୁଇଟଙ୍କା ପାଇଥିଲେ, ଜୀବନର ପରବର୍ତ୍ତୀ ପର୍ଯ୍ୟାୟରେ ବହୁ ବହୁ ଅଧିକତର ଉପାର୍ଜନ ହୋଇଥିଲେ ହେଁ, ସେଦିନର ଆନନ୍ଦ ସେ ଏ ପର୍ଯ୍ୟନ୍ତ ଭୁଲିପାରି ନାହାନ୍ତି ।

ହରିହର ଗଦାଧର ଉଚ୍ଚ ଇଂରାଜୀ ବିଦ୍ୟାଳୟର ପ୍ରଥମ ଛାତ୍ର ଗୋଷ୍ଠୀରେ ଉଚ୍ଚ ମାଧ୍ୟମିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ହେଁ, ବକ୍ତୃତା ପ୍ରତିଯୋଗିତା, ସାହିତ୍ୟ କ୍ଷେତ୍ରରେ ଲେଖନୀ ଚାଳନା, ବିଭିନ୍ନ ସ୍ୱେଚ୍ଛାସେବୀ ସଙ୍ଗଠନରେ ନିଜକୁ ନିୟୋଜିତ କରି ଅନ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କରିପାରିଥିଲେ । ଏହି ସମୟରେ ଓଡ଼ିଶାର ମହାନ୍ ସାହିତ୍ୟରଥୀ ଅଧ୍ୟାପକ ପଠାଣି ପଟ୍ଟନାୟକ ତାଙ୍କର ସହପାଠୀ ଥିଲେ । ସେମାନେ 'ପ୍ରଭାତୀ' ନାମକ ଏକ ପାଣ୍ଡୁଲିପି ପତ୍ରିକା ପ୍ରକାଶ କରୁଥିଲେ । ୧୯୪୫ ମସିହାରେ ପୁରୀର ଏକମାତ୍ର ସରକାରୀ ଉଚ୍ଚ ଇଂରାଜୀ ବିଦ୍ୟାଳୟ ପୁରୀ ଜିଲ୍ଲା ସ୍କୁଲରେ, ମହାବିଦ୍ୟାଳୟର ଶ୍ରେଣୀମାନ କ୍ରମପର୍ଯ୍ୟାୟରେ ଉନ୍ମୋଚିତ ହେଲା । ଫଳରେ ହରିହର ପୁନର୍ବାର ଦାରିଦ୍ର୍ୟ ଓ କଠୋର ଜୀବନସଂଗ୍ରାମ ଭିତରେ ମହାବିଦ୍ୟାଳୟରେ ସ୍ନାତକ ଶିକ୍ଷା ପାଇବାକୁ ସମର୍ଥ ହେଲେ । ୧୯୪୯ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ସେ ବି.ଏ. ପାଶ୍ କଲେ । ମହାବିଦ୍ୟାଳୟର ଛାତ୍ର ଥିବାବେଳେ ସେ ଛାତ୍ର କଂଗ୍ରେସର ନେତୃତ୍ୱ, ସାହିତ୍ୟ ସାଧନ ଓ ବିଭିନ୍ନ ସାଙ୍ଗଠନିକ ତଥା ସାମାଜିକ କାର୍ଯ୍ୟରେ ସର୍ବଦା ବ୍ୟସ୍ତ ରହୁଥିଲେ । ତଥାପି ଆଇ.ଏ. ପରୀକ୍ଷାରେ ରାଜନୀତି ବିଜ୍ଞାନ ପତ୍ରରେ ବିଶ୍ୱବିଦ୍ୟାଳୟରେ ସର୍ବୋଚ୍ଚ ନମ୍ବର ରଖିଥିବାରୁ, ତାଙ୍କର ସମ୍ପୃକ୍ତ ଅଧ୍ୟାପକ, ସ୍ୱର୍ଗତ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ ବିସ୍ମୟାଭିଭୂତ ହୋଇପଡ଼ିଥିଲେ । ପିଲାଦିନରୁ ସମାଜରେ ଥିବା ଅର୍ଥନୀତିକ

ବୈଷାମ୍ୟ, ବିଶେଷକରି କେତେକ ଧନିକଙ୍କ ଗରିବଙ୍କ ପ୍ରତି ଶୋଷଣ ଓ ଲୁଣ୍ଠନ ଦେଖି ସେ ବିଦ୍ରୋହୀ ହୋଇଉଠୁଥିଲେ । ଅବଶ୍ୟ ପ୍ରଖ୍ୟାତ କମ୍ୟୁନିଷ୍ଟ ନେତା ଖୋର୍ଦ୍ଧାର ଗୋକୁଳ ମୋହନ ରାୟଚୂଡ଼ାମଣି ହରିହରଙ୍କୁ ପ୍ରବେଶିକା ଶ୍ରେଣୀର ଛାତ୍ର ଥିବାବେଳେ, ଋଷ୍ ଦେଶରେ ଯେଉଁ ଅଦ୍ଭୁତ ଆର୍ଥନୀତିକ ସାଫଲ୍ୟ ସମାଜବାଦୀ ନୀତିରେ ମିଳିପାରିଛି, ତାହାର ଦୃଷ୍ଟାନ୍ତ ଦେଇ ୧୯୪୨ର ବ୍ରିଟିଶ୍ ବିରୁଦ୍ଧରେ ଭାରତଛାଡ଼ ଆନ୍ଦୋଳନ ପୂର୍ବରୁ ଭାରତରେ କମ୍ୟୁନିଷ୍ଟ ନେତାମାନଙ୍କ ନିୟନ୍ତ୍ରଣରେ ଥିବା ତଦାନୀନ୍ତନ ଛାତ୍ର ସଂଘ ପ୍ରତି ତାଙ୍କୁ ଆକୃଷ୍ଟ କରିଥିଲେ । କିନ୍ତୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଋଷ୍ ପରବର୍ତ୍ତୀ ପର୍ଯ୍ୟାୟରେ ଯେତେବେଳେ ମିତ୍ରଶକ୍ତିଙ୍କ ସଙ୍ଗେ ଯୋଗଦେଲା, ଏପରିକି ଭାରତଛାଡ଼ ଆନ୍ଦୋଳନ ସ୍ପୃହଣୀୟ ନୁହେଁ, ବ୍ରିଟିଶ୍ ଶାସନକୁ ସେତେବେଳେ ସବୁ ପ୍ରକାର ସାହାଯ୍ୟ ଓ ସହଯୋଗ ଦେବା ଜରୁରୀ ବୋଲି ଛାତ୍ର ସଂଘର କେତେକ ବରିଷ୍ଠ ନେତା ପ୍ରକାଶ କଲେ, ସେତେବେଳେ ସ୍ୱାଭାବିକ ଭାବରେ ଛାତ୍ର ସଂଘର ବିଭାଜନ ହେଲା । ଜାତୀୟତାର ଉଦ୍‌ବୋଧନୀ ଭିତରେ ନୂତନ ଭାବରେ ଭାରତୀୟ ସ୍ତରରେ ଛାତ୍ର କଂଗ୍ରେସ ସଙ୍ଗଠିତ ହେଲା । ଶ୍ରୀ ବାହିନୀପତି ସେହି ସମୟରେ ପୁରୀ ଜିଲ୍ଲା ଛାତ୍ର କଂଗ୍ରେସର ସଭାପତି ହେଲେ । ଜିଲ୍ଲାର ବିଭିନ୍ନ ଉଚ୍ଚ ମାଧମିକ ଶିକ୍ଷାନୁଷ୍ଠାନକୁ ଯାଇ ସେ ନୂଆ ହୋଇ ଗଢ଼ିଉଠୁଥିବା "ଛାତ୍ର କଂଗ୍ରେସ"କୁ ସଙ୍ଗଠିତ କଲେ । ନୀତି, ଆଦର୍ଶର ବଚନସର୍ବସ୍ୱ ନହୋଇ ଆଚରଣସିଦ୍ଧ ହେବାକୁ ବିଶ୍ୱାସ କରି ଭାରତର ତତ୍କାଳୀନ ଉପପ୍ରଧାନମନ୍ତ୍ରୀ ଲୌହମାନବ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ୧୯୪୮ ମସିହାରେ ଓଡ଼ିଶା ଆସିଥିଲେ । ସେତେବେଳେ ଭାରତ ସ୍ୱାଧୀନତା ଲାଭ କରିସାରିଥାଏ । କିନ୍ତୁ ଓଡ଼ିଶାରେ ସେ ସମୟରେ ଗଡ଼ଜାତ ମିଶ୍ରଣ ସମ୍ଭବ ହୋଇ ନଥିବାରୁ ସ୍ୱରାଷ୍ଟ୍ର ମନ୍ତ୍ରୀ ଭାବରେ ଗଡ଼ଜାତଗୁଡ଼ିକୁ ମିଶ୍ରଣ ଲକ୍ଷ୍ୟ ନେଇ ସେ ଆସିଥା'ନ୍ତି । ସେତେବେଳେ ସେ କଟକରେ କଂଗ୍ରେସ କର୍ମୀମାନଙ୍କୁ ସମ୍ବୋଧିତ କଲାବେଳେ ସେହି ବୈଠକରେ ଶ୍ରୀ ବାହିନୀପତି ଜଣେ ଛାତ୍ରନେତା ଭାବରେ ତାଙ୍କୁ ପ୍ରଶ୍ନ କରିଥିଲେ ଯେ- ଗାନ୍ଧିଜୀ ଅଭିମତ ଦେଇଅଛନ୍ତି ଯେ; ଛାତ୍ରମାନେ ସକ୍ରିୟ ରାଜନୀତି ସହିତ ଜଡ଼ିତ ହେବା ଉଚିତ ନୁହେଁ । ଆପଣ କଂଗ୍ରେସର ଜଣେ ଉଚ୍ଚ କର୍ତ୍ତୃପକ୍ଷ ହୋଇ ଏହା ସମର୍ଥନ କରନ୍ତି କି ନାହିଁ ? ସର୍ଦ୍ଦାରଜୀ ଉତ୍ତର ଦେଇଥିଲେ- "ମୁଁ କଂଗ୍ରେସର ଉଚ୍ଚ କର୍ତ୍ତୃପକ୍ଷ ନୁହେଁ, ଆପଣ ଉଚ୍ଚ କର୍ତ୍ତୃପକ୍ଷଙ୍କୁ ପଚାରନ୍ତୁ ।"

ଏହି ଆଦର୍ଶଗତ ପ୍ରଶ୍ନ ନେଇ ହରିହରଙ୍କ ତରୁଣ ଜୀବନରେ ଗୋଟିଏ ଦ୍ୱନ୍ଦ୍ୱ ଉପସ୍ଥିତ ହୋଇଥିଲା । ସେ ପୁରୀ ଜିଲ୍ଲା ଛାତ୍ର କଂଗ୍ରେସର ସଭାପତି ଥିଲାବେଳେ ଛାତ୍ରମାନଙ୍କ ପାଇଁ ଖରାଦିନ ଛୁଟିରେ ଗୋଟିଏ ପାଠଚକ୍ରର ଆୟୋଜନ

କରାଯାଇଥାଏ । ରାଜନୀତିକ ବିଜ୍ଞାନର ବିଭିନ୍ନ ତତ୍ତ୍ୱ ଓ ଚିନ୍ତା-ଚେତନା ଉପରେ ଆଲୋଚନା କରିବାକୁ ବିଶିଷ୍ଟ ବିଦ୍ୱାନ୍‌ମାନଙ୍କୁ ସେହି ପାଠଚକ୍ରକୁ ନିମନ୍ତ୍ରଣ କରାଯାଇଥିଲା । ହରିହରଙ୍କୁ ତାଙ୍କର କେତେକ ଅଧ୍ୟାପକ ମାର୍କସବାଦ ଉପରେ ଆଲୋଚନା କରିବାକୁ କମ୍ୟୁନିଷ୍ଟ ନେତା ବିଜୟ ଦାସଙ୍କୁ ଡାକିବାକୁ ସୂଚନା ଦେଇଥିଲେ । କିନ୍ତୁ ଛାତ୍ର କଂଗ୍ରେସରେ ଥିବା କେତେକ ବରିଷ୍ଠ କଂଗ୍ରେସ କର୍ମୀ, ବିଜୟ ଦାସଙ୍କ କମ୍ୟୁନିଷ୍ଟ ଦଳ ସହିତ ସମ୍ପର୍କ ନେଇ ଏହାର ବିରୋଧ କରିବାରୁ, ଛାତ୍ରମାନଙ୍କ ପାଇଁ ଉଦ୍ଦିଷ୍ଟ ଆଲୋଚନାଚକ୍ରରେ ଏପରି ଦଳଗତ ସଂକୀର୍ଣ୍ଣତାର ପ୍ରତିବାଦ କଲେ ହରିହର । କଥାଟି ଛାତ୍ର କଂଗ୍ରେସର ସଭାପତି ପୂର୍ବତନ ଶିକ୍ଷାମନ୍ତ୍ରୀ ଶ୍ରୀ ପ୍ରଦୀପ୍ତ କିଶୋର ଦାସଙ୍କ ପର୍ଯ୍ୟନ୍ତ ଯାଇ ସମାଧାନ ହେଲା । କିନ୍ତୁ ସମ୍ପୃକ୍ତ ପାଠଚକ୍ରକୁ ବିଜୟ ଦାସଙ୍କୁ ନିମନ୍ତ୍ରଣ କରା ନଯିବାରୁ ବାହିନୀପତିଙ୍କୁ ଏହା ମର୍ମାହତ କଲା । ଅଥଚ ଦ୍ୱିତୀୟ ବିଶ୍ୱଯୁଦ୍ଧ ବିଶେଷକରି ୧୯୪୨ରେ ଆରମ୍ଭ ହୋଇଥିବା ‘‘ଭାରତଛାଡ଼’’ ଆନ୍ଦୋଳନରେ କମ୍ୟୁନିଷ୍ଟମାନଙ୍କ ଭୂମିକା ଯୋଗୁଁ ନୂତନଭାବରେ ସଙ୍ଗଠିତ ହୋଇଥିବା ଛାତ୍ର କଂଗ୍ରେସରେ ସେ ଯୋଗଦେଇଥିଲେ ହେଁ, ଛାତ୍ରମାନଙ୍କ ପ୍ରତି ଗାନ୍ଧିଜୀଙ୍କ ଉପଦେଶ ଏବଂ ବିଜୟ ଦାସଙ୍କୁ ନେଇ ଘଟିଥିବା ତାଙ୍କର ଅଭିଜ୍ଞତାର ପରିପ୍ରେକ୍ଷୀରୁ ସେ ସର୍ଦ୍ଦାର ପଟେଲଙ୍କୁ ଏପରି ପ୍ରଶ୍ନ କରିଥିଲେ ।

ହରିହର ଛାତ୍ର ଜୀବନରୁ ଥିଲେ ଖୁବ୍ ନିର୍ଭୀକ ଓ ସ୍ପଷ୍ଟବାଦୀ । ଏହି ସମୟରେ ରାଜନୀତିକ ମତବାଦ ଓ ଗଣତାନ୍ତ୍ରିକ ସମାଜବାଦ ପ୍ରତି ତାଙ୍କର ଗଭୀର ଅନୁରକ୍ତି ଆରମ୍ଭ ହୋଇଥିଲା । ସମାଜର ଦରିଦ୍ର, ନିଷ୍ପେଷିତ, ଅବହେଳିତ ଓ ଅତ୍ୟାଚାରିତ ଗୋଷ୍ଠୀଙ୍କ ପାଇଁ ତାଙ୍କ ହୃଦୟରେ ଭରି ରହିଥିଲା ଅଶେଷ ଅନୁକମ୍ପା । ସଦା ସର୍ବଦା ସେ ଏହାର ପ୍ରତିବାଦ କରୁଥିଲେ । ସେ ଛତ୍ରେ ଛତ୍ରେ ଅନୁଭବ କରୁଥିଲେ ଯେ; ତାଙ୍କ ଭଳି ଅନେକ ଗରିବ ଛାତ୍ର କେବଳ ଦାରିଦ୍ର୍ୟ ଯୋଗୁଁ ଶିକ୍ଷାପ୍ରାପ୍ତିରୁ ବଞ୍ଚିତ ହେଉଛନ୍ତି, ଅଥବା ଅନେକ ଦୁଃଖ ଯନ୍ତ୍ରଣାର ଶିକାର ହେଉଛନ୍ତି । ଏଣେ ପୁରୀରେ ଥିବା ଅନେକ ମଠର (ଯାହାର ଅର୍ଥ ହେଉଛି ଛାତ୍ରଙ୍କ ନିଳୟ) ମହନ୍ତମାନେ ବିପୁଳ ଦେବୋତ୍ତର ସମ୍ପତ୍ତି ଓ ଧନସମ୍ପତ୍ତିର ମାଲିକ ଥାଇ, ବିଳାସ ବ୍ୟସନ, ଏପରିକି ଅର୍ଥନୈତିକ କାର୍ଯ୍ୟକ୍ରମରେ ଲିପ୍ତ ରହିଥିବାର ଅନୁଭବ କରି, ହରିହର ‘ମଠ ବିଦ୍ୟାର୍ଥୀ’ ନାମରେ ଏକ ଛାତ୍ର ସଙ୍ଗଠନ ଗଢ଼ିଥିଲେ । ଏହି ସଂଘ ପକ୍ଷରୁ ସମ୍ପୃକ୍ତ ମଠର ଆର୍ଥିକ ସ୍ଥିତିକୁ ବିଚାରକୁ ନେଇ ପାଠ ପଢ଼ିବାକୁ କେତେ ଛାତ୍ରଙ୍କୁ ସେମାନେ ଖାଦ୍ୟାଦି ସାହାଯ୍ୟ କରିବେ ତାହା ଦାବି କରାଯାଉଥିଲା । ଯେଉଁଠାରେ ଶାନ୍ତିପୂର୍ଣ୍ଣ ଉପାୟରେ ତୁଟିପାରୁ ନଥିଲା, ସେଠାରେ ସଂଘ ପକ୍ଷରୁ ହରିହରଙ୍କ ନେତୃତ୍ୱରେ ଅନଶନ, ଧାରଣା, ବିକ୍ଷୋଭାଦି ଆନ୍ଦୋଳନର

କାର୍ଯ୍ୟକ୍ରମ ଆରମ୍ଭ ହେଉଥିଲା । କେତେକ କ୍ଷେତ୍ରରେ ସେହି ତରୁଣ ଅବସ୍ଥାରେ ଗାନ୍ଧିଜୀଙ୍କ ନିଷ୍ଠାନ୍ୱିତ ଅନଶନରେ ତିନି ଚାରି ଦିନ ବସିଯାଉଥିଲେ ହରିହର । ଏହାର ସୁଫଳ ବହୁ ଗରିବ ଛାତ୍ର ଉପଭୋଗ କଲେ । ବିଭିନ୍ନ ଶିକ୍ଷାନୁଷ୍ଠାନରେ ପଢୁଥିବା ଶହ ଶହ ଛାତ୍ର ଏହି ମଠମାନଙ୍କରେ ରହି ସେମାନଙ୍କ ଶିକ୍ଷା ନିରାପଦରେ ଶେଷ କରିବାର ସୁଯୋଗ ପାଇଲେ । ଖାଦ୍ୟ ଓ ଆର୍ଥିକ ଚିନ୍ତାରୁ ସେମାନେ ମୁକ୍ତିଲାଭ କରିଥିଲେ ।

ହରିହର ବାଲ୍ୟକାଳରୁ ଥିଲେ ସାହିତ୍ୟାନୁରକ୍ତ । ସେତେବେଳେ ସମାଜର ଦରିଦ୍ର, ଅବହେଳିତ ଏବଂ ନିର୍ଯାତିତ ଗୋଷ୍ଠୀଙ୍କର ସ୍ୱର ଉତ୍ତୋଳନ ପାଇଁ ଓଡ଼ିଶାର ବର୍ତ୍ତମାନ ଲବ୍ଧପ୍ରତିଷ୍ଠ ସାହିତ୍ୟିକ ପଠାଣି ପଟ୍ଟନାୟକ, ଔପନ୍ୟାସିକ ବଳରାମ ପଟ୍ଟନାୟକ ପ୍ରମୁଖ ସହପାଠୀଙ୍କ ସହ ସେ ''ତରୁଣ ସାହିତ୍ୟ ମନ୍ଦିର'' ନାମରେ ଏକ ସାହିତ୍ୟିକ ପ୍ରତିଷ୍ଠାନର ସଭ୍ୟ ଥାଇ, ମିଳିତ ଭାବରେ ହାତଲେଖା ପତ୍ରିକାମାନ ପ୍ରକାଶ କରିଥିଲେ ।

## ପ୍ରଥମ ପ୍ରକାଶନ :

୧୯୪୮ ମସିହାରେ ହରିହରଙ୍କର ପ୍ରଥମ ଗଳ୍ପ 'ନରକର କଇଁ' ପ୍ରକାଶିତ ହେଲା । ସେତେବେଳେ ହରିହର ଥିଲେ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ, ପୁରୀର ତୃତୀୟ ବର୍ଷର ଛାତ୍ର । ପୁରୀର ତଦାନୀନ୍ତନ ପ୍ରକାଶକ ''ନୀଳାଚଳ ପୁସ୍ତକ ଭଣ୍ଡାର'' ଏହାକୁ ପ୍ରକାଶ କରିଥିଲେ । ଏହି ପୁସ୍ତିକାଟିର ମୁଖବନ୍ଧ ଲେଖିଥିଲେ ପ୍ରଖ୍ୟାତଯଶା ସାହିତ୍ୟିକ, ରାଜନୀତିଜ୍ଞ, ସତ୍ୟବାଦୀ ଗୋଷ୍ଠୀର ଅନନ୍ୟ ସାଧାରଣ ସଖା ପଣ୍ଡିତ ଗୋଦାବରୀଶ ମିଶ୍ର । ସେ ଲେଖାଟିକୁ ଗୋଟିଏ ''ଔପନ୍ୟାସିକ ଗଳ୍ପ'' ଭାବରେ ଆଖ୍ୟାୟିତ କରି ୭।୬।୧୯୪୮ରେ ଲେଖିଥିବା ମୁଖବନ୍ଧରେ ମତବ୍ୟକ୍ତ କରିଅଛନ୍ତି ଯେ- ''ବିଷୟବସ୍ତୁର ଅବତାରଣା ଉପନ୍ୟାସ ସୁଲଭ ଛଟାରେ ହୋଇଛି । ସେଥିପାଇଁ ଗଳ୍ପର ଔପନ୍ୟାସିକ ସୌନ୍ଦର୍ଯ୍ୟ ବୃଦ୍ଧିଲାଭ କରିଛି ବୋଲି କୁହାଯାଇପାରେ । ...ତେବେ ବାହିନୀପତିଙ୍କ ଲେଖାରେ ଯେ ସ୍ଥାନବିଶେଷରେ ଇତର ଭାଷାର ପ୍ରୟୋଗ ହୋଇଛି, ତାହା କଦାପି କାମ୍ୟ ନୁହେଁ । ସେ ଲେଖକ ଆସନରେ ବସିଲାପରେ, ନିଜେ ହୁଏତ ତାହା ଛାଡ଼ିଦେବା ଶ୍ରେୟସ୍କର ମଣିବେ ।'' ଶ୍ରୀ ବାହିନୀପତି ତାଙ୍କ ବହିଟିରେ ''ପାରାଡ଼କ୍ସ ଓ ଆକ୍‌ଟ୍ରେସ୍'' ପ୍ରଭୃତି ମାତ୍ର ଦୁଇ ତିନୋଟି ଇଂରାଜୀ ଶବ୍ଦ ବ୍ୟବହାର କରିଥିଲେ । କିନ୍ତୁ ପଣ୍ଡିତ ମିଶ୍ରଙ୍କର ଏହି ମନ୍ତବ୍ୟ ତାଙ୍କ ମନରେ ଛାତ୍ରଜୀବନରୁ ଏଭଳି ରେଖାପାତ କରିଥିଲା ଯେ; ସେ ସେହିଦିନଠାରୁ କୌଣସି ଓଡ଼ିଆ ଲେଖା ଅଥବା ବକ୍ତବ୍ୟରେ ଭୁଲ୍‌ରେ ହେଲେ

ଓଡ଼ିଆ ଇତର ବା ଇଂରାଜୀ ଶବ୍ଦ ବ୍ୟବହାର କରି ନାହାନ୍ତି । ଜୀବନରେ ଗୋଦାବରୀଶ ମିଶ୍ରଙ୍କର ମନ୍ତବ୍ୟକୁ ସେ ଆଶୀର୍ବାଦ ଭଳି ମନେକରିଥିଲେ । ସେ ଅନୁଭବ କଲେ ଓଡ଼ିଆ ଭାଷା ଆଦୌ ଦୁର୍ବଳ ନୁହେଁ । ତେଣୁ ପରବର୍ତ୍ତୀ କାଳରେ ସେ ଯେତେବେଳେ ଜଣେ ଓକିଲ ହେଲେ, ଅଦାଲତ ପରିସରରେ ସମସ୍ତ ଆଇନ୍ କାନୁନ୍‌ର ତର୍ଜମା, ନ୍ୟାୟମୂର୍ତ୍ତିମାନଙ୍କ ପାଖରେ ବକ୍ତବ୍ୟ, ପୁରୀର ଜଣେ ସଫଳ ଆଇନ୍‌ଜୀବୀ ଭାବରେ ସମ୍ପୂର୍ଣ୍ଣ ଓଡ଼ିଆ ଭାଷା ମାଧ୍ୟମରେ ୧୯୬୪ ମସିହା ଅପ୍ରେଲ୍ ପହିଲା ଉତ୍କଳ ଦିବସଠାରୁ ଏ ପର୍ଯ୍ୟନ୍ତ ନିଜ ମତାମତ, ଯୁକ୍ତିତର୍କ ଉପସ୍ଥାପନ କରି ଆସୁଛନ୍ତି । ଏଭଳିକି ଅଳ୍ପଦିନ ତଳେ, ସାରା ଭାରତବର୍ଷରେ ଦେୱାନୀ କାର୍ଯ୍ୟବିଧି ଆଇନ୍ ଓ ଅଧିବକ୍ତା ବା ଆଇନ୍‌ଜୀବୀ ଆଇନ୍‌ର ସଂଶୋଧନ ନେଇ, ଆଇନ୍‌ଜୀବୀମାନଙ୍କ ପକ୍ଷରୁ ଯେଉଁ ଆନ୍ଦୋଳନ ଆରମ୍ଭ ହୋଇଥିଲା ଓ ସେତେବେଳେ ପୁରୀ ଜିଲ୍ଲା ଆଇନ୍‌ଜୀବୀ ସଂଘର ସଭାପତି ଭାବରେ ତାଙ୍କ ବିରୁଦ୍ଧରେ ଓଡ଼ିଶାର ଉଚ୍ଚ ନ୍ୟାୟାଳୟ ପକ୍ଷରୁ ଯେଉଁ ଅଦାଲତ ଅବମାନନା ମକଦ୍ଦମା ରଜୁ ହୋଇଥିଲା, ସେହି ମକଦ୍ଦମାରେ ତଦାନୀନ୍ତନ ଉଚ୍ଚ ନ୍ୟାୟାଳୟର ମୁଖ୍ୟ ବିଚାରପତି ମାନ୍ୟବର ବିଶ୍ୱନାଥ ଅଗ୍ରୱାଲ ଓ ମାନ୍ୟବର ରାଧାକୃଷ୍ଣ ପାତ୍ରଙ୍କ ଖଣ୍ଡପୀଠରେ ହାଜର ହୋଇ, ତାଙ୍କର ଜବାବ ସୁଆଲ ଓଡ଼ିଆରେ ଆରମ୍ଭ କରିଥିଲେ । କେବଳ ସେତିକି ନୁହେଁ, ୧୯୬୭ ମସିହାରେ, ହରିହର ଓଡ଼ିଶା ବିଧାନସଭାର ଉପବାଚସ୍ପତି ଥିଲାବେଳେ, ଅଧ୍ୟକ୍ଷ ଆସନରୁ ବିଧାନସଭାର ସମସ୍ତ କାର୍ଯ୍ୟକ୍ରମ, ଏପରିକି ସ୍ୱର ମାଧ୍ୟମରେ ସଭ୍ୟମାନଙ୍କର ମତ ନିର୍ଦ୍ଧାରଣ ପର୍ଯ୍ୟନ୍ତ ଓଡ଼ିଆ ମାଧ୍ୟମରେ ସମ୍ପାଦନ କରୁଥିଲେ ।

### ରାଜନୀତି ଓ ସାମ୍ବାଦିକତା :

ଶ୍ରୀ ବାହିନୀପତି ମହାବିଦ୍ୟାଳୟର ଛାତ୍ର ଥିଲାବେଳେ ପୁରୀ ଜିଲ୍ଲା ଛାତ୍ର କଂଗ୍ରେସର ସଭାପତି, ଜଣେ ସୁବକ୍ତା ଓ ତରୁଣ ଲେଖକ ଭାବରେ ତଦାନୀନ୍ତନ ଓଡ଼ିଶାର ଅପ୍ରତିଦ୍ୱନ୍ଦ୍ୱୀ ନେତା ଡକ୍ଟର ହରେକୃଷ୍ଣ ମହତାବଙ୍କୁ ବେଶ୍ ଆକର୍ଷିତ କରିପାରିଥିଲେ । ଡକ୍ଟର ମହତାବ ହରିହରଙ୍କର ଆର୍ଥିକ ଅବସ୍ଥା ବିଷୟ ଜାଣି ତାଙ୍କୁ ନିଜ ସଂସ୍ଥାରେ ନିଯୁକ୍ତି ଦେବାପାଇଁ ସ୍ଥିର କଲେ । ସେତେବେଳେ ପ୍ରଜାତନ୍ତ୍ରକୁ ବାଲେଶ୍ୱର ଓ କଟକରୁ ଏକସଙ୍ଗେ ଦୈନିକ ଭାବରେ ପ୍ରକାଶ କରିବାକୁ ନିଷ୍ପତ୍ତି ନିଆଗଲା । ଏପରିକି ପ୍ରଜାତନ୍ତ୍ରର ନିଜସ୍ୱ ମୁଦ୍ରଣ ଯନ୍ତ୍ର ନ ଥିବାରୁ, ଦାଶରଥି ମୁଦ୍ରଣାଳୟରୁ ଏହା ପ୍ରଥମେ ପ୍ରକାଶ ପାଇଲା । ସେତେବେଳେ ଏହି ଦ୍ୱିତୀୟ ଦୈନିକର ପୁରୀ ସମ୍ବାଦଦାତା ଭାବରେ ମହତାବ ହରିହରଙ୍କୁ ମାସିକ ଟ୨୫/-

ବେତନରେ ନିଯୁକ୍ତି ଦେଲେ । ପରବର୍ତ୍ତୀ କାଳରେ ଦେଶ ସ୍ୱାଧୀନ ହେବାପରେ ୧୯୪୮ ମସିହାରେ କଂଗ୍ରେସ ସୋସାଲିଷ୍ଟ ପାର୍ଟି ପୃଥକ୍ ହୋଇ, ସୋସାଲିଷ୍ଟ ପାର୍ଟି ଗଠିତ ହେଲା । ହରିହର ସ୍ୱାଭାବିକ ଭାବରେ କଂଗ୍ରେସ ସୋସାଲିଷ୍ଟ ପାର୍ଟିରୁ ପୃଥକ୍ ହୋଇ କେବଳ ଯେ ଜଣେ ସୋସାଲିଷ୍ଟ କର୍ମୀ ହୋଇଗଲେ ତାହା ନୁହେଁ; ବରଂ ସେତେବେଳେ ନୂଆ ଭାବରେ ଆଇନ୍ ହୋଇଥିବା ଓଡ଼ିଶା ପ୍ରଜା ସଂରକ୍ଷଣ ଆଇନ୍ ଅନୁଯାୟୀ ଓଡ଼ିଶାରେ ସୋସାଲିଷ୍ଟମାନେ ସଙ୍ଗଠିତ କରୁଥିବା ଭାଗଚାଷ ଓ ଶ୍ରମିକ ଆନ୍ଦୋଳନରେ ସେ ଜଡ଼ିତ ହୋଇ କାରାବରଣ କଲେ । ପିପିଲି ଥାନାର ମଙ୍ଗଳପୁର ଗ୍ରାମରେ ଗଢ଼ି ଉଠିଥିବା ପ୍ରଖ୍ୟାତ ଚାଷୀ ଆନ୍ଦୋଳନ ଯେଉଁଠାକୁ କି ଲୋକନାୟକ ଜୟପ୍ରକାଶଙ୍କ ଶୁଭାଗମନ ହୋଇଥିଲା, ସେହି ଥାନାରେ ହରିହର ଏବଂ ତାଙ୍କର ସହକର୍ମୀମାନେ ପ୍ରବେଶ କରି ନ ପାରିବା ମର୍ମେ ୧୦୭ ଏବଂ ୧୪୪ ଧାରାମତେ ନିଷେଧ ଆଦେଶ ହୋଇଥିଲା । ୧୯୫୩ ମସିହାରେ କଟଣୀର ଚାଉଳ କଳରେ ଶ୍ରମିକ ଆନ୍ଦୋଳନ ନେଇ ସେ ଗିରଫ ହେଲେ । ବିଭିନ୍ନ ଆନ୍ଦୋଳନ, ବିକ୍ଷୋଭ, ସତ୍ୟାଗ୍ରହ କରି ଜୀବନରେ ଅନେକ ବାର ସେ କାରାବରଣ କରିଛନ୍ତି । ୧୯୫୬ ମସିହାରେ ଓଡ଼ିଶାରେ ଷଢ଼େଇକଳା ଓ ଖରସୁଆଁ ପୁନଃମିଶ୍ରଣ ଦାବିରେ ପୁରୀଠାରେ ହୋଇଥିବା ଭୟଙ୍କର ଖଣ୍ଡବିପ୍ଳବରେ ଥାନା, କଚେରି, ଡାକଘର ପୋଡ଼ିର ଗୁରୁତର ଅଭିଯୋଗରେ ଅଭିଯୁକ୍ତ ହୋଇ ସେ ଗିରଫ ହୋଇଥିଲେ । ସେହିପରି ୧୯୭୫ ଜୁନ୍ ୨୫ ତାରିଖରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ସ୍ୱର୍ଗୀୟା ଇନ୍ଦିରା ଗାନ୍ଧି ଦେଶରେ ଜାରି କରିଥିବା ଆଭ୍ୟନ୍ତରୀଣ ଜରୁରୀକାଳୀନ ଅବସ୍ଥାରେ ସେ ପୁରୀରୁ ଯାଇ ବ୍ରହ୍ମପୁରରେ ଅଟକବନ୍ଦୀ ଥିଲେ । ହରିହର ମାତୃଭୂମି ପ୍ରଥମେ ପ୍ରକାଶିତ ହେଲାବେଳେ କିଛି ବର୍ଷ ପାଇଁ ଏହାର ପୁରୀ ସମ୍ବାଦଦାତା ଭାବରେ ମଧ୍ୟ କାର୍ଯ୍ୟ କରିଥିଲେ ।

ଶ୍ରୀ ବାହିନୀପତି ଛାତ୍ରାବସ୍ଥାରୁ ଗଣତାନ୍ତ୍ରିକ ସମାଜବାଦୀ ରାଜନୀତିକ ଆଦର୍ଶରେ ଅନୁପ୍ରାଣିତ ହୋଇ ଏହାକୁ ବାସ୍ତବାଭିମୁଖୀ କରିବାକୁ ବିଭିନ୍ନ କାର୍ଯ୍ୟକ୍ରମରେ ନିଜକୁ ନିୟୋଜିତ କରୁଥିଲେ । ସେ ୧୯୪୯ ମସିହାରେ ଉପାଧ୍ୟୁତ୍ତର ଆଇନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସ୍ୱାଧୀନ ଭାବରେ ଆଇନ୍ ବ୍ୟବସାୟ ଆରମ୍ଭ କଲେ । ଆଇନ୍ ପଢ଼ିବା ବେଳକୁ ତାଙ୍କୁ ଅନେକ ଆର୍ଥିକ ଅନଟନର ସମ୍ମୁଖୀନ ହେବାକୁ ପଡ଼ିଥିଲା । ପରିବାର ପ୍ରତିପୋଷଣ ସାଙ୍ଗକୁ ଅଧ୍ୟୟନର ଖର୍ଚ୍ଚ ତୁଲାଇବା ପାଇଁ ସେ ଏକସଙ୍ଗେ ପ୍ରଜାତନ୍ତ୍ର ଓ ସମାଜ ଉଭୟ କାର୍ଯ୍ୟାଳୟରେ କାର୍ଯ୍ୟ କରି କିଛି ଅର୍ଥ ରୋଜଗାର କଲେ । ସେତେବେଳକୁ ଓଡ଼ିଶାର ଗଡ଼ଜାତ ମିଶ୍ରଣ ହୋଇସାରିଥାଏ । ଡକ୍ଟର ହରେକୃଷ୍ଣ ମହତାବ ଥାଆନ୍ତି

ଓଡ଼ିଶାର ପଧାନମନ୍ତ୍ରୀ । ଓଡ଼ିଶାର ପ୍ରଶାସନ କ୍ଷେତ୍ରରେ ବିଭିନ୍ନ ଅଧିକାରୀ ନିଯୁକ୍ତ ହେବାକୁ କ୍ଷେତ୍ର ପ୍ରଶସ୍ତ ଥାଏ । ଡକ୍ଟର ମହତାବ ହରିହରଙ୍କୁ ପ୍ରଶାସନିକ ସେବାରେ ନିଯୁକ୍ତି ଦେବାପାଇଁ ସୁପାରିଶ କରିଥିଲେ ହେଁ, ହରିହର ସେଥିରେ ଅସମ୍ମତ ହୋଇ, ଆଇନ୍ ଅଧୟନ ଉପରେ ଗୁରୁତ୍ୱ ଦେଇଥିଲେ । ସେତେବେଳେ କଟକରେ ସଚିବାଳୟ ଥିବାରୁ ଏବଂ ସେହି ସମୟରେ ଓଡ଼ିଶା ସରକାରଙ୍କର ଘରୋଇ ବିଭାଗ ପକ୍ଷରୁ ବିଭିନ୍ନ ଆଇନ୍ ପୁସ୍ତକର ପୁନର୍ମୁଦ୍ରଣ ହେଉଥିବାରୁ, ସେଥିରେ ମୁଦ୍ରଣ ସଂଶୋଧକ ଭାବରେ ତାଙ୍କୁ ନିଯୁକ୍ତି ମିଳିଲା । ସେ ମାତ୍ର ବେତନ ବାବଦକୁ ପାଉଥିଲେ ଏକଶହ କୋଡ଼ିଏ ଟଙ୍କା । ଏହା ତାଙ୍କ ପାଇଁ ଯଥେଷ୍ଟ ହେଉ ନଥିବାରୁ ସେ ଆଇନ୍ ଅଧୟନ କାଳରେ କଟକର ଅନ୍ୟ ଦୁଇଟି ସ୍ଥାନରେ ଘରୋଇ ଶିକ୍ଷକତା କରୁଥିଲେ । ଆଇନ୍ ଅଧୟନ ଶେଷ ବେଳକୁ ସଚିବାଳୟର ଅସ୍ଥାୟୀ କାର୍ଯ୍ୟକାଳ ଶେଷହେଲା । ୧୯୫୧ରେ ଦେଶର ପ୍ରଥମ ସାଧାରଣ ନିର୍ବାଚନ ମୁଣ୍ଡ ଟେକିଲା । ସେ ସମୟରେ ଓଡ଼ିଶାର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ତଥା ସମାଜବାଦୀ ନେତା ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ ସୋସାଲିଷ୍ଟ୍ ଦଳ ପକ୍ଷରୁ ତଦାନୀନ୍ତନ ଅବିଭକ୍ତ ପୁରୀ ଜିଲ୍ଲାର ନିର୍ବାଚନ ପରିଚାଳନା କରିବାକୁ ହରିହରଙ୍କୁ ଦାୟିତ୍ୱ ଦେଲେ । ପୁରୀ ଭଳି ମର୍ଯ୍ୟାଦାସମ୍ପନ୍ନ ନିର୍ବାଚନମଣ୍ଡଳୀରୁ କଂଗ୍ରେସ ସମର୍ଥିତ ପ୍ରଭାବଶାଳୀ ପ୍ରାର୍ଥୀ ଲୋକନାଥ ମିଶ୍ର ସମାଜବାଦୀ ଦଳର ପ୍ରାର୍ଥୀ, ଡାକ୍ତର ଫକୀର ଚରଣ ଦାଶଙ୍କ ଦ୍ୱାରା ପରାଜିତ ହେଲେ । ପରେ ୧୯୫୭ ମସିହାରେ, ଦ୍ୱିତୀୟ ସାଧାରଣ ନିର୍ବାଚନରେ ଶ୍ରୀ ବାହିନୀପତି ପ୍ରଜା ସୋସାଲିଷ୍ଟ୍ ଦଳ ପକ୍ଷରୁ ସିଧାସଳଖ ପ୍ରାର୍ଥୀ ହୋଇ କଂଗ୍ରେସକୁ ପରାଜିତ କରି ନିର୍ବାଚନରେ ଜୟଲାଭ କଲେ । ଏହା ପୂର୍ବରୁ ୧୯୫୬ ମସିହାରେ ଷଡ଼େଇକଳା ଓ ଖରସୁଆଁର ପୁନଃମିଶ୍ରଣର ଆନ୍ଦୋଳନ ହରିହରଙ୍କ ନେତୃତ୍ୱରେ ପୁରୀରେ ଭୟଙ୍କର ରୂପ ଧାରଣ କଲା । ଜାନୁଆରୀ ବାଇଶ ତାରିଖରେ ଗୁଳିକାଣ୍ଡ ହୋଇ ବେଙ୍ଗପାଣିଆର ହରିହର ପଣ୍ଡା ଓ ହରିହର ମହାପାତ୍ର ଶହୀଦ୍ ହୋଇଥିଲେ । ୧୯୬୭ ମସିହାର ଚତୁର୍ଥ ନିର୍ବାଚନରେ ହରିହର ପ୍ରଜା ସୋସାଲିଷ୍ଟ୍ ପାର୍ଟି ପକ୍ଷରୁ ପୁନର୍ବାର ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହେଲେ । ସେତେବେଳେ ଓଡ଼ିଶା ସମେତ ଅନେକ ରାଜ୍ୟ ଶାସନରୁ କଂଗ୍ରେସ ଦଳ ବଞ୍ଚିତ ହୋଇଥିବାରୁ, ବିଶେଷକରି ବିଧାନସଭାରେ ସରକାରୀ ଓ ବିରୋଧୀ ଦଳଙ୍କ ମର୍ଯ୍ୟାଦା ଦୃଷ୍ଟିରୁ ସରକାରୀ ଦଳ ପକ୍ଷରୁ ବାଚସ୍ପତି ରହିଲେ । ବିରୋଧୀ ଦଳର ଜଣେକ ସଭ୍ୟଙ୍କୁ ଉପବାଚସ୍ପତି କରିବାକୁ ନିଷ୍ପତ୍ତି ନିଆଗଲା । ଏଥିପାଇଁ ହରିହର ବାହିନୀପତି ନିର୍ବାଚିତ ହେଲେ । ଜଣେ ଦକ୍ଷ ଉପବାଚସ୍ପତି ଭାବରେ ଗୃହକୁ ସଠିକ୍ ଭାବରେ ପରିଚାଳନା କରିବାକୁ ସେ ସମର୍ଥ ହୋଇପାରିଥିଲେ । ଓଡ଼ିଶାରେ ପ୍ରଜା

ସୋସାଲିଷ୍ଟ ଦଳର ସର୍ବାଧିକ ସଫଳତା ସମୟରେ ଏହି ଦଳ ପକ୍ଷରୁ ବିଧାନସଭାକୁ ୭୧ ଜଣ ଓ ଲୋକସଭାକୁ ଚାରିଜଣ ସଭ୍ୟ ନିର୍ବାଚିତ ହୋଇଥିଲେ । ଶ୍ରୀ ବାହିନୀପତିଙ୍କୁ ଦଳର ସାଧାରଣ ସମ୍ପାଦକ ଭାବରେ ନିର୍ବାଚିତ କରାଗଲା । ଉପବାଚସ୍ପତି ଥାଇ ମଧ୍ୟ କ୍ଷମତାସୀନ ସ୍ୱତନ୍ତ୍ର ଦଳର ଅନ୍ୟତମ ବିଶିଷ୍ଟ ନେତା ପ୍ରତାପକେଶରୀ ଦେଓ, କଳାହାଣ୍ଡିର ମହାରାଜାଙ୍କ ବିରୁଦ୍ଧରେ ଭୂମି-ମୁକ୍ତି ଆନ୍ଦୋଳନରେ ଭାଗନେଇ ସାତଦିନ କାରାଦଣ୍ଡ ଭୋଗ କରିଥିଲେ । ପରେ ପରେ ତାଙ୍କ ନିର୍ବାଚନମଣ୍ଡଳୀ ପୁରୀ ସହରରେ ଏମାର ମଠ ମହନ୍ତଙ୍କ ବିରୁଦ୍ଧରେ ମଧ୍ୟ ଭୂମି-ମୁକ୍ତି ଆନ୍ଦୋଳନ କରି ସେ ବନ୍ଦୀ ହେଲେ । ୧୯୭୫ ମସିହାରେ ଜରୁରୀକାଳୀନ ଅବସ୍ଥା ଜାରି ହେବାରୁ କଂଗ୍ରେସକୁ ମୁକାବିଲା କରିବାକୁ ପ୍ରଜା ସୋସାଲିଷ୍ଟ ସମେତ ବିଭିନ୍ନ ବିରୋଧୀ ଦଳ ''ଜନତା ପାର୍ଟି'' ନାମରେ ଏକତ୍ର ହେବାପରେ ହୋଇଥିବା ବିଧାନସଭା ନିର୍ବାଚନରେ ସେ ପ୍ରାର୍ଥୀ ହୋଇ ନଥିଲେ । ଜନତା ପାର୍ଟିର ବିଭାଜନ ପରେ ସେ ଦୁଇଥର ଲୋକସଭାକୁ ପ୍ରାର୍ଥୀ ହୋଇ ପରାଜିତ ହୋଇଛନ୍ତି । ହରିହର ଜୀବନରେ ବହୁବାର କାରାବରଣ କରିଛନ୍ତି । ସତ୍ୟ ଓ ନ୍ୟାୟ ପାଇଁ ବିପ୍ଳବ କରିଛନ୍ତି । କିନ୍ତୁ ୧୯୭୫ ମସିହାର ଜରୁରୀକାଳୀନ କାରାବାସ ତାଙ୍କ ଜୀବନର ବିଶେଷ ଉଲ୍ଲେଖନୀୟ । କାରାବାସ ସମୟରେ ବାହିନୀପତି ଖିଅର ହୁଅନ୍ତି ନାହିଁ । କିନ୍ତୁ ଜରୁରୀକାଳୀନ ଅବସ୍ଥାରେ ସେ ପ୍ରଥମରୁ ବନ୍ଦୀ ହୋଇ ବ୍ରହ୍ମପୁର ଜେଲରୁ ଚାରିମାସ ପରେ ମୁକ୍ତ ହେବାପରେ ଦେଶରୁ ଜରୁରୀ ଅବସ୍ଥା ଉଠି ନଥାଏ । ସେ ଛୋଟ ଜେଲରୁ ଆସି ବଡ଼ ଜେଲରେ ପୁନର୍ବାର ରହିଲେ । ଏହାର ପ୍ରତିବାଦ କରି ସେ ଖିଅର ହେଲେ ନାହିଁ । ଜରୁରୀକାଳୀନ ଅବସ୍ଥା ଉଠିବା ପରେ ସେ ମୁକ୍ତ ହେଲେ । ଖିଅର ହେବା ବେଳକୁ ତାଙ୍କର ନିଶଦାଢ଼ି ଅସ୍ୱାଭାବିକ ଭାବରେ ଲମ୍ବିଯାଇଥିଲା ।

## ନିର୍ମାଲ୍ୟର ଜନ୍ମ :

ଓଡ଼ିଶାର ଆଧ୍ୟାତ୍ମିକ ସାହିତ୍ୟ ବିଶେଷତଃ ଜଗନ୍ନାଥ ଧର୍ମ ଓ ସଂସ୍କୃତିର ପ୍ରଚାର ପ୍ରସାର କ୍ଷେତ୍ରରେ ତ୍ରୟମାସିକ 'ନିର୍ମାଲ୍ୟ' ପତ୍ରିକାର ସ୍ଥାନ ଅନନ୍ୟ ସାଧାରଣ । ୧୯୭୯ ମସିହାରୁ ଆଜି ପର୍ଯ୍ୟନ୍ତ ଧାରାବାହିକ ଭାବରେ ୨୨ ବର୍ଷ ହେଲା ଏହା ପ୍ରକାଶିତ ହୋଇ ଆସୁଛି । ୧୯୭୭ ମସିହାରେ ପୁରୀରେ ସଙ୍ଗଠିତ ହୋଇଥିବା ଜୟ ଜଗନ୍ନାଥ ମିସନ ସହିତ କଟକରେ ପୂର୍ବରୁ ୧୯୬୭ ମସିହାରେ ପଞ୍ଜିକୃତ ଜଗନ୍ନାଥ ମିସନର ଏକୀକରଣ ହେଲା । ୧୯୭୯ ମସିହାରେ ଭୁବନେଶ୍ୱରରେ ଏକ ମିଳିତ ବୈଠକରେ ଏହାର ନୂତନ ସଭାପତି ଭାବରେ ନିର୍ବାଚିତ

ହେଲେ ହରିହର ବାହିନୀପତି । ପ୍ରସଙ୍ଗକ୍ରମେ ଜଣାଗଲା ଯେ; ଅନୁଷ୍ଠାନ ପକ୍ଷରୁ ୧୯୬୭ ମସିହାରେ 'କୈବଲ୍ୟ' ନାମରେ ମାତ୍ର ଗୋଟିଏ ସଂଖ୍ୟା ପ୍ରକାଶିତ ହୋଇ ତାହା ବନ୍ଦ ହୋଇଯାଇଛି । ୧୯୭୯ର ଏକ ମିଳିତ ବୈଠକରେ ସ୍ଥିର ହେଲା ଯେ 'କୈବଲ୍ୟ'କୁ ପୁନର୍ବାର ପ୍ରକାଶିତ କରି ଏହାର ଧାରାବାହିକତା ରକ୍ଷା କରାଯିବ । ପତ୍ରିକାର ମୁଖ୍ୟ ସମ୍ପାଦକ ଭାବରେ ଶ୍ରୀ ବାହିନୀପତି ମଧ୍ୟ ମନୋନୀତ ହେଲେ ଏବଂ ପରେ ୧୯୭୯ର ଶ୍ରୀଗୁଣ୍ଡିଚା ବେଳକୁ ଏହା ପ୍ରକାଶ ପାଇଲା । ଓଡ଼ିଶାର ତଦାନୀନ୍ତନ ରାଜ୍ୟପାଳ ଭଗବତ ଦୟାଲ ଶର୍ମା ଏହି ପ୍ରକାଶନ ପାଇଁ ତାଙ୍କର ଶୁଭେଚ୍ଛା ବାର୍ତ୍ତା ପ୍ରେରଣ କଲେ । କିନ୍ତୁ ସେତେବେଳକୁ ଭାରତୀୟ ସମ୍ବାଦପତ୍ର ସଂସ୍ଥାର ନିବନ୍ଧକଙ୍କଠାରୁ ପଞ୍ଜିକୃତ କ୍ରମାଙ୍କ ପାଇଁ କଟକରୁ ଆତ୍ମପ୍ରକାଶ କରୁଥିବା 'କୈବଲ୍ୟ' ନାମଧେୟ ସାହିତ୍ୟ ପତ୍ରିକା ପକ୍ଷରୁ ଏହାର ପ୍ରତିବାଦ ହେଲା । ଶେଷକୁ ସଙ୍ଗେ ସଙ୍ଗେ ସମ୍ପାଦକ ବାହିନୀପତି ଦିଲ୍ଲୀ ଯାଇ ସମ୍ପୃକ୍ତ କାର୍ଯ୍ୟାଳୟରେ 'ନିର୍ମାଲ୍ୟ' ନାମରେ ପଞ୍ଜିକୃତ କରାଇ ଏହାକୁ ପ୍ରକାଶ କଲେ । କେବଳ ପ୍ରକାଶନରେ ଧାରାବାହିକତା ନୁହେଁ, ଏହାର କଳେବର ଦୃଷ୍ଟିରୁ ସୁଲଭ ମୂଲ୍ୟ, ବିଶେଷକରି ଏହାର ସ୍ଥାୟୀ ପ୍ରକାଶନ ପାଇଁ ଏହାର ଆଜୀବନ ସଭ୍ୟ ତଥା ଗ୍ରାହକମାନଙ୍କଠାରୁ ପ୍ରଥମେ ମାତ୍ର ଟ୧୦୧/- ଓ ପରେ ଟ୧୫୧/- ସଭ୍ୟ ଚାନ୍ଦା ସଂଗ୍ରହ ପୂର୍ବକ ଏହାକୁ ସ୍ଥାୟୀ ଜମାରେ ପରିଣତ କରି, ଏଥିରୁ ଲବ୍ଧ ସୁଧରୁ ଏହାର ପ୍ରକାଶନ ଚାଲୁ ରଖିବା, ନିର୍ମାଲ୍ୟ ପ୍ରକାଶନୀ ସଂସ୍ଥାର ଅନ୍ୟ ଏକ ଆକର୍ଷଣୀୟ ଦିଗନ୍ତ । ବିଶିଷ୍ଟ ନ୍ୟାୟମୂର୍ତ୍ତି, ମୁଖ୍ୟମନ୍ତ୍ରୀ, ମନ୍ତ୍ରୀ, ବରିଷ୍ଠ ପ୍ରଶାସନିକ ଅଧିକାରୀମାନଙ୍କଠାରୁ ଆରମ୍ଭ କରି ଲେଖକ, ଅଧ୍ୟାପକ, ବିଦ୍ୱାନ୍ ଓ ସର୍ବସାଧାରଣଙ୍କ ପର୍ଯ୍ୟନ୍ତ ଏହି ପତ୍ରିକାର୍ ଏ ଯାବତ୍ ୧୪୮୬ ଜଣ ସଭ୍ୟ ସଭ୍ୟା ରହିଛନ୍ତି । ଏହି ପତ୍ରିକାର ଅନ୍ୟ ଏକ ଆକର୍ଷଣୀୟତା ହେଲା- ସମ୍ପୃକ୍ତ ସଭ୍ୟ ବା ସଭ୍ୟାଙ୍କର ଦେହାନ୍ତ ପରେ ବି, ଭାରତୀୟ ଦାର୍ଶନିକ ଚିନ୍ତା-ଚୈତନ୍ୟର ଅବଧାରଣା ଯୋଗୁଁ, ସମ୍ପୃକ୍ତ ସଭ୍ୟ ବା ସଭ୍ୟାଙ୍କର ଆତ୍ମା ପ୍ରତି ସମ୍ମାନ ପ୍ରଦର୍ଶନ କରିବାକୁ ସେମାନଙ୍କ ପରିବାରକୁ ପତ୍ରିକାଟି ଯୋଗାଇ ଦିଆଯାଉଥିବ । ନିର୍ମାଲ୍ୟର ସମ୍ପାଦନାଠାରୁ ଆରମ୍ଭ କରି ଏହାର ପ୍ରକାଶନ, ବଣ୍ଟନାଦି ସମସ୍ତ କାର୍ଯ୍ୟ ପଛରେ ଶ୍ରୀ ବାହିନୀପତିଙ୍କର ଏକନିଷ୍ଠ କର୍ମକୁଶଳତା, ଓଡ଼ିଶାର ପତ୍ରପତ୍ରିକା ଜଗତରେ ଏକ ନୂତନ ଆଭିମୁଖ୍ୟ ସୃଷ୍ଟି କରିଛି ।

### ବୃତ୍ତି ପ୍ରତି ଆନୁଗତ୍ୟ :

ଶ୍ରୀ ବାହିନୀପତି ଉପବାଚସ୍ପତି ଥିଲାବେଳେ ଅନ୍ୟ ଏକ ଉଲ୍ଲେଖନୀୟ ଘଟଣା ହେଲା- ସେ ଉପବାଚସ୍ପତି ଥାଇ ଅଧିବକ୍ତାର କାର୍ଯ୍ୟ କରିପାରିବେ ନାହିଁ

ବୋଲି ଭାରତୀୟ ସମ୍ବିଧାନକୁ ତର୍ଜମା କରି ଏକ ମକଦ୍ଦମା ଦାଏର କରାଗଲା। ଶ୍ରୀ ବାହିନୀପତି ସେତେବେଳେ ଉପବାଚସ୍ପତି ସାଙ୍ଗକୁ ପ୍ରଜା ସୋସାଲିଷ୍ଟ ଦଳର ସାଧାରଣ ସମ୍ପାଦକ ଥିବାରୁ, ବସ୍ତୁତଃ ଆଦୌ ଓକିଲାତି କରିପାରୁ ନଥିଲେ। କିନ୍ତୁ ଏକପକ୍ଷରେ ମନ୍ତ୍ରୀପଦ ଭଳି ଏହା ନିଯୁକ୍ତିଭିତ୍ତିକ ନହୋଇ ଥିଲା ନିର୍ବାଚନଭିତ୍ତିକ। ଅପରପକ୍ଷରେ ଓକିଲାତି ବୃତ୍ତିରେ ସେ କିଛିଟା ସ୍ୱାଧୀନତା ପାଇପାରିବେ ବିଚାରି, ଉଚ୍ଚ ପ୍ରଶାସନିକ ପଦାଧିକାର ପାଇଁ ଆକୃଷ୍ଟ ନହୋଇ, ଓକିଲାତି କରିବାକୁ ସମର୍ଥ ହୋଇଥିବାରୁ, ଏହି ସାମ୍ବିଧାନିକ ବିବାଦର ଚୂଡ଼ାନ୍ତ ନିଷ୍ପତ୍ତି ପାଇଁ ଭାରତର ସର୍ବୋଚ୍ଚ ନ୍ୟାୟପାଳିକା ସଂସ୍ଥାରେ ମଧ୍ୟ ସଫଳ ହୋଇଥିଲେ। ଏଥିରୁ ତାଙ୍କର ସ୍ୱାଧୀନ ବୃତ୍ତି ଓକିଲାତି ପ୍ରତି ଅତୁଟ ମମତା ଓ ଆନୁଗତ୍ୟର ସୂଚନା ମିଳେ।

**ସାହିତ୍ୟିକ କୃତି :**

ପୂର୍ବରୁ ଉଲ୍ଲେଖ ହୋଇଛି ଯେ; ୧୯୪୮ ମସିହାରେ ପୁରୀରେ ବି.ଏ. ପଢୁଥିବା ବେଳେ ହରିହରଙ୍କର 'ନରକର କଇଁ' ପ୍ରକାଶିତ ହୋଇଥିଲା। ଏହାର ମୁଖ୍ୟ ବିଷୟ ହେଲା ପୁରୁଷ ଯେତେ ଲମ୍ପଟ ହେଲେ ସମାଜ ଏତେ କୋହଳ ହେବ ଏବଂ ନାରୀର ଦୋଷ ପାଇଁ କ୍ଷମା ମିଳିବନି, ଅର୍ଥାତ୍ ପୁରୁଷ କାହିଁକି ହେବ ପିତ୍ତଳ ହଣ୍ଡା ? ଆଉ ନାରୀ ହେବ ମାଟି ହାଣ୍ଡି ? ୧୯୫୬ ମସିହା କଥା। ପୁରୀରେ ଐତିହାସିକ ସୀମା ଆନ୍ଦୋଳନ ଚଳାଇ ସେ ଥା'ନ୍ତି କାରାଗାରରେ। କାରାଗାରର ସଞ୍ଚାଳକ ଜି.ଏସ୍. ରାଓ ଜଣେ ନିରପରାଧ ବାଳକ ମିଥ୍ୟାରେ ଅଭିଯୁକ୍ତ ହୋଇ ଅଦାଲତରେ ଦଣ୍ଡିତ ହୋଇଗଲେ। ପରେ ପରେ ତାଙ୍କ ପ୍ରତି ଯେଉଁ ସାମାଜିକ ତାଚ୍ଛଲ୍ୟ ଆରମ୍ଭ ହୁଏ ଏବଂ ପରିଣାମରେ ସେ କିପରି ଦିନେ ଜଣେ ଦୁର୍ଦ୍ଧର୍ଷ ଅପରାଧୀରେ ପରିଣତ ହୁଏ, ତାହାର ଏକ ଟିପା ହରିହରଙ୍କୁ ଦେଖାଇଥିଲେ। ଏପରି ଅନ୍ୟାୟ ବିରୁଦ୍ଧରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ କରି ସେ ସେହି କାରାଗାରରେ ତାଙ୍କର ବିଖ୍ୟାତ ଉପନ୍ୟାସ 'କାରାର ମଣିଷ' ଆରମ୍ଭ କରିଥିଲେ। ଏହାପୂର୍ବରୁ ସମାଜବାଦୀ ଦଳର ଜଣେ ନିଷ୍ପାପର କର୍ମୀ ଭାବରେ ବିଶିଷ୍ଟ ସମାଜବାଦୀ ନେତା ସ୍ୱର୍ଗତ ଅଶୋକ ମେହେଟାଙ୍କର ଇଂରାଜୀ ପୁସ୍ତକ 'ଗଣତାନ୍ତ୍ରିକ ସମାଜବାଦ'ର ଓଡ଼ିଆ ଅନୁବାଦ ଆରମ୍ଭ କରିସାରିଥିବାରୁ, ପୁରୀ କାରାଗାର ମଧ୍ୟରେ ଏହାକୁ ଶେଷ କରିବାକୁ ଅଗ୍ରାଧିକାର ଦେଇଥିଲେ। ପରେ ପୁଣି ୧୯୬୪ ମସିହାରେ ପ୍ରଜା ସୋସାଲିଷ୍ଟ ପାର୍ଟି ପକ୍ଷରୁ ସଙ୍ଗଠିତ ହୋଇଥିବା ଦରବୃଦ୍ଧି ଆନ୍ଦୋଳନରେ ଦଣ୍ଡିତ ହୋଇ ସେ ବ୍ରହ୍ମପୁର କାରାବାସକୁ ପ୍ରେରିତ ହେଲେ। ସୌଭାଗ୍ୟକ୍ରମେ ସେତେବେଳକୁ ଜି.ଏସ୍. ରାଓଙ୍କର ବ୍ରହ୍ମପୁର କାରାଗାରର

ସଞ୍ଚାଳକ ଭାବରେ ବଦଳି ହୁଏ । ସେଠାରେ ହରିହର ତାଙ୍କର 'କାରାର ମଣିଷ' ଉପନ୍ୟାସଟିକୁ ପୂର୍ଣ୍ଣାଙ୍ଗ କରିବାର ସୁଯୋଗ ପାଆନ୍ତି । ନିତିଦିନିଆ ସମାଜର ବିଭିନ୍ନ କ୍ଷେତ୍ରରେ ଯେଉଁ ଅନ୍ୟାୟ, ଅନୀତି ଓ ଅସଙ୍ଗତି ଭରିରହିଛି, ତାହାର ତୀବ୍ର ପ୍ରତିବାଦ ହେଉଛି 'କାରାର ମଣିଷ' ଉପନ୍ୟାସ । ଓଡ଼ିଆ ଉପନ୍ୟାସ-ସାହିତ୍ୟରେ ଏକ ଉଲ୍ଲେଖନୀୟ ଉପନ୍ୟାସ ଭାବରେ ଏହା ୧୯୬୭ ମସିହାରେ ପ୍ରକାଶ ପାଇଥିଲା । ଏହି ପୁସ୍ତକଟି ପ୍ରଥମେ ସମ୍ବଲପୁର, ପରେ ଉତ୍କଳ ଏବଂ ସମ୍ପ୍ରତି ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ ଅଧୀନରେ ଉପାଧି ଶ୍ରେଣୀର ଓଡ଼ିଆ ବିଷୟରେ ପାଠ୍ୟପୁସ୍ତକ ହୋଇ ରହିଅଛି । ସମାଜର ଅତ୍ୟନ୍ତ ଅବହେଳିତ ଓ ଦରିଦ୍ରତମ ଗୋଷ୍ଠୀର ଜୀବନ କାହାଣୀ ଅବଲମ୍ବନରେ ହରିହରଙ୍କର 'ପୁନର୍ଜନ୍ମ' ଉପନ୍ୟାସ ରଚିତ । ସେହିପରି ଲେଖକଙ୍କର ଅନ୍ୟ ଏକ ଉପନ୍ୟାସ 'ସମାଧାନ' ଧାରାବାହିକ ଭାବରେ ସହକାର ପତ୍ରିକାରେ ପ୍ରକାଶିତ ହୋଇଅଛି । ଦୈନିକ ପ୍ରଜାତନ୍ତ୍ର ପ୍ରଥମେ କଟକରୁ ପ୍ରକାଶ ହେଲାବେଳେ ସେଥିରେ ପ୍ରତ୍ୟେକ ରବିବାର ସଂଖ୍ୟାରେ ଯେଉଁ ସାହିତ୍ୟ ବିଭାଗ ପ୍ରକାଶିତ ହେଉଥିଲା, ସେଥିରେ ସେ ପ୍ରଥମେ ତାଙ୍କ ତରୁଣ ଜୀବନରେ ବିଭିନ୍ନ ଗଳ୍ପ ଲେଖିବା ଆରମ୍ଭ କରିଥିଲେ । ପରବର୍ତ୍ତୀ ସମୟରେ ଓଡ଼ିଶାର ପ୍ରାୟ ବହୁ ପତ୍ରପତ୍ରିକାରେ ତାଙ୍କର ଗଳ୍ପମାନ ପ୍ରକାଶିତ ହୋଇଛି । 'ଜାରଜ' ଶୀର୍ଷକ ଏକ କ୍ଷୁଦ୍ରଗଳ୍ପ ୧୯୭୭ ମସିହାରେ 'ମାନସ'ର ପୂଜା ସଂଖ୍ୟାରେ ପ୍ରକାଶିତ ହୋଇ ଉଚ୍ଚପ୍ରଶଂସିତ ହୋଇଥିଲା । ତାହା ଜାତୀୟ ପୁସ୍ତକ ସଂସ୍ଥା ଓ ଭାରତ ସରକାରଙ୍କ ହିନ୍ଦୀ ନିର୍ଦ୍ଦେଶାଳୟ ଦ୍ୱାରା ହିନ୍ଦୀ ଭାଷାରେ ଅନୂଦିତ ହୋଇ ଲେଖକଙ୍କୁ ପୁରସ୍କୃତ କରାଯାଇଥିଲା । ଝଙ୍କାର, ସହକାର, ମାନସ, ଆସନ୍ତାକାଲି, ଶ୍ରୀକ୍ଷେତ୍ର, କୁରୁକ୍ଷେତ୍ର, ନବଲିପି, ନବରବି, ସମ୍ପର୍କ, ଜୀବନରଙ୍ଗ ପ୍ରଭୃତି ପତ୍ରିକାମାନଙ୍କରେ ତାଙ୍କର ଗଳ୍ପମାନ ପ୍ରକାଶିତ ହୋଇଅଛି । ସେହି ଦଳିତ ଓ ନିର୍ଯାତିତ ବ୍ୟକ୍ତିବିଶେଷଙ୍କର ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀଙ୍କ ବିରୁଦ୍ଧରେ ବିଦ୍ରୋହ, ବାସ୍ତବିକ ଓଡ଼ିଆ ଗଳ୍ପ-ସାହିତ୍ୟରେ 'ଗୋଟିଏ କାକରା', 'ଗୋଟିଏ ରସଗୋଲା', 'ଭଙ୍ଗା ଗିଲାସ', 'ଚୌରଙ୍ଗୀରେ ସନ୍ଧ୍ୟା', 'ଚୁଲି ଉପରେ କେଟ୍‌ଲି' 'ବ୍ରାଣ୍ଡି ବୋତଲ', 'କନ୍ୟାଦାନ' 'ଅଧର୍ମ ବିତ୍ତ' 'ଏକବିଂଶ ଶତାବ୍ଦୀ', 'ଲକ୍ଷ୍ମୀ-ସରସ୍ୱତୀ' ପ୍ରଭୃତି ଗଳ୍ପଗୁଡ଼ିକ ଗୋଟିଏ ଗୋଟିଏ ମୂଲ୍ୟବାନ୍ ଅବଦାନ । ତାଙ୍କର ୨୩ ଗୋଟି ଗଳ୍ପ ଓ ନରକର କଇଁ ଔପନ୍ୟାସିକ ଗଳ୍ପର ଦ୍ୱିତୀୟ ସଂସ୍କରଣ ଭାବେ 'ହରିହର ବାହିନୀପତିଙ୍କ ଗଳ୍ପଗୁଚ୍ଛ' ୧୯୮୩ରେ ପ୍ରକାଶିତ ହୋଇଅଛି ।

ଏତଦ୍‌ବ୍ୟତୀତ ଆଧ୍ୟାତ୍ମିକ ପ୍ରବନ୍ଧ ସାହିତ୍ୟରେ ତାଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ । ଜଗନ୍ନାଥ ଧର୍ମଧାରା ଓ ସଂସ୍କୃତି ସମ୍ପର୍କିତ 'ଶ୍ରୀକ୍ଷେତ୍ର ମାହାତ୍ମ୍ୟ'

ପୁସ୍ତକଟି ଅତ୍ୟନ୍ତ ଉପାଦେୟ । ପ୍ରକାଶ ଅପେକ୍ଷାରେ ଥିବା 'ଶ୍ରୀଜଗନ୍ନାଥ ମାହାତ୍ମ୍ୟ' ମଧ ସେହିପରି ଏକ ଉଲ୍ଲେଖନୀୟ ରଚନା । ୧୯୯୮ରେ ପ୍ରକାଶିତ ହୋଇଥିବା ତାଙ୍କର ଅନ୍ୟ ଏକ ପୁସ୍ତକ 'ଅରିଦ୍ଧତ୍ୟରେ ଜଗନ୍ନାଥ' ଜଗନ୍ନାଥ ତତ୍ତ୍ୱ ଉପରେ ଆଧାରିତ । ଜଗନ୍ନାଥ ଚେତନା ଉପରେ ଆଲୋଚନାଚକ୍ରରେ ଯୋଗଦେବାକୁ ୧୯୯୭ରେ ଲଣ୍ଡନ ଯାଇଥିବା ବେଳେ ଶ୍ରୀଜଗନ୍ନାଥଙ୍କର ଯେଉଁ ବିଭୂତି ସେ ଉପଲବ୍ଧି କରିଥିଲେ, ୧୯୮୭ରେ ଋଷ ଯାଇଥିବା ବେଳେ, ହିନ୍ଦ୍ ମଜଦୁର୍ ସଭା ଶ୍ରମିକ ସଂଗଠନର ପ୍ରତିନିଧିତ୍ୱ କରି, ଜଗନ୍ନାଥଙ୍କ କରୁଣାରୁ ଯେଉଁ ଅନୁଭୂତି ଅର୍ଜନ କରିଥିଲେ, ବମ୍ବେ ରେଳଷ୍ଟେସନରୁ ନିର୍ମାଲ୍ୟ ପତ୍ରିକା ଓ ଅନ୍ୟାନ୍ୟ ଜିନିଷ ଥିବା କୋଥଳୀଟି ଚୋରି ଯିବା ପରେ, ତାହା କିପରି ଆପେ ଆପେ ପୁରୀରେ ପହଞ୍ଚିଥିଲା- ଏହିପରି ଅନେକ ଅନୁଭୂତିରେ ଏହି ପୁସ୍ତକଟି ପରିପୁଷ୍ଟ । ନିର୍ମାଲ୍ୟରେ ମୁଖ୍ୟତଃ ଶ୍ରୀଜଗନ୍ନାଥଙ୍କର ମହିମା ଓ କରୁଣାର ପ୍ରଶସ୍ତି ବର୍ଣ୍ଣିତ । ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ପକ୍ଷରୁ ଲେଖକଙ୍କର 'ଜୟ ଜଗନ୍ନାଥ' ବହିଟି ପ୍ରକାଶିତ ହୋଇଛି । ଏହାର ଇଂରାଜୀ ଅନୁବାଦ କରିଛନ୍ତି ପ୍ରାଧ୍ୟାପକ ଡଃ ବିଜୟକୃଷ୍ଣ ନନ୍ଦ ଓ ହିନ୍ଦୀ ଅନୁବାଦକ ହେଲେ ଶଙ୍କରଲାଲ ପୁରୋହିତ । 'ନେତାଜୀ ସୁଭାଷ' ନାମକ ଜୀବନୀ ପୁସ୍ତକ ସାଙ୍ଗକୁ ସୁଭାଷଚନ୍ଦ୍ରଙ୍କ ଲିଖିତ 'ତରୁଣର ସ୍ୱପ୍ନ'କୁ ବଙ୍ଗଳା ଭାଷାରୁ ଓଡ଼ିଆରେ ଅନୁବାଦ କରିଛନ୍ତି ଶ୍ରୀ ବାହିନୀପତି । ସେହିପରି ଇଂରାଜୀରେ କୃଷ୍ଣ କୃପାଳିନୀଙ୍କ ବିଖ୍ୟାତ ପୁସ୍ତକ 'ଗାନ୍ଧି ଏକ ଜୀବନର' ମଧ ସେ ଓଡ଼ିଆ ଅନୁବାଦକ । ଜାତୀୟ ପୁସ୍ତକ ନ୍ୟାସ ସଂସ୍ଥା, ନୂଆଦିଲ୍ଲୀ ପକ୍ଷରୁ, ମିଳିତ ଜାତିସଂଘ, ଓଡ଼ିଶା ଶାଖାର ସମ୍ପାଦକ ଭାବରେ, ବର୍ଣ୍ଣବୈଷମ୍ୟ ବିରୁଦ୍ଧରେ ଥିବା ଅନେକ ଇଂରାଜୀ ପୁସ୍ତକକୁ ହରିହର ଓଡ଼ିଆରେ ଅନୁବାଦ କରିଛନ୍ତି । ଲକ୍ଷ୍ୟ ତାଙ୍କର ସୁଦୂରପ୍ରସାରୀ । ଅନଗ୍ରସର ଓ ଅବହେଳିତ ମଣିଷମାନଙ୍କ ପାଇଁ ତାଙ୍କ ସାହାଯ୍ୟ ସହାନୁଭୂତିର ବାହୁ ସର୍ବଦା ପ୍ରସାରିତ । ତାହା କେତେବେଳେ ଲେଖା ମାଧ୍ୟମରେ ତ ଆଉ କେତେବେଳେ ଆନ୍ଦୋଳନ ମାଧ୍ୟମରେ । ନୀତି ଓ ଆଦର୍ଶରୁ ସେ ଜୀବନରେ ତିଳେହେଲେ ବିଚ୍ୟୁତ ହେବା ଲକ୍ଷ୍ୟ କରାଯାଇନି ।

## ବିଭିନ୍ନ ସମ୍ମାନ ଓ ଉପାଧି ପ୍ରଦାନ :

ଶ୍ରୀ ବାହିନୀପତି ଜନସେବାକୁ ଜୀବନର ବ୍ରତ କରି ଆଗେଇ ଚାଲିଛନ୍ତି । କୌଣସି ପଦ-ପଦବୀ, ଉପାଧି ଓ ସମ୍ମାନ ତାଙ୍କ ଜୀବନ ପାଇଁ ଏତେ ଗୁରୁତ୍ୱପୂର୍ଣ୍ଣ ଘଟଣା ନୁହେଁ । ତଥାପି ସେ ବହୁ ଅନୁଷ୍ଠାନ ଦ୍ୱାରା ସମ୍ମାନିତ । ହରିହର ୧୯୮୮ ମସିହାରେ 'ସୁଲେଖା' ସାହିତ୍ୟ ପ୍ରତିଷ୍ଠାନ, ୧୯୯୦ରେ ଶନିବାର ସାହିତ୍ୟ ସନ୍ଧ୍ୟା

ଓ ସହକାର ମାତୃଭୂମି ମକର ଉତ୍ସବ, ୧୯୯୧ରେ ଶ୍ରୀକ୍ଷେତ୍ର ଲେଖକ ସାମ୍ମୁଖ୍ୟ, ୧୯୯୪ରେ ଅଭିନନ୍ଦିକା, ୧୯୯୬ରେ ପଦ୍ମଶ୍ରୀ ସଦାଶିବ ରଥଶର୍ମା ସ୍ମୃତି ସଂସଦ, କଳିଙ୍ଗ ସଂସ୍କୃତି ବିକାଶ କେନ୍ଦ୍ର ଓ ଶ୍ରୀଜଗନ୍ନାଥ ଚେତନା କେନ୍ଦ୍ର, ୧୯୯୮ରେ ଭୀମସେନ ପାଠୀ ଦାତବ୍ୟ ନ୍ୟାସର ବିବିନ୍ନ ସମ୍ମାନ ସମାରୋହ, ୧୯୯୯ରେ ଶ୍ରୀକ୍ଷେତ୍ର ଉତ୍ସବ ସମିତି ସମେତ ଉତ୍କଳ ସାହିତ୍ୟ ସମାଜ ଓ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ପ୍ରଭୃତି ଅନୁଷ୍ଠାନ ପକ୍ଷରୁ ହରିହରଙ୍କୁ ସମ୍ମାନିତ କରାଯାଇଛି । ୧୯୯୯ ମାର୍ଚ୍ଚ ୨୪ ତାରିଖରେ ସ୍ୱାଧୀନତା ସଂଗ୍ରାମୀ ଉତ୍ତରାଧିକାରୀ ସଂଘ, ଚିନ୍ତା ଚେତନା, ଭାରତ ସ୍କାଉଟ୍ ଓ ଗାଇଡ୍‌ର ଓଡ଼ିଶା ଶାଖା ଏବଂ କଳିଙ୍ଗ ସଂସ୍କୃତି ପକ୍ଷରୁ ମିଳିତ ଭାବରେ ଶ୍ରୀକ୍ଷେତ୍ରର ସଂସ୍କୃତି କ୍ଷେତ୍ରରେ ତାଙ୍କର ଅନବଦ୍ୟ ଅବଦାନ ଓ ସାଧନାର ସ୍ୱୀକୃତି ସ୍ୱରୂପ ତାଙ୍କୁ 'ଉତ୍କଳ ଜ୍ୟୋତି' ଉପାଧିରେ ଭୂଷିତ କରାଯାଇଥିଲା ।

ଶ୍ରୀ ହରିହର ବାହିନୀପତି ଗତ ଦୁଇ ଦଶନ୍ଧି ଧରି ପ୍ରତ୍ୟକ୍ଷ ଦଳୀୟ ରାଜନୀତିରୁ ଦୂରେଇଯାଇ ସାଂସ୍କୃତିକ ଓ ଶ୍ରୀଜଗନ୍ନାଥଙ୍କ ସଂସ୍କୃତିକୁ ଲୋକପ୍ରିୟ କରାଇବା ପାଇଁ ନିଜକୁ ଅଧିକ ନିୟୋଜିତ କରିଛନ୍ତି । ଏବେ ସୁଦ୍ଧା ସେ ଅନେକ ଶ୍ରମିକ, ଶିକ୍ଷକ ଓ ରାଜ୍ୟ ନିଶା ନିବାରଣ ଭଳି ଅନୁଷ୍ଠାନର ସଭାପତି ଅଛନ୍ତି । ପରିଣତ ବୟସରେ ମଧ୍ୟ ତାଙ୍କର ଓକିଲାତି ବୃତ୍ତି ଅବ୍ୟାହତ ରହିଛି । ଶ୍ରୀଜଗନ୍ନାଥ ଧର୍ମ ଓ ସଂସ୍କୃତିର ପ୍ରଚାର ଓ ପ୍ରସାର ପାଇଁ ଜଗନ୍ନାଥ ମିସନ ଏବଂ ତହିଁର ମୁଖପତ୍ର 'ନିର୍ମାଲ୍ୟ' ମାଧ୍ୟମରେ ସେ ନିଷ୍ଠାପର ଭାବରେ ଆଗେଇ ଚାଲିଛନ୍ତି । କାହାର ନିନ୍ଦା ପ୍ରଶଂସାକୁ ଭ୍ରୂକ୍ଷେପ ନାହିଁ । ଦୁଃଖ ଯନ୍ତ୍ରଣାକୁ ପଛରେ ପକାଇ ସେ ଜୀବନର ସାର୍ଥକ ମାର୍ଗରେ ଅଗ୍ରଗାମୀ । କେବଳ ବିଭିନ୍ନ ସାଂସ୍କୃତିକ ସମାବେଶରେ ଶ୍ରୀ ଶ୍ରୀ ଜଗନ୍ନାଥଙ୍କ ବିଷୟରେ ତାଙ୍କର ବକ୍ତବ୍ୟ ନୁହେଁ, ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ସନ୍ଦର୍ଭ, ବେତାର, ଦୂରଦର୍ଶନ ମାଧ୍ୟମରେ ପ୍ରସିଦ୍ଧ ରଥଯାତ୍ରାର ଧାରା ବିବରଣୀ ଓ ସମୟେ ସମୟେ ବ୍ୟକ୍ତିଗତ ଓ ସମଷ୍ଟିଗତ କଥନୀ ଅତ୍ୟନ୍ତ ଆକର୍ଷଣୀୟ । ପ୍ରକୃତ ପକ୍ଷରେ ତାଙ୍କର ଜୀବନ ହେଉଛି ଆଦର୍ଶଭିତ୍ତିକ ସାର୍ଥକ ଜୀବନ । ପରମ କରୁଣାମୟ ପତିତପାବନ ଶ୍ରୀଜଗନ୍ନାଥ ତାଙ୍କୁ ସେମିତି ଅନାଇଥାଆନ୍ତୁ ଓ ଶ୍ରୀ ବାହିନୀପତିଙ୍କ ଜୀବନ ଦୀର୍ଘ, ନିରାମୟ ଓ ଆହୁରି ଜାତି ଉଦ୍ଦେଶ୍ୟରେ ଆଲୋକିତ ହେଉ ।

❑ ❑

# ଗଣମାଧ୍ୟମ ବିଶେଷଜ୍ଞ :
# ନାଟ୍ୟକାର ସାରଦାପ୍ରସନ୍ନ ନାୟକ

ଡକ୍ଟର ନିରଞ୍ଜନ ସାହୁ

ମଣିଷ ବିଚିତ୍ର ଓ ଦୁର୍ଲଭ ସୃଷ୍ଟି । ସେ ଅମୃତର ସନ୍ତାନ । ତା'ର ଦୃଷ୍ଟି ଅପୂର୍ବ ଓ ଅମୃତମୟ । ମନରେ ଅନେକ ତା'ର ଆଶା । ପାଦରେ ଘୁଙ୍ଗୁର ବାନ୍ଧି ନର୍ତ୍ତକୀ ମଞ୍ଚରେ ନାଚିଲା ପରି, ମୁହଁରେ ରଙ୍ଗ ବୋଳି ଅଭିନେତା ଅଭିନୟ କଲାପରି, ତାନପୁରାରେ ଗାୟିକା ସ୍ୱର ବାନ୍ଧିଲା ପରି ମଣିଷ ଅନେକ ଆଶା ବାନ୍ଧେ ଓ ସ୍ୱପ୍ନ ନେଇ ବଞ୍ଚେ । ଆଶା ମଣିଷର ଭାବବିନ୍ଦୁ । ଆଶାକୁ ନେଇ ମଣିଷ ବଞ୍ଚେ । ଆଶାହୀନ-ସ୍ୱପ୍ନହୀନ ମଣିଷ ପ୍ରକୃତପକ୍ଷେ ମଣିଷ ନୁହେଁ । ପ୍ରାଣର ସୌନ୍ଦର୍ଯ୍ୟ ଚେତନା, ସ୍ୱାଭିମାନ ଓ କଳ୍ପନାର ଆଶାକୁଞ୍ଜକୁ ନେଇ, ପୁଣି କଳାର ମଧୁମୟ ସ୍ପର୍ଶକୁ ପାଥେୟ କରି ସଂପ୍ରୀତିରେ ସେ ବଞ୍ଚେ । କାରଣ କଳା ତା'ର ଜୀବନ । କଳା ଜୀବନର ରସସ୍ନିଗ୍ଧ ଅଭିବ୍ୟକ୍ତି । ଜୀବନରେ କଳାର ସ୍ପର୍ଶ ଏକ ମଧୁମୟ ସ୍ପର୍ଶ- ଏକ ଅଲୌକିକ ଆନନ୍ଦ, ନୈସର୍ଗିକ ଭାବଦୃଷ୍ଟି । ସେହି ନୈସର୍ଗିକ ଭାବ ବା ଆନନ୍ଦ; ସମାଜ ଓ ଜୀବନ ପାଇଁ ବ୍ୟକ୍ତିର ସର୍ବଶ୍ରେଷ୍ଠ ଅବଦାନ । ଅଦମ୍ୟ ଇଚ୍ଛାଶକ୍ତି, ନିଷ୍ପାପର ଉଦ୍ୟମ ଓ ଅନ୍ତର୍ନିହିତ ଐଶ୍ୱରିକ କଳାଶକ୍ତି ମଣିଷକୁ ପ୍ରକାଶିତ ଓ ପ୍ରତିଷ୍ଠିତ କରାଇଥାଏ ଏବଂ ଆକାଂକ୍ଷିତ ସୋପାନ ଅର୍ପଣ କରିଥାଏ । ଏହାର ପ୍ରମାଣ- 'ସାର ଭାଇ' । କଳାର ଇନ୍ଦ୍ରଜାଲରେ ବାନ୍ଧିହୋଇ ଓଡ଼ିଶୀ ସଂସ୍କୃତି ଓ କଳା ପାଇଁ ସମର୍ପିତ ବ୍ୟକ୍ତିତ୍ୱ ଶ୍ରୀଯୁକ୍ତ ସାରଦାପ୍ରସନ୍ନ ନାୟକ । ଯିଏ ଏକାଧାରରେ କଳାକାର, ଅଭିନେତା, ଗୀତିକାର, ନାଟ୍ୟକାର, ପ୍ରଶାସକ, ପ୍ରଫେସର ଓ ନିର୍ଦ୍ଦେଶକ ।

''କଳା ମୋର ଜୀବନ- କଳା ମୋର ଜୀବନଶକ୍ତି- କଳା ମୋର ଇଚ୍ଛାଶକ୍ତି- ସ୍ୱତଃସ୍ଫୂର୍ତ୍ତ ପ୍ରେରଣାର ଉତ୍ସ । ଏ ବୟସରେ ବି ମୁଁ ଦୀର୍ଘରାତ୍ରି ପର୍ଯ୍ୟନ୍ତ ଟିଭି ଦେଖେ, ସିନେମା ଦେଖେ, ସଭାମଞ୍ଚରେ ବକ୍ତୃତା କରୁଥିଲାବେଳେ ହାରମୋନିୟମ୍ ଧରି ଗୀତର ରାଗିଣୀ ତୋଳେ, ନୂତନ ଅଭିନେତା- ଅଭିନେତ୍ରୀମାନଙ୍କର ପ୍ରତିଭାରେ ମୁଗ୍ଧ ହୁଏ, କଳାକୁଶଳତାରେ ଦେଢ଼ାଙ୍ଗ ଦେଖିଲେ

ବିବ୍ରତ ହୋଇପଡ଼େ- ନାଟକ ପାଇଁ ଗୀତ ବାନ୍ଧେ- ସିନେମା ପାଇଁ ଗୀତ ଲେଖେ- ନିର୍ଦ୍ଦେଶନା ଦିଏ । କାରଣ କଳା କଳା ପାଇଁ- କଳା ଜୀବନ ପାଇଁ ।'' ଭାବବିହ୍ୱଳ ପ୍ରାଣରେ ଏ ଉକ୍ତିଟି ପ୍ରକାଶ କରିଥିଲେ ଆମର ପ୍ରିୟ ପରମ ଆତ୍ମୀୟ ନାଟ୍ୟକାର, ଗୀତିକାର, ଚଳଚ୍ଚିତ୍ର ନିର୍ଦ୍ଦେଶକ ସାରଦାପ୍ରସନ୍ନ ନାୟକ । ଯିଏ କଳାରେ ଅବଗାହନ କରିଥିବା, କଳାଆତ୍ମାରେ ସଞ୍ଚରିଥିବା ମଣିଷ, ପ୍ରାଣପ୍ରାଚୁର୍ଯ୍ୟରେ ବଞ୍ଚିବା ମଣିଷ, ନାଟକ ଓ ସିନେମାର କିମ୍ବଦନ୍ତୀ ପୁରୁଷ ।

ଅନ୍ଧଟିଏ ହାତରେ ଖଞ୍ଜଣି ଧରି ଗୀତଟିଏ ଗାଉଥିଲା । ତା'ର କଣ୍ଠରେ ଥିଲା ମଧୁରତା, ଖଞ୍ଜଣିର ମାଦକତା ଆଉ ଗୀତରୁ ଝରି ଆସୁଥିଲା ଭକ୍ତିକତା । ସେ ଗାଉଥିଲା ଗୀତଟିଏ- ସମସ୍ତେ ଭାବବିହ୍ୱଳ-

''ଆରତ ସୁରେ ବାରେ କରେ ମିନତି ରେ
ଚକା ନୟନ ଚାହାଁ ମାଗେ ମାଗୁଣି ରେ । (ଘୋଷା)
କଳା କଳା ଦୁଇ ଆଖି ମନ କେତେ ଖୋଜିଲା
ଉଷା କାଳେ ରବିଛବି ମନେ ମନେ ହଜିଲା
ଆଖି ନାହିଁ ସାକ୍ଷୀ ନାହିଁ ସାଥୀ କାହିଁ ଝୁରେ ରେ
ଚକାନୟନ ଚାହାଁ ମାଗେ ମାଗୁଣି ରେ ।
x x x
ଘର ଛାଡ଼ି ପର ଦେଶେ- ପରଦେଶୀ ପଥିକ
ନଭାବ ଏ ଭବେ ଅଛି ଜଣେ ଏକା ନାବିକ
ଭାଙ୍ଗେ ସେହି ଗଢ଼େ ସେହି- ନୀଳଗିରି କନ୍ଦରେ
ଚକାନୟନ ଚାହାଁ ମାଗେ ମାଗୁଣି ରେ ।''

ଅନେକ ପ୍ରାଣତନ୍ତ୍ରୀରେ- ମନ ଓ ହୃଦୟରେ ଗଭୀର ରେଖାପାତ କରିଥିବା ଏହି ଗୀତଟିର ସ୍ରଷ୍ଟା ହେଉଛନ୍ତି- ''ସାର ଭାଇ'' ଶ୍ରୀଯୁକ୍ତ ସାରଦା ପ୍ରସନ୍ନ ନାୟକ । ସାଂସ୍କୃତିକ ସହର କଟକର ଗଳି-ଉପଗଳିରୁ ଆରମ୍ଭ କରି ଶ୍ରୀଜଗନ୍ନାଥଙ୍କ ବଡ଼ଦାଣ୍ଡ ପର୍ଯ୍ୟନ୍ତ, ପୁଣି ମଫସଲର କୁଆଁରି କନ୍ୟାର କୋମଳ କଣ୍ଠରୁ ଆରମ୍ଭକରି ଅନ୍ଧ ମଣିଷଟିର ଅଶ୍ରୁ ଭିତରେ ପେଟ ପୋଷିବା ପର୍ଯ୍ୟନ୍ତ ଏହି ଭଜନଟି ପ୍ରଲମ୍ବିତ । ''ଆରତ ସୁରେ ବାରେ କରେ ମିନତି ରେ- ଚକାନୟନ ଚାହାଁ ମାଗେ ମାଗୁଣି ରେ ।'' ଅନେକ ବିସ୍ମିତ ହୁଅନ୍ତି- ଭାବବିହ୍ୱଳ ହୁଅନ୍ତି । ଏ ଗୀତଟି ସେଦିନ 'ଲକ୍ଷ୍ମୀ' ଚଳଚ୍ଚିତ୍ରରେ ସଂଯୋଜନା କରିଥିଲେ ଗୀତିକାର ସାରଦାପ୍ରସନ୍ନ ନାୟକ । ନେପଥ୍ୟରେ ''ସାର ଭାଇ'' ରହିଯାଇଛନ୍ତି, ହେଲେ ଗୀତଟି କୋଟିପ୍ରାଣରେ ବଞ୍ଚିରହିଛି । ଏହାହିଁ ବୈଶିଷ୍ଟ୍ୟ- କଳାକାରର ସ୍ୱାଭିମାନ ।

ନାଟ୍ୟକାର ଓ ଚଳଚ୍ଚିତ୍ର ନିର୍ଦ୍ଦେଶକ ଶ୍ରୀଯୁକ୍ତ ସାରଦାପ୍ରସନ୍ନ ନାୟକ ବାଗ୍‌ଦେବୀଙ୍କର ବରପୁତ୍ର । ଓଡ଼ିଶାର ସୁଯୋଗ୍ୟ ସନ୍ତାନମାନଙ୍କ ମଧ୍ୟରୁ ଅନ୍ୟତମ । ସାହିତ୍ୟ, ସଂସ୍କୃତି ଓ କଳା କ୍ଷେତ୍ରରେ ଅମର ସ୍ୱାକ୍ଷର । ଜଣେ ବିଶିଷ୍ଟ ସାରସ୍ୱତ ସ୍ରଷ୍ଟା, ଖ୍ୟାତନାମା ଗୀତିକାର, ଦେଶ ଓ ବିଦେଶରେ ଖ୍ୟାତି ଅର୍ଜନ କରିଥିବା ନିର୍ଦ୍ଦେଶକ ଓ ଯଶସ୍ୱୀ କଳାଶିଳ୍ପୀ, ଜଣେ ଆଦର୍ଶ ଗାନ୍ଧିବାଦୀ ଓ ଭକ୍ତପ୍ରାଣ ଭାବରେ ସେ ସୁପରିଚିତ ପ୍ରତିଭା । ତାଙ୍କ ପ୍ରତିଭାର ପଟାନ୍ତର ନାହିଁ । ସେ କୁହନ୍ତି-

> ''ଜୀବନଟା ବଡ଼ କଠୋର- ଝଡ଼ଝଞ୍ଜାପୂର୍ଣ୍ଣ । ସମସ୍ତ ବ୍ୟସ୍ତତା ଭିତରେ ମୁଁ ଦେଖେ ଅମର ଜୀବନ । ଘନଘନ ନାଟ୍ୟ ନିର୍ଦ୍ଦେଶନା, ଗୀତରଚନା, କର୍ମବ୍ୟସ୍ତ ଚାକିରି ଜୀବନ ଭିତରେ ମୁଁ କେବେ ଭାଙ୍ଗିପଡ଼ିନି । ମୁଁ ମୋ ଜୀବନଟାକୁ ନାଟକ ଭାବରେ ଗ୍ରହଣ କରିଛି । ସେଥିପାଇଁ ପାରିବାରିକ ଜୀବନରେ ଦୁଃଖ, ଦୈନ୍ୟ ଓ ଜଞ୍ଜାଳ ମଧ୍ୟରେ ମୁଁ ଖୁସି ରହିବାକୁ ଉଦ୍ୟମ କରେ ।''

ସେ କେବଳ ନାଟ୍ୟକାର, ଗୀତିକାର ଓ ଚଳଚ୍ଚିତ୍ର ନିର୍ଦ୍ଦେଶକ ନୁହନ୍ତି, ସେ ଆମର ଗର୍ବ ଓ ଗୌରବ । ନାଟକ ରଚନା କରି ମଞ୍ଚ ନାଟକ ପ୍ରତି ଦର୍ଶକମାନଙ୍କୁ ଆକୃଷ୍ଟ କରିଛନ୍ତି । ଗୀତ ରଚନା କରି ଶ୍ରୋତା ପ୍ରାଣରେ ଜୀବନ ସଞ୍ଚାର କରାଇଛନ୍ତି । ଚଳଚ୍ଚିତ୍ର ନିର୍ଦ୍ଦେଶନା ପ୍ରଦାନ କରି ଜାତୀୟ ସମ୍ମାନ ଆଣି ଦେଇଛନ୍ତି । କୌଶଳୀ ପ୍ରଯୋଜକ ଭାବରେ ସେ ମଧ୍ୟ ସୁନାମ ଅର୍ଜନ କରିଛନ୍ତି । କଳା ଓ ଚଳଚ୍ଚିତ୍ର ସମ୍ପର୍କୀୟ ଅନ୍ତର୍ଜାତୀୟ ସମ୍ମିଳନୀ, ଆଲୋଚନାଚକ୍ର, ସଭା ଓ ବିତର୍କରେ ଭାଗନେଇ ଜାତୀୟ ମହତ୍ତ୍ୱ ପ୍ରତିପାଦନ କରିବା ସହିତ ନିଜର ଦୂରଦର୍ଶିତା, ପାଣ୍ଡିତ୍ୟ, ଅନୁଭବ, ବିଜ୍ଞତା ଓ କଳାପ୍ରାଣତାର ପରିଚୟ ପ୍ରଦାନ କରିଛନ୍ତି । ଆନ୍ତର୍ଜାତୀୟ ଖ୍ୟାତି ଆଣିପାରିଛନ୍ତି । ସମ୍ପ୍ରତି ସେ ଜଣେ ବରିଷ୍ଠ ଗଣମାଧ୍ୟମ ବିଶେଷଜ୍ଞ । ସେ ଅମର ବରପୁତ୍ର, ସାଂସ୍କୃତିକ ଗରିମାର ପ୍ରତୀକ । ଅମର ପ୍ରତିଭା । ଚିର ନମସ୍ୟ ସାରସ୍ୱତ ଓ କଳା ସଂସ୍କୃତିର କିମ୍ବଦନ୍ତୀ ପୁରୁଷ ।

**ଜୀବନୀ ଓ ଜୀବନ :**

ଓଡ଼ିଶାର ସାହିତ୍ୟ ଓ ସଂସ୍କୃତିକୁ 'ସିତୁଆ' ନଈର ଅବଦାନ ଅବିସ୍ମରଣୀୟ । 'ସିତୁଆ'ର ଅବବାହିକା ଜନ୍ମ ଦେଇଛି ବହୁ ସାଧୁ, ସନ୍ଥ, ସ୍ୱାଧୀନତା ସଂଗ୍ରାମୀ, ଔପନ୍ୟାସିକ, ଗାଳ୍ପିକ, ନାଟ୍ୟକାର, ଗୀତିକାର, କଳାକାର ଓ ବହୁ ବାଣୀ ସାଧକଙ୍କୁ । ସିତୁଆ, କାଠଯୋଡ଼ିର ଶାଖାନଦୀ । ଏହି ସିତୁଆର ଅବବାହିକା ଜନବହୁଳ, ସୁଜଳା, ସୁଫଳା, ଶସ୍ୟଶ୍ୟାମଳା । ଏହି ଭୂମିର ପ୍ରାକୃତିକ ପରିବେଶ ଅତୀବ ମନୋରମ । ତ୍ୟାଗ, ତପସ୍ୟାର ସିଦ୍ଧ-ସାଧକମାନଙ୍କର ତୀର୍ଥକ୍ଷେତ୍ର ଏହି ପବିତ୍ର ମାଟି । ବହୁ ଧର୍ମପ୍ରାଣ

ପୁରୁଷଙ୍କର ଜନ୍ମ ଓ କର୍ମଭୂମି ଏହି ଅବବାହିକା କଳା, ସାହିତ୍ୟ, ଶିକ୍ଷା, ସଂସ୍କୃତି, ଧର୍ମ, ଦର୍ଶନ ଓ ସ୍ଥାପତ୍ୟ ତଥା ଜାତୀୟତା ସ୍ୱାଭିମାନର ବିକାଶରେ ଏହି ମୂଳକର ଅବଦାନ ଅନସ୍ୱୀକାର୍ଯ୍ୟ । କଟକ ସଦର ଓ ବୟାଳିଶ ମୌଜା ଅଞ୍ଚଳ ସାରସ୍ୱତ ସାଧନାରେ ଯେପରି ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲା, ସେହିପରି ଓଡ଼ିଆ ସଂସ୍କୃତିର ସ୍ୱାଭିମାନ ସୁରକ୍ଷାରେ ନେତୃତ୍ୱ ନେଇଥିଲା । କୁଆଖାଇ ଯେପରି କାଠଯୋଡ଼ିର ଏକ ଶାଖାନଦୀ, ସିତୁଆ ସେହିପରି କାଠଯୋଡ଼ିର ଏକ ଶାଖାନଦୀ । ଉଭୟେ ଦେବୀ ନଦୀରେ ମିଶି ଏକ ଦ୍ୱୀପ ବା ଟାପୁ ସୃଷ୍ଟି କରିଛନ୍ତି । ଏହା ୪୨ଟି ମୌଜା ବିଶିଷ୍ଟ । ତେଣୁ ଏହି ଅଞ୍ଚଳର ନାମ ବୈୟାଳିଶ ମୌଜା । ଏହି ଅଞ୍ଚଳରେ ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କର ଜନ୍ମସ୍ଥଳୀ । ଗଣିତଜ୍ଞ ନାରାୟଣ ପତି, ବିଶିଷ୍ଟ ଶିକ୍ଷାବିତ୍ ଜୟରାମ ସ୍ୱାଇଁ, ବିଶିଷ୍ଟ ନାଟ୍ୟକାର ମନୋରଞ୍ଜନ ଦାସ, ଶ୍ରୀକୃଷ୍ଣ ମହାନ୍ତି, ରାୟକୃଷ୍ଣ ମହାନ୍ତି, ବିଶିଷ୍ଟ ପୋଲିସ୍ ପ୍ରଶାସକ ଗୌରକୃଷ୍ଣ ମହାନ୍ତି, ସର୍ବୋଦୟ ନେତା ଗୁଣନିଧି ମହାନ୍ତି, ମହେନ୍ଦ୍ର କୁମାର ଦାସ I.P.S. ବିଶିଷ୍ଟ ସମ୍ବାଦ ଘୋଷକ ଉପେନ୍ଦ୍ର କୁମାର ଦାସ ପ୍ରମୁଖ ଏଇ ମାଟିର ଖ୍ୟାତନାମା ପ୍ରତିଭା । ଏହି ଅଞ୍ଚଳ ସର୍ବଧର୍ମ ସମନ୍ୱୟର ପୀଠସ୍ଥଳୀ । ବୈଷ୍ଣବ ଧର୍ମର ବିଶେଷ ପ୍ରଚାର ଓ ପ୍ରସାର ଏ ମାଟିରେ ଘଟିଛି । ଯାହାର ପ୍ରଭାବରୁ ରାମନବମୀ, ଦୋଳଯାତ୍ରା, କୀର୍ତ୍ତନ, ଭାଗବତ ପାରାୟଣ ପ୍ରଭୃତି କେଉଁ ଅନାଦି କାଳରୁ ପାରମ୍ପରିକ ରୀତିରେ ପାଳିତ ହୁଏ । ତେବେ ରାଉତରାୟପୁର ପ୍ରଭୃତି ଗାଁ ହିନ୍ଦୁ ଓ ମୁସଲମାନ ସମ୍ପ୍ରଦାୟର ମିଳନ ଓ ସଦ୍ଭାବ ସ୍ଥଳୀ । ଅନୈକ୍ୟ ମଧ୍ୟରେ ଐକ୍ୟ ପ୍ରତିଷ୍ଠା ଏହାର ବୈଶିଷ୍ଟ୍ୟ । ସିତୁଆ ନଦୀର ଆରପଟେ ନାଗବାଲି ଗାଁ । ବିଖ୍ୟାତ ଔପନ୍ୟାସିକ କାହ୍ନୁଚରଣ ମହାନ୍ତି ଓ ଜ୍ଞାନପୀଠ ପୁରସ୍କାରପ୍ରାପ୍ତ ଔପନ୍ୟାସିକ ଗୋପୀନାଥ ମହାନ୍ତିଙ୍କ ଜନ୍ମମାଟି । ଏହି 'ସିତୁଆ' ନଦୀ ଅବବାହିକା କଟକ ସଦର ବୟାଳିଶ ମୌଜାର ଗୋଟିଏ ଛୋଟ ଗାଁରେ ସାରଦାପ୍ରସନ୍ନ ନାୟକଙ୍କ ଜନ୍ମ ।

ସାରଦାପ୍ରସନ୍ନ ନାୟକ ୧୯୨୬ ମସିହା ଡିସେମ୍ବର ୧୩ ତାରିଖରେ କଟକ ସଦର ବୟାଳିଶ ମୌଜା ଅନ୍ତର୍ଗତ 'ଧୂଳିଶ୍ୱର' ଗ୍ରାମରେ ଜନ୍ମ । ଏହି ଗାଁଟି କାଠଯୋଡ଼ି ନଈର ଶାଖାନଦୀ 'ସିତୁଆ' ନଈ କୂଳରେ । ଆମ୍ବତୋଟା, ବୁଦୁବୁଦିକିଆ କିଆ ଓ ବେତକୋଳିର ଜଙ୍ଗଲ ଓ ଚାରିଆଡ଼େ ଧାନକ୍ଷେତ । ପ୍ରକୃତି ଯେମିତି କଥା କହେ- ହାତଠାରି ଡାକେ । ଜହ୍ନ ତିଳ ତଣ୍ଡୁଳିତ ଜ୍ୟୋତ୍ସ୍ନାର ରୋଶଣୀ ଢାଳେ । ତାଙ୍କ ପିତାଙ୍କ ନାମ ୰ବାସୁଦେବ ନାୟକ ଓ ମାତାଙ୍କ ନାମ ଶ୍ରୀମତୀ ସେବତୀ ଦେବୀ । ବାସୁଦେବ ନାୟକ ଥିଲେ ଧୂଳିଶ୍ୱର ଓ ବୟାଳିଶ ମୌଜା ଅଞ୍ଚଳରେ ଜଣେ ଜଣାଶୁଣା ବ୍ୟକ୍ତି । ସେ ଜଣେ ପଣ୍ଡିତ ବ୍ୟକ୍ତି । ପୁରାଣ ଶାସ୍ତ୍ର, ଭାଗବତ ଓ ଭଞ୍ଜ ସାହିତ୍ୟରେ ତାଙ୍କର ଥିଲା ବିଦ୍ୱତ୍ତା । ସେ ଥିଲେ ଦିଗ୍‌ଗଜ ପଣ୍ଡିତ । ତାଙ୍କ ବଡ଼ବାପା ୰ମହାଦେବ ନାୟକ ଥିଲେ ସେ ଅଞ୍ଚଳର ପ୍ରସିଦ୍ଧ ଓ ଜନପ୍ରିୟ

ଶିକ୍ଷକ । ଜଣେ ପ୍ରାଇମେରୀ ଶିକ୍ଷକ ହେଲେ ମଧ୍ୟ ତାଙ୍କର ପ୍ରସିଦ୍ଧି ଥିଲା । ଲୋକଚରିତ୍ର ଗଠନ ଥିଲା ତାଙ୍କର ଲକ୍ଷ୍ୟ । ପରୋପକାର ଥିଲା ତାଙ୍କ ଜୀବନର ବ୍ରତ । ଗାଁ ମେଲଣର ସେ ଥିଲେ ଅନ୍ୟତମ ପୃଷ୍ଠପୋଷକ । ରାମ ନବମୀ, ଛାନିଯାତ୍ରା, ବିଶେଷକରି ଦୋଳପୂର୍ଣ୍ଣମୀ ମେଲଣ ଆଦିରେ ସେ ଥିଲେ ଉତ୍ସାହୀ । ବଡ଼ବାପାଙ୍କ ସମ୍ପର୍କରେ ସାରଦାପ୍ରସନ୍ନ କହନ୍ତି-

> ''ମୋତେ ମୋ ବଡ଼ବାପା ଖୁବ୍ ଭଲ ପାଉଥିଲେ । ସେ ମୋତେ ଜଣେ ଗଣିତଜ୍ଞ ହେବାପାଇଁ ଚାହୁଁଥିଲେ । କାରଣ ସେ ଥିଲେ ଗଣିତଜ୍ଞ । ଗଣିତ ବିଦ୍ୟାରେ ତାଙ୍କର ଖୁବ୍ ପାଣ୍ଡିତ୍ୟ ଥିଲା । ହେଲେ ମୁଁ ସାହିତ୍ୟିକ-କଳାକାର ହେଲି । କାରଣ ସେ ମୋତେ ଦିନରାତି ଏପରି ବିରକ୍ତ କଲେ ଯେ; ଗଣିତ ପ୍ରତି ମୋର ବିଦ୍ରୋହ ଜନ୍ମିଲା ଓ ମୁଁ ସାହିତ୍ୟ-ଇତିହାସ-ଭୂଗୋଳରେ ମନ ଦେଲି । x x x ମୋ ବାପାଙ୍କୁ ମୁଁ ସାନବାପା ଓ ବୋଉଙ୍କୁ ସାନମା' ବୋଲି ଡାକୁଥିଲି । ମୁଁ ତାଙ୍କ ପାଖରେ ଶୋଉଥିଲି । ଦିନେ ରାତିରେ ବଡ଼ବାପା ଉଠିପଡ଼ିଲେ । ଗାଁ ଶୂନ୍‌ଶାନ୍- ନୀରବ ନିଶ୍ଚଳ । ଗାଁ ଦାଣ୍ଡରେ ସେହି ଘନରାତିରେ ସେ ନଦୀବନ୍ଧ ଆଡ଼େ ଚାଲିଲେ । ସେତେବେଳକୁ ମୋତେ ଛ'ବର୍ଷ ବୟସ ହେବ । ମୁଁ ମୋହାବିଷ୍ଟ ହେଲାପରି ଶେଯରୁ ଉଠି ତାଙ୍କ ପଛେ ପଛେ ଚାଲିଲି । ସେ ନଦୀବନ୍ଧ ଉପରକୁ ଉଠିଲେ- ମୁଁ ବି ବନ୍ଧ ଉପରକୁ ଉଠିଲି । ସେ ବନ୍ଧ ତଳକୁ ଗଡ଼ିଲେ, ମୁଁ ରହିଗଲି । ସେଇ ବନ୍ଧରେ ଜୁଇ ଜଳୁଥିଲା । ସେ ଅତଡ଼ା ଦେଇ ତଳକୁ ଖସିଗଲେ । ମୁଁ ସେମିତି ଠିଆହୋଇ ରହିଲି । ଜୁଇ ଜଳୁଥାଏ । ଚାରିଆଡ଼ ଶୂନ୍‌ଶାନ୍ । ମୋତେ କାନ୍ଦ କାନ୍ଦ ମାଡ଼ିଲା । ସେମିତି ଫଟା କଣ୍ଠରେ ଡାକ ଛାଡ଼ିଲି- ''ବାପା ! (ବଡ଼ବାପା) ବାପା !!'' ସେ ନଦୀକୂଳରେ ଝାଡ଼ା ବସିଥିଲେ । ପୁଣି ମୁଁ ଡାକ ଛାଡ଼ିଲି- ''ବାପା ! ବାପା !!'' ସେ କିଛି ସମୟ ମଧ୍ୟରେ ଧାଇଁ ଆସି ମୋତେ କୋଳେଇ ପକାଇ କହିଲେ- ''ସାର, ତୁ ! ଡରିନାହୁଁ ତ ? ମୋତେ କାଖେଇ ପକେଇଲେ, ଘରକୁ ଆଣିଲେ । ତାଙ୍କ ସ୍ନେହ ମୋର ଅଭୁଲା । ଏବେ ବି ସେ ମୋର ମନେପଡ଼ନ୍ତି । ଆଖିରୁ ଲୁହ ଝରେ । ତାଙ୍କ ଛବି ଆଖି ଆଗରେ ନାଚିଉଠେ ।''

ଗାଁରେ ଚାଟଶାଳୀ ଥିଲେ ମଧ୍ୟ ସାରଦାପ୍ରସନ୍ନଙ୍କ ବାଲ୍ୟଶିକ୍ଷା ଗାଁରେ ହୋଇପାରି ନଥିଲା । କିନ୍ତୁ ଗାଁର ପରିବେଶ ତାଙ୍କୁ ଉତ୍ସାହିତ କରିଥିଲା । ତେବେ ସାତବର୍ଷ ବୟସରେ ସେ ପିତା ବାସୁଦେବ ନାୟକଙ୍କ ସହିତ କଟକ ଆସିଲେ । ପିତା ବାସୁଦେବ ନାୟକ ନାମଜାଦା ମନମୋହନ ପ୍ରେସ୍‌ର ଥିଲେ ମ୍ୟାନେଜର ଏବଂ ତାଙ୍କର ସହପାଠୀ ଥିଲେ

ଭକ୍ତକବି ମଧୁସୂଦନ ରାଓଙ୍କ ସାନପୁଅ ଶ୍ରୀ ସୁକାନ୍ତ ରାଓ । ବୋଉ ସେବତୀ ଦେବୀ ମଧ ସହିତରେ ଆସିଥିଲେ । ଟାଉନ୍ ଭିକ୍ଟୋରିଆ ହାଇସ୍କୁଲ (ଭକ୍ତମଧୁ ବିଦ୍ୟାପୀଠ)ରେ ଚତୁର୍ଥ ଶ୍ରେଣୀରେ ପଢ଼ିଲେ । ୧୯୩୪ ମସିହାରୁ ୧୯୪୨ ମସିହା ପର୍ଯ୍ୟନ୍ତ ସେ ମାଟ୍ରିକ୍ୟୁଲେସନ୍ ଅଧ୍ୟୟନ କଲେ । ୧୯୪୩ ମସିହାରେ ସେଇ ସ୍କୁଲରୁ ମାଟ୍ରିକ୍ୟୁଲେସନ୍ ପାଶ୍ କଲେ । ସେତେବେଳେ ମାଟ୍ରିକ୍ୟୁଲେସନ୍ ପରୀକ୍ଷା ଭାରି କଠିନ ଥିଲା । ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ପରୀକ୍ଷା ଦେବାକୁ ପଡୁଥିଲା । ୧୯୪୩ ମସିହା ପରେ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେଲା । ତା'ପରେ ସେ ରେଭେନ୍ସା କଲେଜରୁ ଆଇ.ଏ., ବି.ଏ. ଓ ବି.ଏଡ୍. ଉତ୍କଳ ବିଶ୍ୱବିଦ୍ୟାଳୟରୁ ପାଶ୍ କଲେ । ସ୍କୁଲ ଜୀବନରେ ଭକ୍ତମଧୁ ବିଦ୍ୟାପୀଠ (ଟାଉନ୍ ଭିକ୍ଟୋରିଆ ହାଇସ୍କୁଲ)ର ପରିବେଶ ତାଙ୍କୁ ଇଂରାଜୀ ଓ ଅନ୍ୟାନ୍ୟ ବିଭାଗରେ ପାଣ୍ଡିତ୍ୟ ପ୍ରଦାନ କରିଥିଲା । ସେତେବେଳେ ପ୍ରଧାନଶିକ୍ଷକ ଥା'ନ୍ତି ଶ୍ରୀଯୁକ୍ତ ନଗେନ୍ଦ୍ରନାଥ ଚାଟାର୍ଜୀ । ସହକର୍ମୀ ଶ୍ରୀଯୁକ୍ତ ଜ୍ଞାନେନ୍ଦ୍ର କୁମାର ମୁଖାର୍ଜୀ, ଜୀତେନ୍ଦ୍ର ନାଥ ହାଲଦାର ପ୍ରଭୃତିଙ୍କ ପ୍ରଭାବ ତାଙ୍କ ଉପରେ ଖୁବ୍ ପଡ଼ିଥିଲା । ଇଂରାଜୀ ଜ୍ଞାନ ଏମାନଙ୍କ ସହଯୋଗରେ ସୁତୀବ୍ର ହୋଇଥିଲା । ସେ କୁହନ୍ତି-

> ''ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ନଗେନ୍ଦ୍ର ନାଥ ଚାଟାର୍ଜୀ, ଶ୍ରୀଯୁକ୍ତ ଜ୍ଞାନେନ୍ଦ୍ର କୁମାର ମୁଖାର୍ଜୀ, ଜୀତେନ୍ଦ୍ର ନାଥ ହାଲଦାର ପ୍ରମୁଖଙ୍କ ପ୍ରଭାବ ସ୍କୁଲ ଜୀବନରେ ଗଭୀର ଭାବରେ ପଡ଼ିଥିଲା । ନେସ୍‌ଫିଲ୍‌ଡ଼ ଇଂରାଜୀ ବ୍ୟାକରଣ ବହିଟିକୁ ମୁଁ ସମ୍ପୂର୍ଣ୍ଣ ଘୋଷିଦେଇଥିଲି । ଯେଉଁଥିପାଇଁ ମୋର ଇଂରାଜୀ ଜ୍ଞାନ ଭଲ ।''

କଲେଜ ଜୀବନରେ ଇଂରାଜୀ ସାହିତ୍ୟର ଜ୍ଞାନ ଅସ୍ୱାଭାବିକ ଭାବରେ ତାଙ୍କର ବଢ଼ିଯାଇଥିଲା । ତତ୍କାଳୀନ ଅଧ୍ୟାପକମାନଙ୍କର ପ୍ରଭାବ ତାଙ୍କୁ ବିକଶିତ କରାଇଥିଲା । କାରଣ ସେ ସମୟର ଅଧ୍ୟାପକମାନେ ଥିଲେ ପଣ୍ଡିତ ଓ ବିଦ୍ୱାନ୍ । ଭି.ଭି. ଜୈନ, ପ୍ରଫେସର ସୁନ୍ଦରମ୍, ପ୍ରଫେସର ଜନାଥନ ମହାନ୍ତି, ପ୍ରଫେସର ଗିରିଜା ଶଙ୍କର ରାୟ, ପ୍ରଫେସର ନାରାୟଣ ମୋହନ ଦେବ, ପ୍ରଫେସର ପ୍ରଫୁଲ୍ଲ କୁମାର ପତି, ପ୍ରଫେସର ବିଧୁଭୂଷଣ ଦାସ, ପ୍ରଫେସର ସଦାଶିବ ମିଶ୍ର ପ୍ରମୁଖ ତାଙ୍କର ଥିଲେ ଆରାଧ୍ୟ ଅଧ୍ୟାପକ ଓ ଦିଗ୍‌ଦର୍ଶକ । ଯେଉଁମାନଙ୍କର ପ୍ରଭାବ ତାଙ୍କୁ ଅଦ୍ଭୁତ ପ୍ରାଣସଞ୍ଚାର କରାଇଥିଲା । ବିଶେଷକରି ଡଃ ସଦାଶିବ ମିଶ୍ର ଓ ଡଃ ପ୍ରଫୁଲ୍ଲ କୁମାର ପତି ଥିଲେ ତାଙ୍କର ମାର୍ଗ ପ୍ରଦର୍ଶକ । ଲଣ୍ଡନ ଇଉନିଭର୍‌ସିଟିରୁ ଶିକ୍ଷାପ୍ରାପ୍ତ ଅଧ୍ୟାପକ ପ୍ରଫେସର ବୈଦ୍ୟନାଥ ରଥ ଥିଲେ ତାଙ୍କର ପୂଜ୍ୟ ଗୁରୁଦେବ । ପାଠ ପଢ଼େଇବା ଢଙ୍ଗ ସେ ଡକ୍ଟର ସଦାଶିବ ମିଶ୍ରଙ୍କ ପାଖରୁ ଶିଖିଥିଲେ ବୋଲି ମୁକ୍ତ କଣ୍ଠରେ ସ୍ୱୀକାର କରନ୍ତି ।

ଏହା ବ୍ୟତୀତ ସେ ବେତାର ଓ ଦୂରଦର୍ଶନରେ ବୃତ୍ତିଗତ ଯୋଗ୍ୟତା ହାସଲ କରିଛନ୍ତି । ଯଥା-

1. Centre for Educational Development (London)
2. Television Training Centre, Government of India (UNDP : New Delhi, Mandi House)
3. Film and Television Institute of India (T.V.) (Pune)
4. Specialisation in Educational Radio and Education Television Programme (London)

ଲଣ୍ଡନରେ ରେଡ଼ିଓ ଓ ଟେଲିଭିଜନ୍‌ରେ ସ୍ପେସିଆଲାଇଜେସନ୍, ଲଣ୍ଡନରେ ଶିକ୍ଷା ସମ୍ପର୍କରେ, ୟୁ.ଏନ୍.ଡି.ପି. ନୂଆଦିଲ୍ଲୀରେ ଟେଲିଭିଜନ ଟ୍ରେନିଂ, ପୁନାରେ ଫିଲ୍ମ ଏବଂ ଟେଲିଭିଜନ୍ ଶିକ୍ଷାଳୟରେ ଶିକ୍ଷା ଅର୍ଜନ କରିଛନ୍ତି । B.B.C. ସହଯୋଗରେ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଟ୍ରେନିଂ ନେବା କମ୍ ଗୌରବର କଥା ନୁହେଁ । ସେତେବେଳେ ଲଣ୍ଡନ ଠାରେ ଟ୍ରେନିଂ ସେଣ୍ଟର କେବଳ ଥିଲା । ବେତାର ଶିକ୍ଷା କାର୍ଯ୍ୟକ୍ରମର ପ୍ରଯୋଜକ ଥିବାବେଳେ ୧୯୭୩ ମସିହାରେ ସେ କେନ୍ଦ୍ର ସରକାରଙ୍କ ଦ୍ୱାରା ନିର୍ବାଚିତ ହୋଇ ବିଲାତ ଯାଇଥିଲେ । ସେଠାରେ ସେ କୃତିତ୍ୱର ସହ ଟ୍ରେନିଂ ସମାପନ କରି କଟକ ଫେରିଆସିଥିଲେ । ୧୯୫୬ ମସିହାରୁ ସେ ଚଳଚ୍ଚିତ୍ର ନିର୍ମାଣରେ ଯୋଗଦେଇଥିଲେ । ଚଳଚ୍ଚିତ୍ର ନିର୍ମାଣର ଅଭିନୟ, ଟେକ୍‌ନିକ୍, ନିର୍ଦ୍ଦେଶନା ଓ ପ୍ରଯୋଜନାରେ ସେ ପାରଙ୍ଗମ । ତାଙ୍କ ନିର୍ଦ୍ଦେଶିତ ଓ ସଂଳାପ ଲିଖିତ ଚଳଚ୍ଚିତ୍ର 'ଲକ୍ଷ୍ମୀ', 'କା', 'ସ୍ତ୍ରୀ' ରାଷ୍ଟ୍ରପତି ପୁରସ୍କୃତ ହୋଇଛି । ୧୯୬୩ ମସିହାରୁ ଆକାଶବାଣୀର ଶିକ୍ଷା କାର୍ଯ୍ୟକ୍ରମର ଜଣେ ପ୍ରଯୋଜକ ଭାବରେ ଯୋଗଦେଇଥିଲେ । କେନ୍ଦ୍ର ସରକାରଙ୍କ ଦ୍ୱାରା ନିର୍ବାଚିତ ହୋଇ ଲଣ୍ଡନ ଟ୍ରେନିଂ ପାଇଁ ଯାଇଥିଲେ । ଫେରିଆସି ୧୯୭୪ ମସିହାରୁ ପୁଣି ଉପଗ୍ରହ ଟେଲିଭିଜନ୍ କାର୍ଯ୍ୟକ୍ରମରେ ଯୋଗଦେଲେ ଓ ରେଡ଼ିଓରୁ ଟେଲିଭିଜନକୁ ବଦଳି ହୋଇ ଆସିଲେ । ୧୯୮୫ ମସିହା ଜାନୁଆରୀ ପହିଲାରେ ଜଣେ ବରିଷ୍ଠ ପ୍ରଯୋଜକ ଭାବରେ ସେ ଅବସର ନେଇଥିଲେ ।

ସେ ଜୀବନରେ ବହୁ କାର୍ଯ୍ୟକ୍ରମରେ ପ୍ରଥମ ପଥ ଉଦ୍‌ଘାଟନ କରିଥିବା କଳାକାର ଓ ବ୍ୟକ୍ତିତ୍ୱ । ସେଥିପାଇଁ ତାଙ୍କୁ ବହୁ ବାଧାବିଘ୍ନ ସହ୍ୟ କରିବାକୁ ପଡ଼ିଛି । ସେ ୧୯୫୯ ମସିହାରେ ସେକେଣ୍ଡାରୀ ବୋର୍ଡ଼ ହାଇସ୍କୁଲର ଥିଲେ ପ୍ରଥମ ଶିକ୍ଷକ । ସେ ପ୍ରଥମ ଆକାଶବାଣୀର ପ୍ରଯୋଜକ, ଯିଏକି ବେତାର ଓ ଟେଲିଭିଜନର ପ୍ରଯୋଜନା ଶିକ୍ଷା ପାଇଁ B.B.C. ସହାୟତାରେ ବିଲାତ ଯାତ୍ରା କରିଥିଲେ । ଉପଗ୍ରହ ଦ୍ୱାରା ଦୂରଦର୍ଶନ କାର୍ଯ୍ୟକ୍ରମର ସେ ପ୍ରଥମ ପ୍ରଯୋଜକ । ଆକାଶବାଣୀ

କଟକ ଶିକ୍ଷା କାର୍ଯ୍ୟକ୍ରମର ସେ ପ୍ରଥମ ପ୍ରଯୋଜକ । ସେହିପରି ଦୂରଦର୍ଶନ E.T.V. ର ପ୍ରଥମ ପ୍ରଯୋଜକ । ଦୂରଦର୍ଶନରୁ ଅବସର ନେବାପରେ SIET ର ପ୍ରଯୋଜନା ବିଭାଗର ପ୍ରଥମ ପ୍ରଯୋଜନା ଅଧିକାରୀ । ସେ ପ୍ରଥମ ଓଡ଼ିଆ ନିର୍ଦ୍ଦେଶକ, ଯିଏକି ଚଳଚ୍ଚିତ୍ର ନିର୍ମାଣ କରି ରାଷ୍ଟ୍ରପତି ପୁରସ୍କାରପ୍ରାପ୍ତ । (୧୯୬୩ ମସିହାରେ ପ୍ରସ୍ତୁତ ଚଳଚ୍ଚିତ୍ର 'ଲକ୍ଷ୍ମୀ') ସମ୍ପ୍ରତି ସେ ଇନ୍ଦିରା ଗାନ୍ଧି ଜାତୀୟ ମୁକ୍ତ ବିଶ୍ୱବିଦ୍ୟାଳୟ (P.G.J.M.C.) ର ପ୍ରଥମ ଓଡ଼ିଆ ଭିଜିଟିଙ୍ଗ୍ ପ୍ରଫେସର । ଚାରିଶହରୁ ଊର୍ଦ୍ଧ୍ୱ ଲିରିକ୍ସ ରଚନା କରି ସେ ଯଶସ୍ୱୀ । ନାଟକ, ଚଳଚ୍ଚିତ୍ରରେ ସେ ଜଣେ ପ୍ରସିଦ୍ଧ ଗୀତିକାର ଓ ଅଭିନେତା । ବିଶିଷ୍ଟ ପ୍ରଯୋଜକ, ନାଟ୍ୟକାର, ସ୍ୱନାମଧନ୍ୟ ନିର୍ଦ୍ଦେଶକ, ଯଶସ୍ୱୀ ସଂଗଠକ, ସୁପରିଚିତ କଳାକାର । ଓଡ଼ିଆ ଚଳଚ୍ଚିତ୍ରକୁ ବିବିଧ ଦିଗରୁ ସମୃଦ୍ଧ କରିବାରେ ତାଙ୍କର ଦାନ ଅବିସ୍ମରଣୀୟ । ତାଙ୍କର ଲେଖନୀ ଓ କଳାପ୍ରାଣତାର ପ୍ରତିଟି ସ୍ପନ୍ଦନ ନାଟ୍ୟକଳା ଓ ସାହିତ୍ୟର ଉନ୍ନତି ପାଇଁ ଉତ୍ସର୍ଗୀକୃତ । ସେ ମଧ୍ୟ ଜଣେ ଗୀତିନାଟ୍ୟ ଓ ଯାତ୍ରା ନାଟକର ଅମର ଶିଳ୍ପୀ । ତାଙ୍କର ଗୀତରଚନା ହୃଦୟସ୍ପର୍ଶୀ ଓ ସଙ୍ଗୀତ ମଣିଷର ଚିତ୍ତକୁ ମୁଗ୍ଧ କରେ ।

୧୯୮୫ ମସିହା ଜାନୁଆରୀ ପହିଲାରେ ଅବସର ନେଲେ ମଧ୍ୟ ସେ ସ୍ଥିର ହୋଇଯାଇ ନଥିଲେ । ଇମର୍ସନଙ୍କ ଭାଷାରେ- ''ନାହିଁଶ୍ରମ ଠାରୁ ବହୁଶ୍ରମ ଶ୍ରେୟସ୍କର'' ନ୍ୟାୟରେ ସେ ନିଜକୁ ନାଟ୍ୟ ନିର୍ଦ୍ଦେଶନା, ଚଳଚ୍ଚିତ୍ର ନିର୍ମାଣ ବ୍ୟତୀତ ସରକାରୀ ଉଦ୍ୟୋଗମାନଙ୍କରେ ଯୋଗଦେଲେ । Educational Television କାର୍ଯ୍ୟକ୍ରମ ଶିକ୍ଷା ବିଭାଗକୁ ଚାଲିଗଲା ପରେ ଆମ ରାଜ୍ୟର State Institute of Educational Technology ର ପ୍ରଥମ Production-in-charge ଭାବରେ ସେ ପୁଣି ତିନି ବର୍ଷ ପାଇଁ ନିଯୁକ୍ତି ପାଇଲେ ଓ ସେ ବିଭାଗଟିକୁ ଗଢ଼ିବାରେ ନିଜକୁ ନିୟୋଜିତ କଲେ । ଅବସର ପରେ ତିନିବର୍ଷ ଅତିବାହିତ ହୋଇଗଲା । ପୁଣି ସେ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରର ନିର୍ଦ୍ଦେଶକ ଭାବରେ ଯୋଗଦେଲେ ଓ ସମ୍ପୂର୍ଣ୍ଣ ସାକ୍ଷରତା ଯୋଜନାକୁ ସମଗ୍ର ରାଜ୍ୟରେ ପ୍ରସାର କରିବାରେ ଉଦ୍ୟମ କଲେ । ଇତିମଧ୍ୟରେ ଓଡ଼ିଶାରେ ୧୩ଟି ଜିଲ୍ଲା ବଦଳରେ ୩୦ଟି ଜିଲ୍ଲା ହୋଇଗଲା ଓ ସବୁ ଜିଲ୍ଲାରେ ଜନଶିକ୍ଷା କାର୍ଯ୍ୟକ୍ରମର ପ୍ରସାରଣ ପାଇଁ ଗୋଟିଏ ଅପୂର୍ବ ଢେଉ ସୃଷ୍ଟି ହେଲା । ଏଥିରେ ଗଣମାଧ୍ୟମ ଯଥା- ନାଟକ, ସଙ୍ଗୀତ, ଫିଲ୍ମ, ଭିଡ଼ିଓ ଓ ରେଡ଼ିଓ କାର୍ଯ୍ୟକ୍ରମଗୁଡ଼ିକ ଲୋକାଭିମୁଖୀ ହୋଇ ଅପୂର୍ବ ଜାଗରଣ ସୃଷ୍ଟି କଲା । ତାହା ଓଡ଼ିଶାରେ ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କର ଅସାଧାରଣ ଦୃଢ଼ ନେତୃତ୍ୱ ପାଇଁ ହିଁ ସମ୍ଭବ ହୋଇଥିଲା । ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରରେ ତିନି ବର୍ଷ ଚାରି ମାସ କାର୍ଯ୍ୟ କରି ସେ ଗତାନୁଗତିକ ରୀତିରେ ଅବସର ନେଇଥିଲେ ମଧ୍ୟ ସେ କଳାକାର, ନାଟ୍ୟକାର ଓ ସୃଜନଶୀଳତାରୁ ଅବସର ନେଇ

ନାହାନ୍ତି । ଏବେ ମଧ କଳା ସାମ୍ରାଜ୍ୟର ବିବିଧ ବିଭାଗରେ ସଂଶ୍ଳିଷ୍ଟ ହୋଇ ରହିଛନ୍ତି ଓ ଇନ୍ଦିରା ଗାନ୍ଧି ଜାତୀୟ ମୁକ୍ତ ବିଶ୍ୱବିଦ୍ୟାଳୟରେ ସାମ୍ବାଦିକତା ଓ ଗଣମାଧମ ଶିକ୍ଷା ଦେବାରେ ଜଣେ ଅଧାପକ ଭାବରେ କାର୍ଯ୍ୟ କରୁଛନ୍ତି । ସମ୍ପ୍ରତି ସେ ବରିଷ୍ଠ ଗଣମାଧମ ବିଶେଷଜ୍ଞ ଭାବରେ ପରିଚିତ ।

**ସୃଷ୍ଟି ସମ୍ଭାର :**

ତାଙ୍କର ରଚିତ ଓ ନିର୍ଦ୍ଦେଶିତ ନାଟକ, ଚଳଚ୍ଚିତ୍ର, ଗୀତିନାଟ୍ୟ, ଚିତ୍ରନାଟ୍ୟ, ବେତାର ନାଟକ, ଦୂରଦର୍ଶନ ନାଟକ ଓ ଗୀତ-ସଂଗୀତ ପ୍ରଭୃତି ବହୁ ସମ୍ଭାର ରହିଛି । ସେଗୁଡ଼ିକ ମଧ୍ୟରେ ତାଙ୍କର ପ୍ରତିଭାର ମୁଦ୍ରାଙ୍କ ଚିହ୍ନିତ । ଯଥା-

**(୧) ନାଟକ :**

(କ) ସୁନା ମାଟି (୧୯୫୧) ରଚିତ ଓ ନିର୍ଦ୍ଦେଶିତ
(ଖ) ପରିଶୋଧ (୧୯୫୬)
(ଗ) ଶଙ୍ଖାଳୀ (୧୯୫୭)
(ଘ) ପତ୍ନୀ (୧୯୬୦)
(ଙ) ଏକାଙ୍କିକା ନଅଟି (୧୯୬୫/୬୬)
(ଚ) ଅକ୍ଷାଂଶ ଓ ଦ୍ରାଘିମା

**(୨) ଗୀତିନାଟ୍ୟ :**

(୧) ଶ୍ରୀଗୁଣ୍ଡିଚା
(୨) ଅନ୍ୟାନ୍ୟ ବହୁ ରଚନା

**(୩) ଚଳଚ୍ଚିତ୍ର (ଚିତ୍ରନାଟ୍ୟ ଓ ସଂଳାପ) :**

(କ) ଲକ୍ଷ୍ମୀ (୧୯୬୦) (ରାଷ୍ଟ୍ରପତି ପୁରସ୍କାର)
(ଖ) 'କା'- (୧୯୬୫) (ରାଷ୍ଟ୍ରପତି ପୁରସ୍କାର)
(ଗ) ସ୍ତ୍ରୀ- (୧୯୬୯) (ରାଷ୍ଟ୍ରପତି ପୁରସ୍କାର)
(ଘ) ସଂସାର- (୧୯୭୧)
(ଙ) ଛ'ମାଣ ଆଠଗୁଣ୍ଠ (୧୯୮୦)
(ଚ) ମହୁଆ- (୧୯୮୫)

**(୪) ବେତାର ନାଟକ :**

(କ) ଦିଗ୍‌ବଳୟ
(ଖ) ପାଞ୍ଚାଳୀର ପ୍ରତିଜ୍ଞା
(ଗ) ତରଙ୍ଗ

**(୫) ଦୂର ଦର୍ଶନ ନାଟକ :**

(କ) ରୁଚି ଓ ପଦ୍ମ

(ଖ) ଯୋଗୀ

(ଗ) ଯୋଡ଼ି ଯାଉଁନି

**(୬) ଗୀତ :**

(କ) ଚଉପଦୀ ଚାରିଶହ

(ଖ) ବହୁ ଚଳଚ୍ଚିତ୍ର ଗୀତ

(ଗ) ନାଟକରେ ସଂଯୋଜିତ ଗୀତ

**କଳାକାର ସାରଦାପ୍ରସନ୍ନ :**

ଗ୍ରାମ୍ୟ ଜୀବନର ପ୍ରକୃତି ଓ ମେଳଣ ପ୍ରତି ସାରଦାପ୍ରସନ୍ନ ଥିଲେ ଆକୃଷ୍ଟ । ସେ କୁହନ୍ତି-

"ଗାଁରେ ହେତୁ ହେଲା ଦିନରୁ ଅନ୍ତତଃ ଛଅ ବର୍ଷ ଯାଏ ମୁଁ ରାମନବମୀ, ବିଭିନ୍ନ ଜାନିଯାତ୍ରା, ବିଶେଷକରି ଦୋଳପୂର୍ଣ୍ଣମୀରେ ମୁଁ ଆମ ଗାଁ ମେଲଣ ସହିତ ବଡ଼ବାପାଙ୍କ ସାଙ୍ଗରେ ବୁଲି ବୁଲି ବିଭିନ୍ନ ଗାଁମାନଙ୍କରେ ମେଲଣ ଦେଖୁଥିଲି । ସେଇଦିନଠୁ କେମିତି ଝାଞ୍ଜ, ମୃଦଙ୍ଗ ବଜେଇବି, ରାମନବମୀରେ ଯେଉଁ ଅଭିନୟ ହେଉଥିଲା, କେମିତି ବଡ଼ ହେଲେ ଅଭିନୟ କରିବି, ପ୍ରବଳ ଇଚ୍ଛା ଜାଗ୍ରତ ହୋଇଥିଲା । ମୋର ମନେଅଛି ଆମ ଗାଁ ଦାଣ୍ଡରେ ଦୋଳ କୀର୍ତ୍ତନ ଯାଉଥିଲା, ମୁଁ ସାଙ୍ଗରେ ଯାଉଥିଲି । ହଠାତ୍ ମୋର ଇଚ୍ଛା ହେଲା ମୃଦଙ୍ଗଟାକୁ ବଜେଇବି । ବଜେଇଦେଲି ମଧ । ସ୍କୁଲରେ ପଢ଼ିଲାବେଳେ ମୁଁ ଗୀତ ବୋଲୁଥିଲି । ମୋର ପ୍ରଥମ ଗୀତ ବୋଲିବା ହେଲା ୧୯୩୬ରେ ପୂଜ୍ୟ ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନଙ୍କର ବୋଲିଥିବା ଛାନ୍ଦ, "ବିତନକୁ ଆଲିଙ୍ଗନ କରି ଜାହ୍ନବି ଶୋଭନ, ହରେ ସ୍ମର ବରତାପେ ଚାରୁଧାରାସେ ।" ମଁ ମୃଦଙ୍ଗଟାର ବଡ଼ ପାଖକୁ ଡାଉଁ ଡାଉଁ କରି ବଜେଇଦେଲି । ବଜେଇଲା ବାଲାଠୁଁ ଗାଳି ଖାଇଲି । କିନ୍ତୁ ତାଳଟା ଠିକ୍ ଥିଲା ବୋଲି ସେ ମୋ ପିଠି ଥାପୁଡ଼େଇଦେଲେ । ପରେ କହିଲେ- "ସାରଟା (ସାରଦା ପ୍ରସନ୍ନ ନାୟକ) ବଡ଼ ହେଲେ ଗାନ୍ଧର୍ବ ବିଦ୍ୟାରେ ପାରଙ୍ଗମ ହେବ ।"

ଗଣିତଜ୍ଞ କରାଇବା ପାଇଁ ତାଙ୍କ ବଡ଼ବାପା ଗଣିତଜ୍ଞ ମହାଦେବ ନାୟକ ଆଶା ପୋଷଣ କରି ଗଣିତ ଶିକ୍ଷା ଦେଉଥିଲେ ମଧ ଭାବବିହ୍ୱଳ ହୋଇ ପିଲାଦିନୁ

ଗାନ୍ଧର୍ବ ବିଦ୍ୟାରେ ପାରଙ୍ଗମ ହେବ ବୋଲି ଆଶୀର୍ବାଦ କରିଥିଲେ । ସେହି ଆଶୀର୍ବାଦ ଫଳବତୀ ହୋଇଥିଲା । ସାରଦାପ୍ରସନ୍ନ ଉଚ୍ଚ ଇଂରାଜୀ ପଢୁଆ ହେଲେ ମଧ୍ୟ ସେ ଥିଲେ କଳାକାର । ଅଭିନୟ, ବାଦ୍ୟ, ଗୀତ ପ୍ରତି ସେ ଥିଲେ ଆକୃଷ୍ଟ । ଗାଁରେ ରାମନବମୀର ରାମାୟଣ ଅଭିନୟ ତାଙ୍କୁ ଅଭିମନ୍ତିତ କରିଥିଲା । ଗାଁ ଦାଣ୍ଡର କୀର୍ତ୍ତନ ତାଙ୍କୁ ବାଦ୍ୟକାର ଓ ନିମାଇଁ ଚରଣ ହରିଚନ୍ଦନଙ୍କ ସୁଲଳିତ କଣ୍ଠର ଗୀତ ତାଙ୍କୁ କଣ୍ଠଶିଳ୍ପୀ ତଥା ଗୀତିକାର ଓ ସଙ୍ଗୀତଜ୍ଞ କରାଇଥିଲା । ସୁଦୀର୍ଘ ୫୪ ବର୍ଷର ରଙ୍ଗମଞ୍ଚ ଜୀବନ ଓ ଦୀର୍ଘ ୪୪ ବର୍ଷ ଓଡ଼ିଆ ଚଳଚ୍ଚିତ୍ର ନିର୍ମାଣରେ ସେ ନିଜକୁ ନିୟୋଜିତ କରି ଯଶସ୍ୱୀ ହୋଇଛନ୍ତି । ଏହା ବ୍ୟତୀତ ଦୀର୍ଘ ୫୨ ବର୍ଷ ସେ ରେଡ଼ିଓ ଓ ଟେଲିଭିଜନରେ ନାଟ୍ୟ ନିର୍ଦ୍ଦେଶନା ଓ ପ୍ରଯୋଜନା କରି ସୁନାମ ଅର୍ଜନ କରିଛନ୍ତି । ମଞ୍ଚ ନାଟକ ଠାରୁ ଆରମ୍ଭ କରି ଚିତ୍ରନାଟ୍ୟର ଗୀତରଚନା କରି ସୁପରିଚିତ ଗୀତିକାର ଭାବରେ କୀର୍ତ୍ତି ଅର୍ଜନ କରିଛନ୍ତି । ଗତାନୁଗତିକ ଚାକିରି ଜୀବନରୁ ଅବସର ନେଇଥିଲେ ମଧ୍ୟ ସେ କଳାକାରର ଜୀବନ, ନାଟ୍ୟକାରର ସୃଜନଶୀଳତାରୁ ଅବସର ନେଇ ନାହାନ୍ତି । ଏବେ ମଧ୍ୟ ସେ କଳାଜଗତର ପ୍ରତିଟି ବିଭାଗରେ ସଂଶ୍ଳିଷ୍ଟ । ସେ ଏକ କଳାକାର ପରିବାରରେ ଜନ୍ମ, ପୁଣି କଳା, ସାହିତ୍ୟ, ନାଟକ, ସଙ୍ଗୀତ ଓ ଚଳଚ୍ଚିତ୍ର ନିର୍ମାଣ ପାଇଁ ଉତ୍ସର୍ଗୀକୃତ ।

### ଚଳଚ୍ଚିତ୍ର ଓ ସେ :

୧୯୫୬ ମସିହାରୁ ସେ ଚଳଚ୍ଚିତ୍ର ନିର୍ମାଣରେ ସକ୍ରିୟ ଯୋଗଦାନ କରିଥିଲେ । ଚଳଚ୍ଚିତ୍ର କ୍ଷେତ୍ରରେ ସାରଦାପ୍ରସନ୍ନ ଥିଲେ କିମ୍ବଦନ୍ତୀ ପୁରୁଷ । ସେ ବହୁ ପ୍ରତିଭାର ଅଧିକାରୀ । ସେ ଚଳଚ୍ଚିତ୍ର ନିର୍ମାଣର ଅଭିନୟ, ସଂଳାପ, ଗୀତ ରଚନା, ଟେକ୍‌ନିକ୍, ନିର୍ଦ୍ଦେଶନା ଓ ପ୍ରଯୋଜନା ପର୍ଯ୍ୟନ୍ତ ପ୍ରତ୍ୟେକଟି ବିଭାଗରେ ଦକ୍ଷ । ନିଜର ଦକ୍ଷତା ପ୍ରମାଣିତ କରି ସେ ସର୍ବଜନରେ ପ୍ରଶଂସିତ । ତାଙ୍କର ସେଦିନର ଚଳଚ୍ଚିତ୍ର ଆଜି ଯାଏ ମାନସପଟରେ ଅଭୁଲା- ଅପାସୋରା । ଆଜିର ଚଳଚ୍ଚିତ୍ରରେ ବ୍ୟବସାୟିକ ଦୃଷ୍ଟି ଓ ବିଜାତୀୟ ଭାବ ରହିଯାଉଛି । ତେବେ ସେ ଖାଣ୍ଟି ଓଡ଼ିଆ ସଂସ୍କୃତି ଓ ସଭ୍ୟତାକୁ ବହନ କରି ଚଳଚ୍ଚିତ୍ର ଶିଳ୍ପ ନିର୍ମାଣ କରିଥିଲେ । ଯାହା ରାଷ୍ଟ୍ରପତି ପୁରସ୍କାର କେବଳ ଅର୍ଜନ କରିନାହିଁ, ଏହା ବ୍ୟତୀତ ବହୁ ସମ୍ମାନ ଓ ଜୀବନ୍ତ କଳାକୁଶଳତାରେ ଅମର ସ୍ୱାକ୍ଷର ବହନ କରିଛି ।

ସାରଦାପ୍ରସନ୍ନଙ୍କ ନିର୍ଦ୍ଦେଶିତ ଓ ଲିଖିତ ଚଳଚ୍ଚିତ୍ରଗୁଡ଼ିକ ମଧ୍ୟରେ-

(୧) 'ଲକ୍ଷ୍ମୀ'- (୧୯୬୦)- (ରାଷ୍ଟ୍ରପତି ପୁରସ୍କାରପ୍ରାପ୍ତ)
(୨) 'ଜା'- (୧୯୬୫)- (ରାଷ୍ଟ୍ରପତି ପୁରସ୍କାର)

(୩) 'ସ୍ତ୍ରୀ'- (୧୯୬୯)- (ରାଷ୍ଟ୍ରପତି ପୁରସ୍କାର)
(୪) ''ସଂସାର'- (୧୯୭୧)-
(୫) 'ଛ'ମାଣ ଆଠଗୁଣ୍ଠ'- (୧୯୮୦)
(୬) 'ମହୁଆ'- (୧୯୮୫)
(୭) 'ହୀରାନୀଳା'
(୮) ବହୁ ଚଳଚ୍ଚିତ୍ର ନିର୍ମାଣରେ ବ୍ରତୀ

'ଚଳଚ୍ଚିତ୍ର' ନିର୍ମାଣ କରି ରାଷ୍ଟ୍ରପତି ପୁରସ୍କାର ପାଇବାରେ ସେ ପ୍ରଥମ ଓଡ଼ିଆ । 'ଲକ୍ଷ୍ମୀ' (୧୯୬୦) ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର । ଚଳଚ୍ଚିତ୍ରର ବିକାଶ ଦିଗରେ ସେ ନିଜକୁ ଉତ୍ସର୍ଗ କରିଛନ୍ତି । ଭଲ ଚଳଚ୍ଚିତ୍ରଟିଏ ନିର୍ମାଣ କରିବା ତାଙ୍କର ଏକ ନିଶା । ନାଟକ ଓ ଚଳଚ୍ଚିତ୍ର ପ୍ରତି କାହିଁକି ଆକୃଷ୍ଟ ହେଲେ ବୋଲି ପ୍ରଶ୍ନର ଉତ୍ତରରେ ସେ କୁହନ୍ତି-

''ପିଲାଦିନୁ ଗୀତିନାଟ୍ୟ, ରାମଲୀଳା ଦେଖୁଥିଲି । ୧୦ ବର୍ଷ ବୟସରୁ ମୁଁ ନିର୍ବାକ୍ ଚଳଚ୍ଚିତ୍ର ଠାରୁ ଆରମ୍ଭ କରି ସବାକ୍ ଚଳଚ୍ଚିତ୍ର ପର୍ଯ୍ୟନ୍ତ ବହୁତ ଦେଖୁଥିଲି । ସେତେବେଳେ ସିନେମା ଟିକେଟ୍‌ର ମୂଲ୍ୟ ଚାରି ପଇସା ଥିଲା । ତେବେ ପଇସା ଏତେ ଦୁର୍ମୂଲ୍ୟ ଥିଲା ଯେ; ସେଇ ଚାରି ପଇସା ବି ମିଳୁ ନଥିଲା । ତଥାପି ଜଳଖିଆ ଖାଇବା ପଇସାରେ ମାର୍ଟିନ୍ ଶୋ (Martin Show)ରେ ହଜାର ହଜାର ସିନେମା ଦେଖିଛି । ଏବେ ବି ପରିଣତ ବୟସରେ ରାତି ୧୨ଟା ପର୍ଯ୍ୟନ୍ତ ଟି.ଭି. ଦେଖେ ଏବଂ ବହୁତ ଶୁଣେ । ତାହା ଚିତ୍ତବିନୋଦନ ପାଇଁ ନୁହେଁ, ସେଇଟା ଶିକ୍ଷା ପାଇଁ । ଏହା ବ୍ୟତୀତ ମୁଁ ପଢ଼େ । ଏବେ ବି ପଢୁଛି । ମୋର ପସନ୍ଦର ବିଷୟ ହେଲା- ଉପନ୍ୟାସ, ଆତ୍ମଜୀବନୀ ଓ ନାଟକ । ମଞ୍ଚ, ଆକାଶବାଣୀ, ଦୂରଦର୍ଶନ ମୋର ଜୀବନ । ନାଟକ, ଚଳଚ୍ଚିତ୍ର, ଗୀତରଚନା ଓ ଅଭିନୟ ମୋର ପ୍ରାଣସ୍ପନ୍ଦନ ।''

### ରେଡ଼ିଓ ଓ ଟେଲିଭିଜନ :

୧୯୪୮ ମସିହା ଜାନୁଆରୀ ୨୮ ତାରିଖରେ ଅଲ୍ ଇଣ୍ଡିଆ ରେଡ଼ିଓ ଷ୍ଟେସନ୍ କଟକରେ ସ୍ଥାପିତ ହେଲା । ୧୯୪୮ ମସିହାରୁ ସେ ନାଟକ, ସଙ୍ଗୀତ, କଥା, ରୂପକ କାର୍ଯ୍ୟକ୍ରମଗୁଡ଼ିକରେ ସମ୍ପୃକ୍ତ ଥିଲେ, କିନ୍ତୁ ୧୯୬୩ ମସିହାରେ ଆକାଶବାଣୀର ଶିକ୍ଷା କାର୍ଯ୍ୟକ୍ରମର ଜଣେ ପ୍ରଯୋଜକ ଭାବ୍‌ରେ ଯୋଗଦେଲେ । ଏହି ବେତାର ଶିକ୍ଷା କାର୍ଯ୍ୟକ୍ରମର ପ୍ରଯୋଜନା ଥିବା ସମୟରେ ୧୯୭୩ ମସିହାରେ ଟ୍ରେନିଂ ପାଇଁ ସେ କେନ୍ଦ୍ର ସରକାରଙ୍କ ଦ୍ୱାରା ମନୋନୀତ ହୋଇ ବିଲାତ ଗଲେ । କାରଣ ସେତେବେଳେ ଟେଲିଭିଜନ ଓ ରେଡ଼ିଓ ଶିକ୍ଷା କାର୍ଯ୍ୟକ୍ରମର ପ୍ରଯୋଜନା ଟ୍ରେନିଂ ସେଣ୍ଟର ଲଣ୍ଡନରେ

ଥିଲା । (Center for Educational Development, London) । ଲଣ୍ଡନ ବିଶ୍ୱବିଦ୍ୟାଳୟ ପାଖରେ ଏହି ଟ୍ରେନିଂ କେନ୍ଦ୍ରଟି ଅବସ୍ଥିତ । B.B.C. ସହଯୋଗରେ ଏହି ଟ୍ରେନିଂ ଦିଆଯାଉଥିଲା । ଲଣ୍ଡନରୁ ତାଲିମ୍ ପାଇ ଫେରିଆସିବା ପରେ ସେ ୧୯୭୪ ମସିହାରେ ଉପଗ୍ରହ ଟେଲିଭିଜନ କାର୍ଯ୍ୟକ୍ରମରେ ଯୋଗଦେଲେ । ରେଡ଼ିଓରୁ ଟେଲିଭିଜନକୁ ବଦଳି ହୋଇ ଆସିଲେ । ୧୯୭୩-୭୪ରୁ ତୁଳସିପୁର କଟକଠାରେ ଉପଗ୍ରହ ଟେଲିଭିଜନ କେନ୍ଦ୍ର ଆରମ୍ଭ ହେଲା । ତାହା ଉପଗ୍ରହ ଜରିଆରେ କାର୍ଯ୍ୟକ୍ରମ ପରିବେଷଣ କରୁଥିଲା । ପରେ ଏହି ଟେଲିଭିଜନର ନାଁ ଦୂରଦର୍ଶନ ହେଲା ଓ ପରେ ସମଗ୍ର ଦେଶରେ ଦୂରଦର୍ଶନ କାର୍ଯ୍ୟ ବ୍ୟାପକ ହୋଇଗଲା । ରେଡ଼ିଓ ଓ ଦୂରଦର୍ଶନରେ ରହଣି କାଳରେ ଶତାଧିକ ନାଟକ, ଗୀତିନାଟ୍ୟ, ଯାତ୍ରାର ସଫଳ ପ୍ରଯୋଜନା କରିଛନ୍ତି । ତାହା ତାଙ୍କର ଅନୁଭବ ଓ କୌଶଳ ପ୍ରୟୋଗର ସଫଳ ପ୍ରତିଶ୍ରୁତି । ୧୯୮୫ ମସିହା ଜାନୁଆରୀ ପହିଲାରୁ ବରିଷ୍ଠ ପ୍ରଯୋଜକ ଭାବରେ ଅବସର ନେବା ପରେ ସେ ସ୍ଥିର ହୋଇଯାଇ ନାହାନ୍ତି । ଚଳଚ୍ଚିତ୍ର ନିର୍ଦ୍ଦେଶନା ସହିତ ବିବିଧ ନାଟ୍ୟ ସଙ୍ଗଠନ ସହିତ ସଂଶ୍ଳିଷ୍ଟ ହେଲେ । ସେ କୁହନ୍ତି-

> ''ମୁଁ ଏବେ ଅନୁଭବ କରୁଛି ମୋର ବୟସ ହୋଇଛି ସିନା, ମୁଁ ବୃଦ୍ଧ ହୋଇନାହିଁ ।''

## ନାଟକ ଓ ନାଟ୍ୟକଳା :

ପିଲାଟି ଦିନରୁ ସେ ନାଟ୍ୟକଳା ପ୍ରତି ଆକୃଷ୍ଟ । ଗାଁର ରାମଲୀଳା, ମେଲଣ ପଡ଼ିଆର ଯାତ୍ରା ଆଉ ଲୋକନାଟକ ପ୍ରତି ସେ ଆକୃଷ୍ଟ ହୋଇ ଅନୁଭବ ଓ ଅଭିଜ୍ଞତା ଅର୍ଜନ କଲେ । 'ସୁନାମାଟି' ତାଙ୍କର ପ୍ରଥମ ସୃଷ୍ଟି । ୧୯୫୧ରେ ରଚିତ ଓ ତାଙ୍କଦ୍ୱାରା ନିର୍ଦ୍ଦେଶିତ । ସେ କୁହନ୍ତି-

> ''ଗାଁର ପରିବେଶଟା ଏ ପର୍ଯ୍ୟନ୍ତ ମୋ ମନରେ ଛାପି ହୋଇ ରହିଯାଇଛି । ୧୯୫୧ରେ ମୁଁ ମୋର ପ୍ରଥମ ନାଟକ 'ସୁନାମାଟି' ଲେଖିଲି ଓ ତହିଁରେ ଆମ ଗାଁର ପରିବେଶଟା ନିଖୁଣ ଭାବରେ ଚିତ୍ରଣ କରାହୋଇଛି । ଏହି ନାଟକଟିକୁ ମୁଁ ପ୍ରଥମେ ନିର୍ଦ୍ଦେଶନା ଦେଇଥିଲି । ତାହା କିଛିଦିନ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ସୌଖୀନ୍ କଳାକାରମାନଙ୍କ ଦ୍ୱାରା ''ଜନ ସଂସ୍କୃତି ସଂଘ'' କଟକର ପ୍ରତ୍ୟକ୍ଷ ପରିଚାଳନାରେ ମଞ୍ଚସ୍ଥ ହୋଇଥିଲା ଓ ଖୁବ୍ ପ୍ରଶଂସିତ ହୋଇଥିଲା । ପରେ କଳ୍ପନା କଳା ମନ୍ଦିର ପରିଶୋଧା, ଶଙ୍ଖାଳି, ପଦ୍ମୀ ପ୍ରଭୃତି ଅନ୍ନପୂର୍ଣ୍ଣା ଓ ଜନତା ରଙ୍ଗମଞ୍ଚରେ ମଞ୍ଚସ୍ଥ ହୋଇ ମଞ୍ଚ ସଫଳତା ଅର୍ଜନ କଲା ।''

'ସୁନାମାଟି' (୧୯୫୧) ଶ୍ରୀଯୁକ୍ତ ନାୟକଙ୍କର ପ୍ରାଥମିକ ନାଟ୍ୟ ସୃଷ୍ଟି । ପରିଶୋଧ (୧୯୫୬), ଶଙ୍ଖାଳି (୧୯୫୭) ଓ ପତ୍ନୀ (୧୯୬୦) ତାଙ୍କର ଚାରିଗୋଟି ସଫଳ ନାଟ୍ୟକୃତି । ଏହି ସମସ୍ତ ନାଟକ ସାମାଜିକ ପୃଷ୍ଠଭୂମି ଉପରେ ରଚିତ । ସମାଜ ଜୀବନର ଛବି ବ୍ୟତୀତ ମାନବବାଦୀ ସମ୍ବେଦନଶୀଳତା ନାଟ୍ୟକୃତିଗୁଡ଼ିକର ଭାବବିନ୍ଦୁ । ସେଥିପାଇଁ ଦର୍ଶକ ପ୍ରାଣରେ ରେଖାପାତ କରେ । ଭଞ୍ଜକିଶୋର ପଟ୍ଟନାୟକ ସମକାଳୀନ ନାଟ୍ୟ ପ୍ରତିଭା ସାରଦାପ୍ରସନ୍ନ ଉଦାର ହୃଦୟ ଓ ଆଦର୍ଶ ପ୍ରତିଷ୍ଠାର ରୂପକାର । ଏହାବ୍ୟତୀତ ସେ ଗୀତିନାଟ୍ୟକାର, ଚଳଚ୍ଚିତ୍ର ସ୍ରଷ୍ଟା, ସଂଳାପ ଲେଖକ, ବେତାର ନାଟ୍ୟଶିଳ୍ପୀ ଓ ଦୂରଦର୍ଶନ ନାଟ୍ୟକାର । ପ୍ରତିଟି କ୍ଷେତ୍ରରେ ତାଙ୍କ ନାଟ୍ୟକୃତିର ମୁଦ୍ରାଙ୍କ ଚିହ୍ନିତ । କାରଣ ମଞ୍ଚ ସଫଳତା ଏହାର ଅନ୍ୟତମ କାରଣ । ମଞ୍ଚକଳାର ଅବକ୍ଷୟ କାହିଁକି ଘଟିଛି ପ୍ରଶ୍ନର ଉତ୍ତରରେ ସେ କହନ୍ତି-

> "ମଞ୍ଚ (Theatre) ର ଅବକ୍ଷୟ ଘଟିଛି । ମଞ୍ଚ ଆଜି ବିପର୍ଯ୍ୟସ୍ତ । ୧୯୫୧ ମସିହାରେ ଘରସଂସାର ଦେଖିବା ପାଇଁ ମୁଁ ଆଡ୍‌ଭାନ୍‌ସ ବୁକିଂ କାଉଣ୍ଟରରୁ ଅନ୍ନପୂର୍ଣ୍ଣାରୁ ଫେରିଛି କେତେଥର । ଲୋକମାନେ ସେତେବେଳେ ମଞ୍ଚକୁ- ମଞ୍ଚନାଟକକୁ ଭଲ ପାଉଥିଲେ । କାରଣ ସେଥିରେ ଓଡ଼ିଆ ନାଟକର ବୁନିଆଦି ଥିଲା । ନାଟକରେ ପାଶ୍ଚାତ୍ୟ ଢଙ୍ଗ-ରଙ୍ଗ ଶୈଳୀକୁ ଅନୁକରଣ କରିବା ଓ ଭାରତୀୟ, ଓଡ଼ିଆ ପରମ୍ପରାକୁ ଅବହେଳା କରିବା ମଞ୍ଚ ଅବକ୍ଷୟର ମୂଳ କାରଣ ।"

## ଅଭିନେତା ଓ ଅଭିନୟ :

ଶ୍ରୀଯୁକ୍ତ ନାୟକ କେବଳ ନାଟ୍ୟକାର, ଗୀତିକାର, ନିର୍ଦ୍ଦେଶକ ଅଥବା ପ୍ରଯୋଜକ ନୁହନ୍ତି, ସେ ମଧ ଜଣେ ଅଭିନେତା । କୁଶଳ ଅଭିନୟ ତାଙ୍କ କଳାପ୍ରତିଭାର ପରିଚୟ । ସେ ମଞ୍ଚନାଟକର ଅଭିନେତା । ଅଗଣିତ ଜନମାନସର ସ୍ମରଣୀୟ କଳାକାର । ଗୀତିନାଟ୍ୟ, ନାଟକ, ଚଳଚ୍ଚିତ୍ର ଆଦିରେ ତାଙ୍କର ଅଭିନୟ ନିଖୁଣ । ଗଣକବି ବୈଷ୍ଣବ ପାଣିଙ୍କ ଗୀତିନାଟ୍ୟ ତାଙ୍କ ଅଭିନୟ ଜୀବନ ପାଇଁ ପ୍ରେରଣାର ଉତ୍ସ । ବୈଷ୍ଣବ ପାଣିଙ୍କ ଧୋବାର ଭୂମିକା ଓ ଆଶୁକବିତ୍ୱ ତଥା ଅଭିନୟ କୌଶଳ ତାଙ୍କୁ ବିଶେଷ ଆକୃଷ୍ଟ କରିଥିଲା । 'ଲକ୍ଷ୍ମୀ', 'ସ୍ତ୍ରୀ' 'କା', 'ସଂସାର', 'ହୀରାନୀଳା', 'ଛ'ମାଣ ଆଠଗୁଣ୍ଠ' ପ୍ରଭୃତି ଚଳଚ୍ଚିତ୍ରରେ ସେ ଅଭିନୟ କରିଛନ୍ତି । ଏହି ଅଭିନୟ ତାଙ୍କର ଦକ୍ଷତାକୁ ପ୍ରମାଣ କରିଛି । ସେ କୁହନ୍ତି-

> "ମନୋରଞ୍ଜନ ଦାସଙ୍କ ବହ୍ନି ଜଗବନ୍ଧୁ ନାଟକରେ ଅଳ୍ପ ସମୟ ପାଇଁ ଅଭିନୟ କରିଥିଲେ ମାଷ୍ଟର ମାଣିଆ (ରାମଚନ୍ଦ୍ର ମାଣିଆ) ଜୟୀ ରାଜଗୁରୁ

ଭୂମିକାରେ ସେ ଫାଶୀ ପାଇଥିଲେ । ସେ ଅଭିନୟ ଏତେ ଜୀବନ୍ତ ହୋଇଥିଲା ଯେ; ବିଲାତ ହୋଇଥିଲେ ସେ ସର୍ବଶ୍ରେଷ୍ଠ ହୋଇଥା'ନ୍ତେ । ଓଡ଼ିଶାରେ ସେ ବିଚାର ନାହିଁ, କେବଳ ଏଠି ଅବହେଳା ଓ ଅସମ୍ମାନ ।''

ଶ୍ରୀଯୁକ୍ତ ନାୟକ ନିଜେ ଥିଲେ ଅଭିନେତା । ସେ କୁଶଳୀ ଅଭିନେତାଙ୍କୁ ପ୍ରଶଂସା କରୁଥିଲେ । ସେମାନଙ୍କୁ ସମ୍ମାନ କରୁଥିଲେ । ସେ ପୁଣି ତାଙ୍କ ଅନୁଭବରୁ କହନ୍ତି-

''ଲଣ୍ଡନରେ ଥିଲାବେଳେ ବି.ବି.ସି. (B.B.C.) ରେ ଏକ ଆଲୋଚନାଚକ୍ର ହେଉଥିଲା । ଆଲୋଚନାଚକ୍ର ଶେଷରେ 'ହାମ୍‌ଲେଟ୍' ଅଭିନୟ ହେଲା । ଲରେନ୍‌ସଙ୍କ ହାମ୍‌ଲେଟ୍ ଅଭିନୟ ଥିଲା ଜୀବନ୍ତ । ମୁଁ ଭାବପ୍ରବଣ ହୋଇ ଲରେନ୍‌ସଙ୍କୁ ବହୁ ପ୍ରଶଂସା କଲି ହାମ୍‌ଲେଟ୍ ଅଭିନୟ ପାଇଁ । ମୁଁ ତାଙ୍କୁ ପ୍ରଶଂସା କରି କହିଲି- ''ସାର୍ ଅଲିଭର ଲରେନ୍‌ସ । ସେ ଅଭିନୟରୁ ସାର୍ ଉପାଧି ପାଇଲେ । ବିଲାତର ସର୍ବଶ୍ରେଷ୍ଠ ସମ୍ମାନ ଲର୍ଡ଼ ସମ୍ମାନ ସେ ପାଇସାରିଥିଲେ । ମୁଁ ବିହ୍ୱଳିତ ହେଲି । ସେମାନେ କିପରି ଅଭିନୟରେ ଅଭିନେତାଙ୍କୁ ସର୍ବଶ୍ରେଷ୍ଠ ସମ୍ମାନ ଦେଇପାରନ୍ତି ।''

ଶ୍ରୀଯୁକ୍ତ ନାୟକ ଦୂରଦର୍ଶନ ଓ ଆକାଶବାଣୀରେ ପ୍ରଯୋଜକ ଥିବା କାଳରେ ବହୁ ପ୍ରତିଭାବାନ୍ କଳାକାରଙ୍କୁ ସମ୍ମାନ ଦେବା ଓ ସେମାନଙ୍କ କଳାର ମୂଲ୍ୟାଙ୍କନ କରାଇବାରେ ନିଜକୁ ନିୟୋଜିତ କରିଥିଲେ । ସେ ଥିଲେ ଯଥାର୍ଥରେ ଚିହ୍ନରା ଗ୍ରାହକ । ସେ ତାଙ୍କ ଅଭୁଲା ଅନୁଭବରୁ କହନ୍ତି-

''ଅଭିନେତ୍ରୀ ରାଧାରାଣୀ ଦେବୀ । ମୁଁ ତାଙ୍କୁ ପୁରୀରୁ ଡକାଇ ଆଣିଥିଲି ଦୂରଦର୍ଶନ (ତୁଳସୀପୁର) କେନ୍ଦ୍ରକୁ ପ୍ରତିଭା ପରିଚୟ କାର୍ଯ୍ୟକ୍ରମରେ । ସେ ପେଟ ପୋଷିବା ପାଇଁ ପୁରୀରେ ପାନ ଦୋକାନଟିଏ କରିଥିଲେ । ଖବର ନେଇ ମୁଁ ଡକାଇଲି । ସେ ଦୂରଦର୍ଶନ ତୁଳସୀପୁର, କଟକରେ ପହଞ୍ଚି କାନ୍ଦିବାକୁ ଆରମ୍ଭ କଲେ । କେବଳ ପଦେ କଥା କହିପକାଇଲେ- ''ମୋତେ ଖୋଜି ପାଇଲେ କେମିତି ?'' ଅଭିନେତ୍ରୀଙ୍କର ଅଭିମାନ ସୁସ୍ପଷ୍ଟ ।''

ଆଉ ଏକ ଅଭୁଲା ସ୍ମୃତି ଅନୁଭବରୁ ଶ୍ରୀଯୁକ୍ତ ନାୟକ କହନ୍ତି-

''ଓଡ଼ିଶାର ଜଣେ ବିଖ୍ୟାତ ତବଲା ବାଦକ ଶ୍ରୀଯୁକ୍ତ କ୍ଷେତ୍ରମୋହନ କର । ତାଙ୍କର ଜାତୀୟ ଖ୍ୟାତି ରହିଛି । ଯିଏକି ତବଲାରେ ଖଇ ଫୁଟାଇଦେଉଥିଲେ । ହଠାତ୍ ସେ ହୃଦ୍‌ରୋଗରେ ଆକ୍ରାନ୍ତ ହେବାରୁ ତବଲା ବଜାଇବା ଡାକ୍ତର ବାରଣ କରିଥିଲେ । ତାଙ୍କ ପୁଅ ଉମେଶ କର ମଧ୍ ତବଲା ବାଦକ । ଦୂରଦର୍ଶନରୁ ପ୍ରତିଭା ପରିଚୟ କାର୍ଯ୍ୟକ୍ରମରେ ତାଙ୍କୁ

ତକାଯାଇଥାଏ । ତାଙ୍କ ପୁଅ ମନା କରିଥିଲେ । କିନ୍ତୁ ରେକର୍ଡ଼ିଂ ଦିନ ସେ ଆପେ କଟକ ଆସି ପହଞ୍ଚିଥିଲେ । ତାଙ୍କୁ ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ତେବେ ସେ କେବଳ ତବଲାର ବୋଲ୍ ଡାକିବେ, ତାଙ୍କ ପୁଅ ତବଲା ସଙ୍ଗତ କରିବେ । ହଠାତ୍ ଏକ ବୋଲ୍‌କୁ ତାଙ୍କ ପୁଅ ତବଲା ବିଶାରଦ ବଜେଇ ନପାରିବାରୁ ସେ ଭୋକିଲା ବାଘ ପରି ତବଲାକୁ ଟାଣିନେଇ ରେକର୍ଡ଼ିଂ ସମୟରେ ତବଲା ବଜାଇବାରେ ଉନ୍ମତ୍ତ ହୋଇଉଠିଲେ । କିଛି ସମୟ ପରେ ତବଲା ତାଳ ଛିଣ୍ଡାଇ ଦୀର୍ଘଶ୍ୱାସ ପକାଇଲେ ।''

ଅଭିନୟ ମଣିଷ ପ୍ରାଣରେ ସ୍ପଷ୍ଟ ଛାପ ପକାଏ । ଚଳଚ୍ଚିତ୍ର ଅବା ମଞ୍ଚ ନାଟକ ହେଉ, ପ୍ରତିଟି ଅଭିନୟ ନିଖୁଣ ହେବା ବିଧେୟ । ବି.ଏ.ର ଛାତ୍ର ଥିବା ବେଳେ ଶ୍ରୀଯୁକ୍ତ ନାୟକ 'ସହ ନାଟ୍ୟ ସମ୍ପାଦକ' ଥିଲେ । 'ନାଟ୍ୟ ସମ୍ପାଦକ' ଥିଲେ ତାଙ୍କଠାରୁ ତିନିବର୍ଷ ବଡ଼ ବିଶିଷ୍ଟ ନାଟ୍ୟକାର ମନୋରଞ୍ଜନ ଦାସ । ଏହା ଚାଳିଶ ଦଶକର କଥା । ଡକ୍ଟର ପ୍ରଫୁଲ୍ଲ ପତି ଚାର୍ଲସ ଡିକେନ୍‌ସଙ୍କର 'A Tales of two city' ପଢ଼ାଉଥିଲେ । ପୂର୍ବରୁ ଏହି ଚଳଚିତ୍ରଟି ଶ୍ରୀଯୁକ୍ତ ନାୟକ ବହୁବାର ଦେଖିନେଇଥିଲେ । ଚଳଚ୍ଚିତ୍ରର ଅଭିନୟ ତାଙ୍କୁ ଏତେଦୂର ପ୍ରଭାବିତ କରିଥିଲା ଯେ; ସେ ପ୍ରଶ୍ନୋତ୍ତର ଖାତାରେ ସୁନ୍ଦର ବର୍ଣ୍ଣନା କରିଥିଲେ । ଶ୍ରେଣୀରେ ସବୁଠାରୁ ଅଧିକ ନମ୍ବର ସେ ରଖିପାରିଥିଲେ । ଡଃ ପ୍ରଫୁଲ୍ଲ ପତି ଯେତେବେଳେ ଶ୍ରୀଯୁକ୍ତ ନାୟକଙ୍କୁ ପଚାରିଲେ- ''ଏହା କିପରି ସମ୍ଭବ ହେଲା ?''

ଉତ୍ତରରେ ଶ୍ରୀଯୁକ୍ତ ନାୟକ କହିଥିଲେ- ''ସାର୍, ଏହାର ଇଂରାଜୀ ଚଳଚ୍ଚିତ୍ରଟି ମୁଁ ବହୁବାର ଦେଖିନେଇଥିଲି । ଯାହାଫଳରେ ମୁଁ ଭଲ ଉତ୍ତର ଲେଖିବାକୁ ସକ୍ଷମ ହୋଇପାରିଛି ।'' ଡକ୍ଟର ପତି ଖୁସି ନହୋଇ ରହିପାରି ନଥିଲେ ।

## ଶିକ୍ଷକ, ଅଧ୍ୟାପକ ଓ ପ୍ରଫେସର :

ଶ୍ରୀଯୁକ୍ତ ସାରଦାପ୍ରସନ୍ନ ନାୟକ ଜଣେ କେବଳ କଳାକାର ନୁହନ୍ତି । ସେ ମଧ୍ୟ ଶିକ୍ଷକ, ଅଧ୍ୟାପକ ଓ ପ୍ରଫେସର । ପ୍ରଯୋଜକ ଓ ନିର୍ଦ୍ଦେଶକ ହେବା ସହିତ ସେ ଅଧ୍ୟାପନାକୁ ବୃତ୍ତି ଭାବରେ ଗ୍ରହଣ କରିନେଇଥିଲେ । ୧୯୫୭ ମସିହାରେ ସିଟି ରାଜାବଗିଚା ହାଇସ୍କୁଲରେ ଦୁଇବର୍ଷ ଶିକ୍ଷକତା କରିଥିଲେ । ତା'ପରେ ସେ ପ୍ରଫେସର ବୈଦ୍ୟନାଥ ରଥଙ୍କ ସହଯୋଗରେ B.Ed. ତାଲିମ ପାଇଥିଲେ । ତପ୍ରରେ ସେ ସେକେଣ୍ଡାରୀ ବୋର୍ଡ଼ ହାଇସ୍କୁଲରେ ଦୀର୍ଘ ପାଞ୍ଚବର୍ଷ ୧୯୫୯ରୁ ୧୯୬୩ ମସିହା ପର୍ଯ୍ୟନ୍ତ ଶିକ୍ଷକତା କରିଥିଲେ । ସେ ସ୍କୁଲ ଜୀବନରେ ସମୁଦାୟ ସାତବର୍ଷ ଶିକ୍ଷକତା କରିଥିଲେ । ଏହା ବ୍ୟତୀତ ସେ ମଧ୍ୟ ଅଧ୍ୟାପକ ଓ ପ୍ରଫେସର ।

ଜର୍ଣ୍ଣାଲିଜିମ୍ ଓ ଇନ୍ଦିରା ଗାନ୍ଧି ଜାତୀୟ ମୁକ୍ତ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଓ ପ୍ରଫେସର ଭାବେ ନିଯୁକ୍ତ । ସମ୍ପ୍ରତି ସେ ଜଣେ ବରିଷ୍ଠ ଗଣମାଧ୍ୟମ ବିଶେଷଜ୍ଞ ।

**ସେ ମଧ୍ୟ ଗାନ୍ଧିବାଦୀ :**

୧୯୩୪ ମସିହାର କଥା । ତାଙ୍କୁ ୮/୯ ବର୍ଷ ବୟସ । ମହାତ୍ମା ଗାନ୍ଧି ପଦଯାତ୍ରା କରୁଥିଲେ । ତେଲେଙ୍ଗା ପେଣ୍ଠରୁ ମୁକାମ ସହରରେ ରହୁଥିଲେ । ପିତାଙ୍କ ସହିତ ସେ ମହାତ୍ମା ଗାନ୍ଧିଙ୍କୁ ଦେଖିବାକୁ ଯାଇଥିଲେ । ସେଦିନ କାଠଯୋଡ଼ି ନଈବାଲିରେ ସଭା ଥାଏ । ନିକଟରୁ ଦେଖିବାର ସୁଯୋଗ ପାଇଥିଲେ ସାରଦା ପ୍ରସନ୍ନ । ଯାହା ତାଙ୍କୁ ଗାନ୍ଧିବାଦୀ ହେବାରେ ପ୍ରେରଣା ଯୋଗାଇଥିଲା ।

ଆପଣଙ୍କର ଜୀବନରେ ସବୁଠାରୁ ଦୁଃଖର ସମ୍ବାଦ କ'ଣ ଥିଲା ବୋଲି ପ୍ରଶ୍ନର ଉତ୍ତରରେ ସେ କହନ୍ତି-

''ମହାତ୍ମା ଗାନ୍ଧିଙ୍କ ଆତତାୟୀ ହାତରେ ମୃତ୍ୟୁ । ଆଉ ମର୍ମନ୍ତୁଦ କ'ଣ ହୋଇପାରେ ?''

୧୯୪୨ ଭାରତଛାଡ଼ ଆନ୍ଦୋଳନରେ ସେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ସେ କର୍ମୀ ଭାବରେ ସୁରେନ୍ଦ୍ରନାଥ ଦ୍ୱିବେଦୀ, ବିଶ୍ୱନାଥ ପଣ୍ଡିତ, ମଥୁରାନନ୍ଦ ସାହୁ, ବାଙ୍କବିହାରୀ ଦାସ ପ୍ରମୁଖଙ୍କ ସହିତରେ ଆସିଥିଲେ ଓ ଯୁବକର୍ମୀ ଭାବରେ କାର୍ଯ୍ୟ କରିଥିଲେ । କର୍ମ ଓ ଆଦର୍ଶରେ ସେ ଜଣେ ଗାନ୍ଧିବାଦୀ ।

**ଗୀତିକାର ସାରଦାପ୍ରସନ୍ନ :**

ନାଟକରେ ଗୀତ ସଂଯୋଜନା ଏକ ଅପରିହାର୍ଯ୍ୟ ଉପାଦାନ । ସେହିପରି ଚଳଚ୍ଚିତ୍ରରେ ସଙ୍ଗୀତ ସ୍ଥାନ ମଧ୍ୟ ଗୁରୁତ୍ୱପୂର୍ଣ୍ଣ । ମନୋରଞ୍ଜନ ଦାସଙ୍କ ବନ୍ଧି ଜଗବନ୍ଧୁ ନାଟକର ସମସ୍ତ ଗୀତ ସେ ରଚନା କରି ନାଟ୍ୟ ସଫଳତା ପ୍ରଦାନ କରିଥିଲେ । ଏହା ବ୍ୟତୀତ ଅପେରା, ଗୀତିନାଟ୍ୟ, ମଞ୍ଚନାଟକ ଓ ଚଳଚ୍ଚିତ୍ରର ସେ ଗୀତିକାର । ସେ ସମୟର ସେ ଥିଲେ ଅପ୍ରତିଦ୍ୱନ୍ଦ୍ୱୀ ଗୀତିକାର । ତାଙ୍କର କେତୋଟି ଗୀତ (Lyrics)କୁ ଲକ୍ଷ୍ୟ କରାଯାଇପାରେ । ଯଥା-

(କ) 'ଲକ୍ଷ୍ମୀ' ଚଳଚ୍ଚିତ୍ରରେ- ''ଆରତ ସୁରେ ବାରେ କରେ ମିନତି ରେ, ଚକାନୟନ ଚାହାଁ ମାଗେ ମାଗୁଣି ରେ ।''

(ଖ) 'କା' ଚଳଚ୍ଚିତ୍ରରେ- ''ଲିଭି ଲିଭି ଯାଏ ଆଖି ଲୁହଧାର, କାନ୍ଦି କାନ୍ଦି ମରେ ସାହା ନାହିଁ ମୋର ।''

(ଗ) 'ସ୍ତ୍ରୀ' ଚଳଚ୍ଚିତ୍ରରେ-

''ମୋ ଆଖିର କେତେ କଥା
ମୋ ମନର ନୀରବତା

କହିବାକୁ ଚାହେଁ ଯାହା
କହି ପାରେନା,
ନକହି ମୁଁ ନୀରବରେ ରହିପାରେନା ।''

(ଘ) 'ସଂସାର' ଚିତ୍ରରେ-
''ନକର ନକର ମନ ଚିନ୍ତା ଭାବନା
ଭାବିଲେ କି ଯିବ ଚାଲି ଶୋକ ଯାତନା ।''

(ଙ) 'ଲକ୍ଷ୍ମୀ' ଚିତ୍ରରେ-
''ମନେ ଭରି ଅଭିମାନ
ଯାଏ ଛାଡ଼ି ବୃନ୍ଦାବନ
ରୁଷିଛି ଯାଇ ପରାଣ
ଝୁରେ ପାଷାଣ
ଶାଶୁର ଗଞ୍ଜଣା କଷଣ ।''

ଏହି ଚିତ୍ରଗୀତଗୁଡ଼ିକ ଏବେ ବି ଜନମାନସରେ ଜୀବିତ । ଗୀତିକାର ଭାବରେ ସେଥିପାଇଁ ଶ୍ରୀଯୁକ୍ତ ସାରଦାପ୍ରସନ୍ନ ନାୟକ ଅମର ଓ ଯଶସ୍ୱୀ । ୪୦୦ରୁ ଉର୍ଦ୍ଧ୍ୱ ଗୀତ ସେ ରଚନା କରି ଜନପ୍ରାଣକୁ ଆମୋଦିତ କରିଛନ୍ତି । ଭାକ୍ତିକତାରେ ଚିତ୍ତକୁ ଅଲୌକିକ ଆନନ୍ଦ ପ୍ରଦାନ କରିଛନ୍ତି ।

**ଭକ୍ତି ଓ ଭାକ୍ତିକତା :**

ଶ୍ରୀଯୁକ୍ତ ସାରଦାପ୍ରସନ୍ନ ନାୟକ ଜଣେ ଭକ୍ତପ୍ରାଣ । ସେ ଜଗତର ନାଥ ଶ୍ରୀଜଗନ୍ନାଥଙ୍କ ଚରଣାଶ୍ରିତ । ତାଙ୍କର ପ୍ରାଣ କୋମଳ, ସରଳ ଓ ସମର୍ପିତ । ସେ ଉଚ୍ଚଶିକ୍ଷାଧାରୀ ଓ ଉଚ୍ଚ ପଦବୀ ମଣ୍ଡନ କରିଥିଲେ ମଧ୍ୟ ସେ ଅହଂପ୍ରମତ୍ତ ନୁହନ୍ତି । ସେ ସ୍ନେହୀ, କଳାପ୍ରିୟ, ଭକ୍ତପ୍ରାଣ ଓ ଆଦର୍ଶନିଷ୍ଠ । ଶ୍ରୀଜଗନ୍ନାଥ ତାଙ୍କର ଆରାଧ୍ୟ । କବିଙ୍କ ପ୍ରାଣରୁ ଝରିଆସିଛି-

''ଘର ଛାଡ଼ି ପର ଦେଶେ
ବରଦେଶୀ ପଥିକ
ନଭାବ ଏ ଭବେ ଅଛି
ଜଣେ ଏକା ନାବିକ
ଭାଙ୍ଗେ ସେହି ଗଢ଼େ ସେହି
ନୀଳଗିରି କନ୍ଦରେ
ଚକାନୟନ ଚାହାଁ ମାଗେ ମାଗୁଣି ରେ ।''

## ସମ୍ମାନ, ପୁରସ୍କାର ଓ କୃତିତ୍ୱ :

ସମ୍ମାନ ଲାଳାୟିତ ପ୍ରତିଭା ଯଥାର୍ଥ ପ୍ରତିଭା ନୁହେଁ। ସମ୍ମାନ ପାଇଁ ଆଶା କରି କେହି କଳା ବା ସାହିତ୍ୟର ସେବା କରି ନଥାଏ। ସମ୍ମାନ ଆପେ ଆସେ। ପ୍ରତିଭାର ଚିହ୍ନରା ଯଥାର୍ଥ ମୂଲ୍ୟାଙ୍କନ କରିଥାଏ। କାଳ ଯଥାର୍ଥ ସମୀକ୍ଷା କରିଥାଏ।

ଶ୍ରୀଯୁକ୍ତ ସାରଦାପ୍ରସନ୍ନ ନାୟକ ଥିଲେ କଳାକାର ଓ ସାରସ୍ୱତ ସ୍ରଷ୍ଟା। କଳାକୁ ଭଲ ପାଇଥିଲେ। ଅତି ନିଜର ଭାବରେ ଆପଣେଇ ନେଇଥିଲେ। ସେହି କଳାପ୍ରୀତିର ନିଦର୍ଶନ ସ୍ୱରୂପ ସେ ବହୁ ସମ୍ମାନର ଅଧିକାରୀ ହୋଇଥିଲେ। ଯଥା-

୧। ରାଷ୍ଟ୍ରପତି ପୁରସ୍କାର- ଲକ୍ଷ୍ମୀ (୧୯୬୩), କା (୧୯୬୬), ସ୍ତ୍ରୀ (୧୯୬୮), ସିଦ୍ଧାର୍ଥ।
୨। U.G.C. visiting fellow (Professor) in Mass Comunication in Berhampur University.
୩। Attended UNESCO–UNO Conference as a producer.
୪। Attended Indo-U.S. T.V. Workshop as a producer.
୫। Cinecritic Award–1991.
୬। ଓଡ଼ିଆ ଚଳଚ୍ଚିତ୍ର ସମ୍ମାନ- ୧୯୯୬।
୭। ଆଦିନାଟ୍ୟକାର ଜଗନ୍ମୋହନ ଲାଲା ସମ୍ମାନ- ୧୯୯୪।
୮। ଗଣକବି ବୈଷ୍ଣବ ପାଣି ସମ୍ମାନ- ୧୯୯୬।
୯। ବର୍ତ୍ତିକା ସମ୍ମାନ।
୧୦। ପ୍ରଯୋଜକ- ଆକାଶବାଣୀ, କଟକ।
୧୧। ପ୍ରଯୋଜକ- ଦୂରଦର୍ଶନ, କଟକ।
୧୨। ନାଟ୍ୟକାର ଓ ଅଭିନେତା।
୧୩। ଚଳଚ୍ଚିତ୍ର ନିର୍ମାତା।
୧୪। ଚଳଚ୍ଚିତ୍ର ନିର୍ଦ୍ଦେଶକ।
୧୫। ଚଳଚ୍ଚିତ୍ର ଓ ନାଟକର ଗୀତିକାର।
୧୬। ମଞ୍ଚ ଅଭିଜ୍ଞତା- ୫୪ ବର୍ଷ
ଚଳଚ୍ଚିତ୍ର ଅଭିଜ୍ଞତା- ୪୪ ବର୍ଷ
ଆକାଶବାଣୀ- ୫୨ ବର୍ଷ
ଦୂରଦର୍ଶନ- ୨୬ ବର୍ଷ।
୧୭। Film Development Corporation ର ସଭ୍ୟ।
୧୮। କଳିଙ୍ଗ ଫିଲ୍ମ ଷ୍ଟୁଡ଼ିଓର ନିର୍ଦ୍ଦେଶକ।

## ପାରିବାରିକ ଜୀବନ :

କଳାକାରର ଜୀବନ ହେଲେ ମଧ ସେ ପରିବାରଠାରୁ ଦୂରେଇ ରହିନାହାନ୍ତି । ସେ ବ୍ୟସ୍ତ ପ୍ରଶାସନିକ ଜୀବନ ଓ ଚଳଚ୍ଚିତ୍ର ନିର୍ମାଣ ତଥା ନିର୍ଦ୍ଦେଶନା ଜୀବନ ଅତିବାହିତ କରିଥିଲେ ମଧ ପରିବାର ତାଙ୍କର ସୁଖ ଓ ପ୍ରୀତିର ଆଳୟ । ସହଧର୍ମିଣୀ ଶ୍ରୀମତୀ ନିହାର ନାୟକ (ନିହାର ଅପା) । ସେ ଆକାଶବାଣୀର ଜଣେ ବରିଷ୍ଠ କର୍ମୀ । ଶ୍ରୀ ନଦିଆ ବିହାରୀ ମହାନ୍ତି ଓ ଶ୍ରୀମତୀ ବୀଣାପାଣି ମହାନ୍ତିଙ୍କ ସହିତ ଶିଶୁ ଓ କିଶୋର ସଂସାର କାର୍ଯ୍ୟକ୍ରମ ପ୍ରଯୋଜନା କରୁଥିଲେ । ସେ ଏବେ ଅବସର ନେଇଛନ୍ତି । ତାଙ୍କର ଚାରି ଝିଅ ଓ ତିନି ପୁଅ । କସ୍ତୁରୀ, ଜୟଶ୍ରୀ, ଗୀତାଶ୍ରୀ ଓ ଇତିଶ୍ରୀ । ତିନି ପୁଅ ମଧ୍ୟରୁ ସାଗର ରଞ୍ଜନ, ସମର ଓ ସୈମିତ । ବଡ଼ପୁଅ ବହୁଦିନ ରୋଗାକ୍ରାନ୍ତ ହେବାପରେ ୪୪ ବର୍ଷରେ ସେପୁରକୁ ଚାଲିଯାଇଛନ୍ତି । ଦୁଇ ବୋହୂ ଜୟନ୍ତୀ ଓ ମନୀଷା । ତାଙ୍କର ଚାରି ଭାଇ ଓ ଚାରି ଭଉଣୀ । ଶୈଳବାଳା, ପ୍ରଫୁଲ୍ଲ କୁମାରୀ, ଚପଳା (ଶ୍ରୀମତୀ ପାର୍ବତୀ ଘୋଷ) କୁମାରୀ କ୍ଷୀରୋଦ । ଚାରିଭାଇ ହେଲେ ସୁଧାଂଶୁ, ସୁବାସ ଓ ସଙ୍ଗୀତ ନିର୍ଦ୍ଦେଶକ ଗାୟକ ସ୍ୱରୂପ ନାୟକ । ସମୁଦାୟ ପରିବାରଟି ଏକ କଳା, ସାହିତ୍ୟ, ନାଟକ, ଚଳଚ୍ଚିତ୍ର ପାଇଁ ଉତ୍ସର୍ଗୀକୃତ ପରିବାର ।

## ଶେଷ ବକ୍ତବ୍ୟ :

ସାରଦାପ୍ରସନ୍ନ ଦୀର୍ଘଜୀବୀ ହୁଅନ୍ତୁ । ତାଙ୍କର ସାଧନାର ପଥରେ ପୁଷ୍ପ ବର୍ଷା ହେଉ । ସେ ଓଡ଼ିଆ ସାହିତ୍ୟ, ସଂସ୍କୃତି ଓ କଳାର ବିକାଶରେ ନିଜର ଅନୁଭବକୁ ପରିବେଷଣ କରନ୍ତୁ । ତାଙ୍କର ଉଦ୍ୟମ ସଫଳ ହେଉ । ସଂକଳ୍ପ ଚରିତାର୍ଥ ହେଉ ।

❑ ❑

# ସୁରମଣି ରଘୁନାଥ ପାଣିଗ୍ରାହୀ

ଦେବଦତ୍ତ ସାମନ୍ତସିଂହାର

ଓଡ଼ିଶାର ସଙ୍ଗୀତ ଜଗତରେ ସୁରମଣି ପଣ୍ଡିତ ରଘୁନାଥ ପାଣିଗ୍ରାହୀ ଏକ ସ୍ମରଣୀୟ ନାମ । ଭକ୍ତ ସାଧୁ ପ୍ରଧାନ କବି ଜୟଦେବ ଗୋସ୍ୱାମୀଙ୍କ କୃତ ଶ୍ରୀ ଗୀତଗୋବିନ୍ଦକୁ ବିଶ୍ୱବିସ୍ତୃତ କରିବା ଦିଗରେ ତାଙ୍କର ଅବଦାନ ଅବିସ୍ମରଣୀୟ । ଏକାଧାରରେ ଶାସ୍ତ୍ରୀୟ ସଙ୍ଗୀତର ଜଣେ ପ୍ରବକ୍ତା, ଓଡ଼ିଶୀ ନୃତ୍ୟ ସଂଗୀତର ଅଗ୍ରଣୀ ସ୍ରଷ୍ଟା, ଗୀତଗୋବିନ୍ଦ ପରମ୍ପରାର ଅନନ୍ୟ ସେବକ, ବିଶିଷ୍ଟ ସୁରକାର, ସଙ୍ଗୀତ ନିର୍ଦ୍ଦେଶକ, ପ୍ରଚ୍ଛଦପଟ ଗାୟକ ଓ ମୁର୍ଦ୍ଧନ୍ୟ କଣ୍ଠଶିଳ୍ପୀ ରୂପେ ତାଙ୍କର ନିଷ୍ଠା ଓ ପ୍ରବଣତାକୁ ନାଦବ୍ରହ୍ମର ଜଣେ ଚଳମାନ ବ୍ୟକ୍ତିତ୍ୱ ଭାବେ ତାଙ୍କୁ ଆଜି ଉଭା କରାଇପାରିଛି । ବାସ୍ତବରେ ସଙ୍ଗୀତ କ୍ଷେତ୍ରରେ ସେ ଜଣେ ଅପ୍ରତିଦ୍ୱନ୍ଦ୍ୱୀ ଯୋଗଜନ୍ମା ନାୟକ ।

ଦିନେ ଓଡ଼ିଶା ପ୍ରଦେଶର ଦକ୍ଷିଣାଞ୍ଚଳ ଓଡ଼ିଶୀ ସଂସ୍କୃତିର ଏକ ତୀର୍ଥଭୂମି ରୂପେ ବନ୍ଦିତ ଥିଲା । କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ପୂର୍ବରୁ ଦକ୍ଷିଣ ଓଡ଼ିଶାର ପାଣିପବନରେ ସାହିତ୍ୟ ସଂଗୀତର ମନ୍ଦ୍ର ନିନାଦ ଦିନେ ଉତ୍କଳମାତାର କଳେବରକୁ ନାଦ ନିନାଦର ବ୍ରହ୍ମ ବିଳାସରେ ସାରସ୍ୱତ ତରଙ୍ଗରେ ନିଜକୁ ତଲ୍ଲୀନ କରି ବସିଥିଲେ । କବିସମ୍ରାଟଙ୍କ ପ୍ରେରଣା ପ୍ରଚୋଦନରେ ଗୀତିଯୁଗର ଛନ୍ଦବିଳାସ, ସୁରତାଳ ଓ ରାଗରାଗିଣୀର ପ୍ରଲେପରେ ପ୍ରାଣବନ୍ତ ହୋଇ ଉଠିଥିଲା । ଓଡ଼ିଶାର ପୁରପଲ୍ଲୀ ତଥା ଘରେ ଘରେ ଗୀତିମୁଖରତା ଦେବାଲାଗି ପ୍ରସାଦି ସଦୃଶ ପ୍ରତ୍ୟେକ ପ୍ରାଣରେ ଅଫୁରନ୍ତ ସତ୍-ଚିତ୍-ଆନନ୍ଦ ସୃଷ୍ଟି କରିପାରିଥିଲା । ଭଞ୍ଜଭୂମି ଦକ୍ଷିଣ ଓଡ଼ିଶାର ପାରଳାଖେମୁଣ୍ଡି ପ୍ରଦେଶର ରାଜତନ୍ତ୍ର ଶୋଭାରେ ଏକ ପ୍ରତିନିଧି ଶ୍ରେଣୀୟ ନଗର ଭାବରେ ଗଜପତିଙ୍କ ପୃଷ୍ଠପୋଷକତାରେ ଅଭିମନ୍ତ୍ରିତ ହୋଇଥିଲା । ସେ ସମୟରେ ପ୍ରାତଃସ୍ମରଣୀୟ ଗୀତିକବି ଗୋପାଳକୃଷ୍ଣ ପଟ୍ଟନାୟକ, ଗୌରହରି ପରିଚ୍ଛା ସେ ସମୟରେ ବହୁ ଗୁଣଗ୍ରାହୀ ସମ୍ଭ୍ରାନ୍ତ ଶ୍ରେଣୀୟ ବିଦ୍ୱାନ୍ ଓ କଳା ରସିକଙ୍କୁ ନିଜର ସାରସ୍ୱତ ଗୀତିମୁଖରତାରେ ଆକୃଷ୍ଟ କରିଥିଲେ । ଘଟଣାଚକ୍ରରେ ଗୀତିକବି ଗୌରହରି ପରିଚ୍ଛାଙ୍କ ବଂଶରେ ଗଜପତି ଜିଲ୍ଲା ଗୁଣୁପୁରଠାରେ ୧୯୩୪ ଅଗଷ୍ଟ ୧୦ରେ ଜନ୍ମଲାଭ କରି ରଘୁନାଥ ପାଣିଗ୍ରାହୀ କୃତାର୍ଥ ହୋଇଛନ୍ତି । ପାରଳାଖେମୁଣ୍ଡି

କେବଳ ନୁହେଁ, ଓଡ଼ିଶୀ ସଙ୍ଗୀତ ସାଧକ ଅପନା ପାଣିଗ୍ରାହୀ, ସେକାଳର ପ୍ରଖ୍ୟାତଯଶା ଶିଳ୍ପୀ ଭାବରେ ଉତ୍କଳମାତାର ଅମର ସନ୍ତାନ ଭାବରେ ରଘୁନାଥଙ୍କ ପିତା ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ସ୍ୱର୍ଗତ ପଣ୍ଡିତ ନୀଳମଣି ପାଣିଗ୍ରାହୀ । ଏହି ବରପୁତ୍ର ଦ୍ୱୟ ଯଥା ଗୀତିକାର ଗୌରହରି ପରିଚ୍ଛା ଓ ଅନ୍ଧ କଣ୍ଠଶିଳ୍ପୀ ଅପନା ପାଣିଗ୍ରାହୀଙ୍କ ବଂଶରେ ଜନ୍ମ ନେଇଥିବା ଦୃଷ୍ଟିରୁ ସଙ୍ଗୀତ ସାହିତ୍ୟାନୁରାଗୀ ହୋଇ ନିଜର ପୁତ୍ର ରଘୁନାଥଙ୍କୁ ସେହି ଗାନ୍ଧର୍ବ ବିଦ୍ୟାନୁସରଣ କରିବାରେ ପ୍ରାଣ ପ୍ରଚୋଦିତ କରିଆସିଥିଲେ । ପଣ୍ଡିତ ନୀଳମଣି ମିଶ୍ରଙ୍କ ସଂସ୍କୃତ ସାହିତ୍ୟ ପ୍ରତି ଅନୁରାଗ ଓ ବିଶେଷତଃ ସଙ୍ଗୀତ ପ୍ରତି ଥିବା ସମ୍ମାନ ଓ ସରାଗ ସମାଜରେ ତାଙ୍କୁ ପ୍ରତିପତ୍ତିଶାଳୀ କରିଥିଲା । ତାଙ୍କର ପୁରୀ ରହଣିକାଳରେ ରଘୁନାଥଙ୍କୁ ଆଣି ଗୀତିଗୋବିନ୍ଦ ପ୍ରତି ପରିଚିତ କରାଇଥିଲେ । ଶ୍ରୀ ଜଗନ୍ନାଥ ମନ୍ଦିରର ଗୀତଗୋବିନ୍ଦ ଗାୟନ ଶୈଳୀ ପୁରୀଠାରେ ବରିଷ୍ଠ ହିନ୍ଦୀ ସାହିତ୍ୟକାର ପଣ୍ଡିତ ନରସିଂହ ନନ୍ଦ ଶର୍ମାଙ୍କ ଠାରୁ ଶିକ୍ଷା କରିବା ସହ ୧୯୪୧ ଠାରୁ ୪୮ ପର୍ଯ୍ୟନ୍ତ ସ୍ୱର୍ଗତ ପଣ୍ଡିତ ବିଶ୍ୱନାଥ ଦାଶଙ୍କ ଠାରୁ ପାରମ୍ପରିକ ଭକ୍ତିସଙ୍ଗୀତ ଶିକ୍ଷା କରି ରଘୁନାଥ ଶିଳ୍ପୀ ଜୀବନ ଆରମ୍ଭ କରିଥିଲେ । ପିତାଙ୍କ ଦ୍ୱାରା ସଂଗୃହୀତ ଭକ୍ତିତତ୍ତ୍ୱର ଅନନ୍ୟ ସ୍ମାରକୀ ଗୀତଗୋବିନ୍ଦ ଗ୍ରନ୍ଥ, ପୁତ୍ର ରଘୁନାଥଙ୍କ ସାଂଗୀତିକ ଜୀବନାୟନରେ ସଙ୍ଗୀତର କୈବଲ୍ୟ ସ୍ୱରୂପ ଏକାତ୍ମ କରିଥିଲା । ୧୯୪୬-୪୯ ପର୍ଯ୍ୟନ୍ତ ରଘୁନାଥ, ଆନ୍ଧ୍ରପ୍ରଦେଶର ବିଜୟନଗରମ୍ ସ୍ଥିତ ପ୍ରଖ୍ୟାତ ଗୁରୁ ମୁଦ୍ଦୁ ମାମାରାଓଙ୍କଠାରୁ ପ୍ରାଚୀନ ସଙ୍ଗୀତର ଧାରା ଶିକ୍ଷା କରିବା ସହ ପରବର୍ତ୍ତୀ ଜୀବନରେ ୧୯୫୩-୫୪ରେ ମାନ୍ଦ୍ରାଜ ଯାଇ ୰ପଣ୍ଡିତ ଡି.ଭି. ପଲୁସ୍କର୍‌ଙ୍କଠାରୁ ହିନ୍ଦୁସ୍ଥାନୀ ସଙ୍ଗୀତ ଶିକ୍ଷା କରିଥିଲେ । ତୁଳସୀ ଦୁଇ ପତ୍ରରୁ ବାସିଲା ପରି ମାତ୍ର ୧୪ ବର୍ଷ ବୟସରେ, ଶିଶୁଶିଳ୍ପୀ ରଘୁନାଥଙ୍କ ପ୍ରଥମ ବ୍ୟବସାୟିକ ଗ୍ରାମଫୋନ୍ ରେକର୍ଡ଼ ଏଚ୍.ଏମ୍.ଭି. କମ୍ପାନୀ ପ୍ରକାଶ କରିଥିଲା । ସେ ଅନିର୍ବଚନୀୟ ଶିଶୁପ୍ରତିଭାର ମହକ ଜନଗଣରେ ସମସ୍ତଙ୍କୁ ସୁରଭିତ କରିଥିଲା । ବାଲ୍ୟଜୀବନର ସେ ସଙ୍ଗୀତମୟ ସ୍ମୃତିସୌରଭ ଦିନେ ଶ୍ରୀମାନ୍ ରଘୁନାଥଙ୍କୁ ଶିଳ୍ପୀ ମାଧୁର୍ଯ୍ୟର ସମ୍ବେଦନା ଦେବ ଏକଥା ସେଦିନ ଯେ ସେ ଚପଳ କଣ୍ଠର ମାଦକତାକୁ ଶୁଣିଛି ସେ ମନମାନସରେ ତାଙ୍କୁ ଆଶୀର୍ବାଦମଣ୍ଡିତ କରିଛି ।

୧୯୪୮ ମସିହାରେ ଶିଳ୍ପୀ କଟକ ଆକାଶବାଣୀର ସ୍ୱୀକୃତିପ୍ରାପ୍ତ କଣ୍ଠଶିଳ୍ପୀ ରୂପେ ଯୋଗଦିଅନ୍ତି । ପରବର୍ତ୍ତୀ ଜୀବନରେ ମାନ୍ଦ୍ରାଜରେ ଅବସ୍ଥାନ କରି ଦକ୍ଷିଣ ଭାରତର ତେଲଗୁ, ତାମିଲ୍ ଓ କନ୍ନଡ଼ ଭାଷାର ବହୁ ସଂଖ୍ୟକ କଥାଚିତ୍ରରେ କଣ୍ଠଦାନ କରି ଏବଂ ଧର୍ମାନୁଷ୍ଠାନମାନଙ୍କରେ ଭକ୍ତିଗୀତ ପରିବେଷଣ କରି ତାଙ୍କର ବହୁମୁଖୀ ସାଂଗୀତିକ ପ୍ରତିଭାର ପରିଚୟ ଦିଅନ୍ତି ।

ବିଶେଷ ଭାବରେ ସନ୍ଥ ଜୟଦେବ ଗୋସ୍ୱାମୀଙ୍କ କୃତ ୨୪ଟି ଅଷ୍ଟପଦୀର ଜଣେ ସଫଳ ନାୟକ ଭାବେ ସାରା ଭାରତରେ ସେ ନିଜକୁ ପ୍ରତିଷ୍ଠିତ କରନ୍ତି। ସେଥି ନିମନ୍ତେ ଶ୍ରେଷ୍ଠ ଅଷ୍ଟପଦୀ ଗାୟକ ଭାବରେ ତାଙ୍କର ଜୟନ୍ତୀ ସମାରୋହ ସମ୍ପ୍ରତି ୨୦୦୧ରେ ପାଳନ ହୋଇଯାଇଅଛି। ୧୯୫୯ରେ ନୃତ୍ୟପ୍ରବୀଣା ପଦ୍ମଶ୍ରୀ ସଂଯୁକ୍ତାଙ୍କ ସହ ତାଙ୍କର ଶୁଭପରିଣୟ ଅନୁଷ୍ଠିତ ହୁଏ। ସେହିଦିନୁ ସ୍ୱରଛନ୍ଦର ବିଳାସରେ ଦୁଇ ଶିଳ୍ପୀସତ୍ତା ଓଡ଼ିଶୀ ପରମ୍ପରାକୁ ଦିଗାନୁସାରୀ କରିବା କ୍ଷେତ୍ରରେ ଅବିରତ ସଂଗ୍ରାମ କରିଆସିଛନ୍ତି। ଓଡ଼ିଶୀ ସଂଗୀତ ନୃତ୍ୟର ପ୍ରଚାର ପ୍ରସାର ଦିଗରେ ଅହର୍ନିଶ ସଂଗ୍ରାମ ତାଙ୍କୁ ସ୍ମୃତିର ସ୍ମାରକୀ କରି ରଖିଛି। ଏହି ଅପୂର୍ବ ସ୍ୱରଛନ୍ଦର ମିଳନ ଓଡ଼ିଶୀ ପାଇଁ ହୋଇଛି ବରଦାନ।

ଓଡ଼ିଶୀ ନୃତ୍ୟର ସଂଗୀତ କ୍ଷେତ୍ରକୁ, ତାଙ୍କର ଅବଦାନ ଅତୁଳନୀୟ, ଓଡ଼ିଶୀ ନୃତ୍ୟରେ ଗୀତଗୋବିନ୍ଦ ଗାୟନ ପାଇଁ ଶିଳ୍ପୀଙ୍କୁ ବହୁବାର ବିଦେଶ ଗସ୍ତ କରିବାକୁ ହୋଇଛି। ୧୯୮୨ ମସିହାରେ ଶିଳ୍ପୀଙ୍କୁ ପ୍ରଥମ କରି ଫ୍ରାନ୍ସ ଠାରେ ଆୟୋଜିତ ବିଶ୍ୱ ସଂଗୀତ ମହୋତ୍ସବରେ ଅଷ୍ଟପଦୀ ଗାୟକ ଭାବେ ''ଗ୍ରାଣ୍ଡ୍ ପିକ୍ସ ଆୱାର୍ଡ଼'' ପ୍ରଦାନ କରାଯାଇଛି। ୧୯୬୭ ମସିହାରୁ ସେ ଦେଶବିଦେଶରେ ଗୀତଗୋବିନ୍ଦ ପରିବେଷଣ କରି ଶ୍ରୀକୃଷ୍ଣ କଥାବସ୍ତୁ ଅବତାରଣା ମାଧମରେ ନିଜର ସ୍ୱର ସଂଳାପ ପରଶି ଶତମୁଖରେ ଉଚ୍ଚପ୍ରଶଂସିତ ହୋଇ ଆସିଛନ୍ତି। ବାଦ୍ୟ ତଥା ସ୍ୱରତରଙ୍ଗ ସମ୍ପାଦନାରେ ଶିଳ୍ପୀଙ୍କର ମହନୀୟ ପାରଦର୍ଶିତା ତାଙ୍କୁ ବିଶ୍ୱଦରବାରରେ ଶ୍ରୀ ଓ ସମୃଦ୍ଧି ଆଣିଦେଉଛି। ବିଭିନ୍ନ ବାଦ୍ୟ ବିଚିତ୍ରା ସଂଯୋଜନା କରିବା ସହ ଆକାଶବାଣୀ ଦ୍ୱାରା ପ୍ରସ୍ତୁତ ''ସାଗର ତୀର୍ଥ'' ଓ ''ନାଦବିନ୍ଦୁ'' ବାଦ୍ୟକୌମୁଦୀର ସ୍ରଷ୍ଟା ଭାବେ ତାଙ୍କୁ ସମ୍ମାନିତ କରିଛି। ଭାରତୀୟ ଧର୍ମଦର୍ଶନର ଜଣେ ପ୍ରଚଣ୍ଡ ସ୍ୱରଶିଳ୍ପୀ ରୂପେ ବିଭିନ୍ନ ଧର୍ମସତ୍ତା ଓ ଆଶ୍ରମରେ ବହୁ ପ୍ରାଚୀନ ବେଦ, ଉପନିଷଦ ଓ ପୁରାଣ ଶ୍ଳୋକକୁ ସ୍ୱରମାଧୁର୍ଯ୍ୟରେ ସମୃଦ୍ଧିତ କରି ଉପସ୍ଥାପନ କରିବାରେ ତାଙ୍କର ଆଗ୍ରହ ଓ ପରିବେଷଣ ପରିପାଟୀ ତାଙ୍କୁ ବହୁ ସାଧୁ ସାଧକଙ୍କ ମଞ୍ଚରେ ପ୍ରଶଂସିତ କରିଛି। ମୋଟ ୧୨ଟି ଭାରତୀୟ ଭାଷାରେ ଭକ୍ତି ସଂଗୀତ ଗାନ କରିବାର ପାରଦର୍ଶିତା ଶିଳ୍ପୀଙ୍କୁ ଶୋଭାଶ୍ରୀ ମଣ୍ଡିତ କରିଥିଲା। ୧୯୬୫ ମସିହାରେ ଶିଳ୍ପୀ, ସନ୍ଥ ତୁଳସୀ ଦାସଙ୍କ ରଚିତ ପବିତ୍ର ''ରାମଚରିତ ମାନସ''କୁ ଅପୂର୍ବ ସ୍ୱର ସିଂହାରରେ ସଜାଇ ଓଡ଼ିଶୀ ନୃତ୍ୟରେ ତାହାକୁ ସଂଯୁକ୍ତ କରି ଦେଶ-ବିଦେଶରେ ଆଦୃତ କରିବାର ଉଦ୍ୟମ ଆରମ୍ଭ କରିଥିଲେ। ସେଥିମଧ୍ୟରୁ ''କୈବର୍ତ୍ତ ପ୍ରସଙ୍ଗ'', ''ଅଶୋକ ବାଟିକା'' ଓ ''ସୀତା ହରଣ'' ନୃତ୍ୟ ନାଟିକାର ସ୍ୱର ସଂଯୋଜନା କରି ଅଗଣିତ ରସଗ୍ରାହୀ ଦର୍ଶକ କୁଳକୁ ଶିଳ୍ପୀ ସ୍ତମ୍ଭୀଭୂତ କରିଛନ୍ତି।

ସାରା ଦେଶର ଏବଂ ପୃଥିବୀର ପ୍ରାୟ ସମସ୍ତ ବୃହତ୍ ନଗରୀରେ ଏହି ପାଣିଗ୍ରାହୀ ଦମ୍ପତି ବହୁବାର ଓଡ଼ିଶୀ ନୃତ୍ୟ ପରିବେଷଣ କରି ତାହାର ପ୍ରଚାର ପ୍ରସାର ଘଟାଇ ସମଗ୍ର ଓଡ଼ିଆ ଜାତିକୁ ଧନ୍ୟ କରିଛନ୍ତି । ତାଙ୍କ କଣ୍ଠରେ ଓଡ଼ିଶୀର ଛାନ୍ଦ, ଚମ୍ପୂ, ଚଉପଦୀ ଓ ଜଣାଣ ଏକ ନୂତନ ଦିଗନ୍ତ ସୃଷ୍ଟି କରିଛି । ବ୍ୟାକରଣସିଦ୍ଧ ଗାୟନ ଓ ସଂସ୍କୃତି ସାହିତ୍ୟର ଉଚ୍ଚାରଣ ଏକ ସ୍ୱତନ୍ତ୍ର ସ୍ଥାନ ନେଇଛି । ୧୯୬୭ ଠାରୁ ୧୯୮୮ ମସିହା ମଧ୍ୟରେ ଏହି ଦମ୍ପତି ଭାରତ ସରକାରଙ୍କ ଦ୍ୱାରା ଆମେରିକା, ଫିଲିପାଇନ୍ସ, ଜାପାନ, ନେପାଳ ଆଦି ଦେଶରେ ସାଂସ୍କୃତିକ ପ୍ରତିନିଧିତ୍ୱ କରିବାର ସୁଯୋଗ ପାଇଛନ୍ତି । ଆନ୍ତର୍ଜାତିକ ସ୍ତରରେ ହୋଇଥିବା ନୃତ୍ୟ ସଂଗୀତ ମହୋତ୍ସବରେ ଏହି ସ୍ୱନାମଧନ୍ୟ ପାଣିଗ୍ରାହୀ ଦମ୍ପତି ଯୋଗଦେବା ସହ ଫ୍ରାନ୍ସ, ସୁଇଜରଲ୍ୟାଣ୍ଡ, ଡେନ୍ମାର୍କ, ନେଦରଲ୍ୟାଣ୍ଡ, ନରୱେ, ସୁଇଡ଼େନ୍, ପଶ୍ଚିମ ଜର୍ମାନ, ହଲାଣ୍ଡ, ସିଙ୍ଗାପୁର, ମାଲୟେସିଆ, ଇଣ୍ଡୋନେସିଆ, ଅଷ୍ଟ୍ରେଲିଆ ଆଦି ଦେଶର ନିମନ୍ତ୍ରଣ ରକ୍ଷା କରି ଓଡ଼ିଶୀର ପାରମ୍ପରିକ କଳାସୌଷ୍ଠବ ପ୍ରଦର୍ଶନ କରି ସମସ୍ତଙ୍କୁ ମୁଗ୍ଧ କରିଛନ୍ତି । ବିଶ୍ୱସ୍ତରରେ ତୁଳନାତ୍ମକ ସଙ୍ଗୀତ ଅଧ୍ୟୟନ ନିମନ୍ତେ ପ୍ରତିଷ୍ଠିତ ଆନ୍ତର୍ଜାତିକ ସଂସ୍ଥା ଦ୍ୱାରା ନିମନ୍ତ୍ରିତ ହୋଇ ଶିଳ୍ପୀ ରଘୁନାଥ ଭାରତୀୟ ସଂଗୀତଧାରାକୁ ଉପସ୍ଥାପନ କରି ଯଶସ୍ୱୀ ହୋଇଛନ୍ତି । ଲଣ୍ଡନ, ରୁଷିଆ, ଆମେରିକା, ଇଣ୍ଡୋନେସିଆ ଓ ଜର୍ମାନଠାରେ ଅନୁଷ୍ଠିତ ଭାରତ ଉତ୍ସବରେ ଶିଳ୍ପୀଙ୍କର ଗାୟନ ଚମତ୍କାରିତା ଭାରତ ପାଇଁ ଆଣିଛି ଅଜସ୍ର ସମ୍ମାନ ଓ ସିଦ୍ଧି ।

ଓଡ଼ିଶୀ ନୃତ୍ୟକୁ ପ୍ରାଣବନ୍ତ କରିବା କ୍ଷେତ୍ରରେ ଶିଳ୍ପୀଙ୍କ ସଂଗୀତ ସଂଯୋଜନା ଏକ ଅନବଦ୍ୟ ଅବଦାନ । ବିଶେଷତଃ ବିଭିନ୍ନ ଦେବଦେବୀଙ୍କ ରୂପାନୁରାଗ ଓ ରସ ପରିଚର୍ଯ୍ୟାରେ ମଙ୍ଗଳାଚରଣ, ଯୋଗମାନନ୍ଦ ପଲ୍ଲବୀ ଓ ଅଭିନୟ କ୍ଷେତ୍ରରେ ଶ୍ରୀମଦ୍ ଜଗଦ୍‌ଗୁରୁ ଆଦି ଶଙ୍କରାଚାର୍ଯ୍ୟଙ୍କ କୃତ 'ଅର୍ଦ୍ଧନାରୀଶ୍ୱର' ମହାକବି କାଳିଦାସଙ୍କ କୃତ 'ଶକୁନ୍ତଳମ୍', 'ଋତୁସଂହାର', 'କୁମାରସମ୍ଭବମ୍' କବିବର ରାଧାନାଥଙ୍କ କାଳୀସ୍ତୁତି ସହିତ ସନ୍ଥ ତୁଳସୀ ଦାସ, ସୁର ଦାସ, ବିଦ୍ୟାପତି ଓ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ସୃଷ୍ଟିସମ୍ଭାରକୁ ଓଡ଼ିଶୀ ଶୈଳୀର ନୃତ୍ୟ ପଲ୍ଲରୀରେ ରୁଚିମନ୍ତ ଭାବେ ସଜ୍ଜୀକରଣ କରି ସ୍ୱର ସିଂହାର କରିବା କ୍ଷେତ୍ରରେ ଶିଳ୍ପୀ ରଘୁନାଥଙ୍କ ଅବଦାନ ତାଙ୍କୁ ନମସ୍ୟ ସ୍ୱରସ୍ରଷ୍ଟାର ସ୍ଥାନ ଦେଇଛି ।

ଶିଳ୍ପୀଙ୍କର ଜୀବନବ୍ୟାପୀ କ୍ରମବର୍ଦ୍ଧିଷ୍ଣୁ ଅବଦାନ ପାଇଁ ବିଭିନ୍ନ ଦେଶ ବିଦେଶରେ ତାଙ୍କୁ ଅଭିନନ୍ଦିତ କରାଯାଇ ଆସୁଛି । ଓଡ଼ିଆ ଜାତିକୁ ବିଶ୍ୱରେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ସହ ତାଙ୍କ କଳାକୈବଲ୍ୟକୁ 'ଓଡ଼ିଶୀ' ପରମ୍ପରା ଓ ଶୈଳୀଗତ ସୁରଭିରେ ମୁଗ୍ଧ କରି ଆସୁଥିବା ଏହି ଶିଳ୍ପୀ ପ୍ରଥମକରି ଗଞ୍ଜାମ ସଂଗୀତ

ସମ୍ମିଳନୀ ମଞ୍ଚରେ 'ପିକକଣ୍ଠ' ସମାଧି ଗ୍ରହଣ କରିବା ସହ ୧୯୬୧ ଓଡ଼ିଶାର ମାନ୍ୟବର ରାଜ୍ୟପାଳ ସମ୍ମାନ, ଓଡ଼ିଶା ରେଡ଼କ୍ରସ୍ ସୋସାଇଟି ସମ୍ମାନ, ୧୯୬୯ରେ ଶ୍ରେଷ୍ଠ ପ୍ରଚ୍ଛଦପଟ ଗାୟକ ଭାବେ ରାଜ୍ୟ ଚଳଚ୍ଚିତ୍ର ପୁରସ୍କାର, ୧୯୭୨ରେ ମୁମ୍ବାଇ ସୁରସିଙ୍ଗାର ସଂସଦ ପକ୍ଷରୁ 'ସୁରମଣି' ଉପାଧି, କାକିନାଡ଼ା ସଂଗୀତ ବିଦ୍ୱାନ ସଭା ପକ୍ଷରୁ 'ଗାନ କଳାନିଧି' ସମ୍ମାନ, ୧୯୭୬ରେ କେନ୍ଦ୍ର ସଂଗୀତ ନାଟକ ଏକାଡ଼େମୀ ଓ ୧୯୯୩ରେ ଓଡ଼ିଶା ସଂଗୀତ ନାଟକ ଏକାଡ଼େମୀ ପୁରସ୍କାର ସହିତ ୧୯୯୯ରେ ଓଡ଼ିଶା ସଂଗୀତ ନାଟକ ଏକାଡ଼େମୀ ତା'ର ସର୍ବୋଚ୍ଚ ସମ୍ମାନ 'କବିସମ୍ରାଟ ଉପେନ୍ଦ୍ରଭଞ୍ଜ' ପୁରସ୍କାର ଶିଳ୍ପୀଙ୍କୁ ପ୍ରଦାନ କରି କୃତାର୍ଥ ହୋଇଛି । ଓଡ଼ିଆ କଥାଚିତ୍ର 'ଅହଲ୍ୟା'ର ସଫଳ ସଂଗୀତକାର ହିସାବରେ ଶିଳ୍ପୀଙ୍କୁ ଓଡ଼ିଆ ଚଳଚ୍ଚିତ୍ର ଜଗତ ସମ୍ମାନ ଦେଇ ନିଜକୁ ଧନ୍ୟ କରିଛି । ଏହା ବ୍ୟତୀତ ୧୯୭୭ ସର୍ବଭାରତୀୟ ଅଲ୍ ଇଣ୍ଡିଆ କ୍ରିଟିକ୍ ଆୱାର୍ଡ଼ ସହ ୧୯୮୬ ଓ ୧୯୯୦ ମସିହାରେ ୨ ଥର ପାଇଁ ଆମେରିକା ମେଫିସ୍ ଦେଶର କାଉନ୍‌ସିଲ୍‌ରେ ଅବୈତନିକ ନାଗରିକତ୍ୱ ସମ୍ମାନ ଶିଳ୍ପୀଙ୍କୁ ପ୍ରଦାନ କରାଯାଇଛି ।

ଶିଳ୍ପୀ ରଘୁନାଥ ଓ ସଂଯୁକ୍ତା ଏ ଜାତିର ସଂଗୀତ ନୃତ୍ୟ ସେବା ପାଇଁ କେବଳ ଉତ୍ସର୍ଗୀକୃତ ନୁହନ୍ତି, 'ନାଟ୍ୟଉତ୍କଳ' ସଂସ୍ଥା ମାଧ୍ୟମରେ ସାଂସ୍କୃତିକ ଜୀବନାୟନକୁ ସମର୍ପଣ କରିବା ସହ ଭାରତୀୟ ଦେଶରକ୍ଷା ବିଭାଗ ପାଣ୍ଠି, ଅନେକ ବିଦ୍ୟାପୀଠ, ଚିକିତ୍ସାଳୟ ପ୍ରତିଷ୍ଠା ପାଣ୍ଠି ସହ ଦେଶର ଦୈବୀ ଦୁର୍ବିପାକ ସମୟରେ ବହୁ ସାହାଯ୍ୟ ରଜନୀରେ ନୃତ୍ୟ ସଂଗୀତ ପରିବେଷଣ କରି ସମାଜସେବା କରିଆସିଛନ୍ତି । ୧୯୯୭ ଜୁନ୍ ୨୪ ତାରିଖରେ ଶିଳ୍ପୀ ପାଣିଗ୍ରାହୀ ତାଙ୍କର ପତ୍ନୀ ସଂଯୁକ୍ତାଙ୍କୁ ଛାଡ଼ି ଆଜି ଏକ ନିଃସଙ୍ଗ ପଥର ଯାତ୍ରୀ । ଛନ୍ଦବିହୀନ ସ୍ୱର ଆଜି ସେହି କଳାଠାକୁରଙ୍କ ଚରଣାବିନ୍ଦରେ ସମାଧିସ୍ଥ । ସଙ୍ଗୀତର ଅପୂର୍ବ ଶକ୍ତିଧର ବ୍ୟକ୍ତି ପୁରୁଷ ରୂପେ ଶିଳ୍ପୀ ପାଣିଗ୍ରାହୀ ସାଧନା ଓ ଆରାଧନାର ଯେଉଁ ଜୀବନ୍ତ କୋଣାର୍କ ଗଢ଼ି ତୋଳିଛନ୍ତି, ସେଥିପାଇଁ ତାଙ୍କୁ ଓଡ଼ିଶୀ ପରମ୍ପରାର ଏକ କିମ୍ବଦନ୍ତୀୟ ପ୍ରବାଦପୁରୁଷ ରୂପେ ଅମର କରି ରଖିବ । 'ଓଡ଼ିଶୀ'ର ନାମକୁ ସାର୍ଥକ କରିବା ସହ ଉତ୍ତରଦାୟୀଙ୍କ ପାଇଁ ଶାସ୍ତ୍ରୀୟ ଗାୟନ ପଦ୍ଧତିକୁ ଏକ ନୂତନ ମାର୍ଗଦର୍ଶନ ଦେବାଲାଗି ଶିଳ୍ପୀ ରଘୁନାଥଙ୍କ ଅବଦାନ ଚିରସ୍ମରଣୀୟ ହୋଇ ରହିବ । କଳାଠାକୁର ଶ୍ରୀଜଗନ୍ନାଥ ଶିଳ୍ପୀଙ୍କୁ ଚିରଞ୍ଜୀବୀ କରି ରଖନ୍ତୁ । ସେ ସାଧକର ଚଲାପଥ ହେଉ କୁସୁମାକୀର୍ଣ୍ଣ ।

❑ ❑

# ଡକ୍ଟର ରାଜେନ୍ଦ୍ର ନାରାୟଣ ଦାସ

ଡକ୍ଟର ଶାନ୍ତନୁ କୁମାର ରଥ

ସମଗ୍ର ମାନବ ସମାଜର ସାଂସ୍କୃତିକ ବିକାଶରେ ପ୍ରାଚ୍ୟ ଭୂଖଣ୍ଡର ଯେପରି ମହତ୍ତ୍ୱପୂର୍ଣ୍ଣ ଯୋଗଦାନ ରହିଛି, ଆଧୁନିକ ସଭ୍ୟତାର ଗତିକୁ ବେଗଗାମୀ କରିବାରେ ପାଶ୍ଚାତ୍ୟ ଭୂଖଣ୍ଡର ସେହିପରି ଯୋଗଦାନ ରହିଛି । ଆଧୁନିକ ମଣିଷକୁ ଶିଳ୍ପବିପ୍ଲବର ସ୍ୱାଦ ଚଖାଇଛି ପାଶ୍ଚାତ୍ୟ ଭୂମି । ବିଜ୍ଞାନ ଓ ବୈଷୟିକ କ୍ଷେତ୍ରରେ ଦିଗ୍‌ଦର୍ଶନ ଏଇ ପାଶ୍ଚାତ୍ୟ ଭୂଖଣ୍ଡ ପ୍ରତି ଆକର୍ଷିତ ହୋଇ ଭାରତଭୂମିରୁ ବହୁ ବୈଜ୍ଞାନିକ, ବୈଷୟିକ ବିଶେଷଜ୍ଞ ନିଜ ବିଦ୍ୟାବୁଦ୍ଧିର ପରାକାଷ୍ଠା ପ୍ରଦର୍ଶନ ପାଇଁ ଯାଇଛନ୍ତି । ତାକୁ ଆମେ ମସ୍ତିଷ୍କ ଚାଲାଣ ଭାବରେ ଅପଖ୍ୟାତ କଲେ ମଧ ସେମାନଙ୍କର ସଫଳତା ଭାରତ ପାଇଁ ଅନେକ ସମ୍ମାନ ଆଣିଦେଇଛି । ଏଇଭଳି ଜଣେ ଭାରତୀୟ ଏବଂ ଓଡ଼ିଆ ହେଉଛନ୍ତି ଡକ୍ଟର ରାଜେନ୍ଦ୍ର ନାରାୟଣ ଦାସ । ୧୯୬୭ ମସିହାଠାରୁ ସେ ବିଦ୍ୟା, ବୁଦ୍ଧି ଏବଂ ଜ୍ଞାନକୌଶଳର ଚାରଣଭୂମି ଜର୍ମାନୀରେ ନିରବଚ୍ଛିନ୍ନ ଭାବେ ରହି ଆସୁଛନ୍ତି । ଭାରତୀୟ ବଂଶୋଦ୍ଭବ ହୋଇଥିଲେ ହେଁ ଦୀର୍ଘକାଳ ରହଣି ହେତୁ ସେ ଜର୍ମାନ ଦେଶର ନାଗରିକତ୍ୱ ଗ୍ରହଣ କରିଛନ୍ତି । ଜଣେ ବୈଷୟିକ ବିଜ୍ଞାନୀ ଭାବରେ ତାଙ୍କର ସୁଦୀର୍ଘ ଅଭିଜ୍ଞତା ରହିଛି ଏବଂ ସେ ବହୁ ଆନ୍ତର୍ଜାତିକ ବୈଷୟିକ ସଂସ୍ଥାମାନଙ୍କରେ ଉଚ୍ଚ ପଦପଦବୀରେ ରହି କାର୍ଯ୍ୟ କରିଛନ୍ତି ।

ରାଜେନ୍ଦ୍ର ବାବୁଙ୍କ ଜନ୍ମ ୧୯୪୦ ମସିହା ଫେବୃଆରୀ ମାସ ୪ ତାରିଖରେ । ବର୍ତ୍ତମାନ ଜଗତ୍‌ସିଂହପୁର ଜିଲ୍ଲାର ସଦର ମହକୁମା ଜଗତ୍‌ସିଂହପୁରଠାରେ । ସେଠି ପଶୁଡାକ୍ତର ଭାବରେ କର୍ମରତ ଥାଆନ୍ତି ବଡ଼ବାପା ଡାକ୍ତର ଲୋକନାଥ ଦାସ । ତାଙ୍କରି ସରକାରୀ ବାସଭବନରେ ରାଜେନ୍ଦ୍ର ଭୂମିଷ୍ଠ ହୁଅନ୍ତି । ପିତା ମାଧବ ଚନ୍ଦ୍ର ଦାସ ଏବଂ ମାତା ଯୋସାମଣି । ରାଜେନ୍ଦ୍ରବାବୁଙ୍କ ପୂର୍ବଜମାନେ ପ୍ରଥମେ କୋରାପୁଟରୁ ଆସିଥିଲେ ପାରଳାଖେମୁଣ୍ଡି । ପାରଳାର ଦିନକଲ୍ୟାଣକାରୀ ରାଜାମାନେ ଶିକ୍ଷାର ପୃଷ୍ଠପୋଷକ ଥିଲେ । ପ୍ରଥମେ ପ୍ରପିତାମହ ରାମଚନ୍ଦ୍ର ଦାସ ଆସିଥିଲେ ଶିକ୍ଷକତା ଉଦ୍ଦେଶ୍ୟରେ ପାରଳାଖେମୁଣ୍ଡି । କ୍ରମେ ତାହା ହୋଇଗଲା ତାଙ୍କ ବାସଭୂମି । ରାଜେନ୍ଦ୍ର ବାବୁଙ୍କ ବଡ଼ବାପା ଲୋକନାଥ ଦାସ ପାରଳା

ମହାରାଜାଙ୍କ ପୃଷ୍ଠପୋଷକତା ଲାଭ କରି ମାଡ୍ରାସ ପ୍ରେସିଡ଼େନ୍‌ସି କଲେଜରୁ ଡିଗ୍ରୀ ହାସଲ କଲେ । ବଡ଼ବାପା ଲୋକନାଥ ଏବଂ ବାପା ମାଧବ ଚନ୍ଦ୍ର ଉଭୟେ ଥିଲେ ଅତ୍ୟନ୍ତ ଧୀଶକ୍ତିସମ୍ପନ୍ନ । ଶିକ୍ଷାକ୍ଷେତ୍ରରେ ଲୋକନାଥ ପାରଦର୍ଶୀ ଥିଲାବେଳେ ବ୍ୟବସାୟିକ ବୁଦ୍ଧି ଓ କୌଶଳ ଦୃଷ୍ଟିରୁ ମାଧବ ଚନ୍ଦ୍ର ଥିଲେ ପ୍ରଖର ବୁଦ୍ଧିସମ୍ପନ୍ନ । ତାଙ୍କ ଦୃଢ଼ ମାନସିକ ସଂକଳ୍ପ ତାଙ୍କୁ ଏ କ୍ଷେତ୍ରରେ ଅଗ୍ରସର ହେବା ପାଇଁ ସାହାଯ୍ୟ କରିଥିଲା । ବଡ଼ବାପା ବୃତ୍ତି ଆହ୍ୱାନରେ ପାରଳାଖେମୁଣ୍ଡି ଛାଡ଼ି ଓଡ଼ିଶାର କେନ୍ଦ୍ରାଞ୍ଚଳକୁ ଚାଲିଆସିଲାବେଳେ ବାପା ମାଧବ ଚନ୍ଦ୍ର ମଧ ଭାଗ୍ୟ ଅନ୍ୱେଷଣରେ ବାହାରି ଆସିଲେ- ପାରଳାଖେମୁଣ୍ଡିରୁ କଟକ । ପଛରେ ରହିଗଲା ମହେନ୍ଦ୍ରଗିରି ଓ ମହେନ୍ଦ୍ର ତନୟା ଓ ନିଜର ପ୍ରିୟ ବାଲ୍ୟଭୂମି ପାରଳା । କୋରାପୁଟରୁ ପୂର୍ବଜ ଆସିଥିଲେ ପାରଳା । ପାରଳାରୁ ବଂଶପରା ସ୍ଥାନାନ୍ତର ହେଲା କଟକ । ଜୀବନରେ ସଂଘର୍ଷ ଏବଂ ସାଧନା ଯାହାର ଯେତେ ବେଶୀ, ସେ ସେତେ ବେଶୀ ସଫଳ ମଣିଷ । ଜୀବନର ବାସ୍ତବତା ସହ ଦୃଢ଼ ସଂକଳ୍ପ ଏବଂ ପୁରୋଦୃଷ୍ଟି ରାଜେନ୍ଦ୍ରଙ୍କ ପିତା ମାଧବଚନ୍ଦ୍ର ଦାସଙ୍କୁ ଚଢ଼େଇ ନେଲା ସଫଳତାର ପାହାଚ ପରେ ପାହାଚ । ସେ ପ୍ରତିଷ୍ଠିତ ହେଲେ ଜଣେ ଘରୋଇ ଯାତ୍ରୀ ପରିବହନ ଶିଳ୍ପରେ ଜଣେ ସଫଳ ଅଗ୍ରଦୂତ ଭାବରେ । ଅର୍ଥ, ଐଶ୍ୱର୍ଯ୍ୟ ଆପଣା ଛାଏଁ ଆସିଲା । କିନ୍ତୁ ମନରେ ଅବଶୋଷ । ନିଜେ ଉଚ୍ଚଶିକ୍ଷା ଲାଭ କରିପାରିଲେ ନାହିଁ । ହୁଏତ ସୁବିଧା ଥିଲା । କିନ୍ତୁ ଭାଗ୍ୟରେ ନଥିଲା । ଏଇ ଅବଶୋଷରୁ ତାଙ୍କ ମନରେ ଜନ୍ମନେଲା ପୁତ୍ର ରାଜେନ୍ଦ୍ରଙ୍କୁ ଉଚ୍ଚଶିକ୍ଷା ଦେବାର ଅଦମ୍ୟ ଅଭିଳାଷ । କଟକରେ ରହଣି । ବ୍ୟବସ୍ଥିତ ପରିବାର । ତିନି ପୁଅ ତିନି ଝିଅଙ୍କ ଭିତରେ ବଡ଼ ହେଉଛନ୍ତି ରାଜେନ୍ଦ୍ର । ଚାହିଁଥିଲେ ପିତା ମାଧବଚନ୍ଦ୍ର ରାଜେନ୍ଦ୍ରଙ୍କୁ ବ୍ୟବସାୟରେ ଦୀକ୍ଷିତ କରିପାରିଥା'ନ୍ତେ । କିନ୍ତୁ ଅର୍ଥ ଐଶ୍ୱର୍ଯ୍ୟର ସମ୍ମୋହନ ଅପେକ୍ଷା ଜଣେ ଶିକ୍ଷିତ ବୁଦ୍ଧିଜୀବୀ ଭାବରେ ପୁତ୍ରକୁ ଗଢ଼ି ତୋଳିବାର ପ୍ରବଳ ଇଚ୍ଛା ରାଜେନ୍ଦ୍ରଙ୍କ ପାଇଁ ଉଚ୍ଚଶିକ୍ଷାର ମୂଳଦୁଆ ପକାଇଲା । ଏଥିପାଇଁ ଆତ୍ମନିର୍ଭରଶୀଳତାର ମନ୍ତ୍ରରେ ମାଧବଚନ୍ଦ୍ର ଦୀକ୍ଷିତ କଲେ ରାଜେନ୍ଦ୍ରଙ୍କୁ । ଭୃତ୍ୟ ଓ ସହାୟକମାନଙ୍କ ସହାୟତାକୁ ଅପେକ୍ଷା ନକରି 'ନିଜ କର୍ମ ନିଜେ କରିଯିବାର ଏକ ସ୍ୱାବଲମ୍ବୀ ମନୋଭାବ ତାଙ୍କ ଭିତରେ ପିଲାଦିନରୁ ଜାଗିଉଠିଲା । ଯାହା ତାଙ୍କ ଭାବୀ ଜୀବନ ପାଇଁ ପୁଞ୍ଜି ଭାବରେ କାର୍ଯ୍ୟ କଲା ।

ରାଜେନ୍ଦ୍ରବାବୁ ମାଧମିକ ଶିକ୍ଷା ଓ ସ୍ନାତକ ଶିକ୍ଷା ଯଥାକ୍ରମେ କଟକର ରାଣୀହାଟ ହାଇସ୍କୁଲ ଓ ରେଭେନ୍‌ସା କଲେଜରୁ ଶେଷକରି ୧୯୬୦ ମସିହାରେ ଭୂତତ୍ତ୍ୱ ବିଷୟରେ ସ୍ନାତକ ଡିଗ୍ରୀ ହାସଲ କଲେ । ସ୍ୱାଧୀନତା ପରବର୍ତ୍ତୀ ଭାରତରେ ଶିଳ୍ପାୟନର ଗୁରୁତ୍ୱ ଦୃଷ୍ଟିରୁ ବୈଷୟିକ ଶିକ୍ଷାଲାଭ କରିଥିବା ବ୍ୟକ୍ତିମାନଙ୍କ ପାଇଁ

ବହୁ ସୁଯୋଗ ଓ ସମ୍ଭାବନା ଥିଲା । କିନ୍ତୁ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଧ୍ୱସ୍ତବିଧ୍ୱସ୍ତ ଜର୍ମାନୀ ଏକ ବଜ୍ରସଂକଳ୍ପ ନେଇ ମୁଣ୍ଡଟେକି ଉଠୁଥାଏ । ଶିଳ୍ପ ସମୃଦ୍ଧି କ୍ଷେତ୍ରରେ ସମଗ୍ର ବିଶ୍ୱ ପାଇଁ ଏକ ଆହ୍ୱାନ ଦେଉଥାଏ ଜର୍ମାନୀ । ଉଚ୍ଚତର ଶିକ୍ଷା ପାଇଁ ରାଜେନ୍ଦ୍ର ଗଲେ ଜର୍ମାନୀ । କ୍ଲାଉସ୍‌ଥାଲରେ ଥିବା ବୈଷୟିକ ହାଇସ୍କୁଲରେ ୧୯୬୧ରୁ ୧୯୬୭ ପର୍ଯ୍ୟନ୍ତ ଅଧ୍ୟୟନ କରି ଧାତୁ ବିଜ୍ଞାନରେ ସ୍ନାତକୋତ୍ତର ଡିଗ୍ରୀ ଲାଭ କଲେ । ଏହି ବିଷୟରେ ଉଚ୍ଚତର ଗବେଷଣା କରି ୧୯୭୨ ମସିହାରେ ବର୍ଲିନ୍ ବୈଷୟିକ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଇନ୍ ଇଞ୍ଜିନିୟରିଂ ଉପାଧି ଲାଭ କଲେ । ଏହି ଗବେଷଣାର ବିଷୟ ଥିଲା—"Non-cellular crystallisation of castism with lamellar graphite."

ଅଧ୍ୟୟନ ପାଇଁ ପ୍ରାଥମିକ ପର୍ଯ୍ୟାୟରେ ୧୯୬୧ରୁ ୧୯୬୭ ସାତବର୍ଷ ଜର୍ମାନୀରେ ରହିଲେ ରାଜେନ୍ଦ୍ର । ପରମ୍ପରା ଓ ଚରିତ୍ରବତ୍ତାକୁ ଭୁଲି ନଯିବା ପାଇଁ ବିଦାୟ ବେଳେ ପିତା ମାଧବଚନ୍ଦ୍ର ପୁତ୍ର ରାଜେନ୍ଦ୍ର ହାତରେ ପିନ୍ଧାଇ ଦେଇଥିଲେ ଓଁ ଚିହ୍ନିତ ଏକ ସ୍ୱର୍ଣ୍ଣ ମୁଦ୍ରିକା । ଅଧ୍ୟୟନ ଶେଷ କରି ୧୯୬୭ ମସିହାରେ କଟକ ଫେରି ଆସିବା ପରେ ପ୍ରତିଶ୍ରୁତି ରକ୍ଷାକାରୀ ସେଇ ମୁଦିଟିକୁ ପିତାଙ୍କୁ ଫେରେଇଥିଲେ । ଏଇ ମୁଦିଟି ଭିତରେ ଲୁକ୍କାୟିତ ରହିଥିଲା ପିତାଙ୍କ ଶ୍ରଦ୍ଧା ଏବଂ ମୂଲ୍ୟବୋଧ ଓ ଚରିତ୍ର ପ୍ରତି ତାଙ୍କର ପ୍ରଗାଢ଼ ବିଶ୍ୱାସ । ସେଇ ବିଶ୍ୱାସକୁ ଅକ୍ଷତ ଅବସ୍ଥାରେ ନେଇ ଆସିଥିଲେ ରାଜେନ୍ଦ୍ର ପିତାଙ୍କ ପାଇଁ । ସ୍ୱାଗତ କରିବା ପାଇଁ ରେଳଷ୍ଟେସନରେ ସମବେତ ପରିବାରବର୍ଗଙ୍କ ସମକ୍ଷରେ ମୁଦିଟି ଫେରେଇ ପିତାଙ୍କୁ ପୁତ୍ରର ବିଶ୍ୱାସ ସମର୍ପଣ ଦୃଶ୍ୟଟି ସମସ୍ତଙ୍କୁ ବିସ୍ମିତ, ବିଭୋର କରିଥିଲା । ସାତବର୍ଷ ତଳର ସେଇ ଶୀର୍ଣ୍ଣକାୟ ଯୁବକ ସାଥିରେ ନେଇ ଆସିଛି ବିଦ୍ୟାଧନ ଏବଂ ନିଜର ଚରିତ୍ରଧନ ।

ଏଇ ବର୍ଷ ବିବାହ ବନ୍ଧନରେ ଆବଦ୍ଧ ହୁଅନ୍ତି ରାଜେନ୍ଦ୍ର ବାବୁ । ପତ୍ନୀ ହୋଇ ଆସନ୍ତି ଏକ କୁଳୀନ ପରିବାର ଚନ୍ଦ୍ରକିଶୋର ଦାସ (ବେଙ୍ଗବାବୁ)ଙ୍କ କନିଷ୍ଠା କନ୍ୟା ଇତିଶ୍ରୀ ।

ସେହିବର୍ଷ ପୁଣି ଜର୍ମାନୀକୁ ପ୍ରତ୍ୟାବର୍ତ୍ତନ୍ । ମୁକ୍ତ ଅର୍ଥନୀତିର ଦେଶ ଜର୍ମାନୀରେ ବୈଷୟିକ ଶିକ୍ଷା ଲାଭ କରିଥିବା ରାଜେନ୍ଦ୍ରଙ୍କୁ ଭାରତର ପ୍ରଚଳିତ ବ୍ୟବସ୍ଥା ଅନୁକୂଳ ମନେହେଲା ନାହିଁ । ଆତ୍ମବିଶ୍ୱାସକୁ ପାଥେୟ କରି ଭାଗ୍ୟ ସହ ଅହରହ ଖେଳ ଖେଳିଥିବା ଖେଳୁଆଡ଼ ରାଜେନ୍ଦ୍ରଙ୍କ ପାଇଁ ସ୍ୱଚ୍ଛନ୍ଦ ଭୂମି ଥିଲା ୟୁରୋପ । ମୁକ୍ତ ଅର୍ଥନୀତିରେ ବିଶ୍ୱାସ କରୁଥିବା ଭୂଖଣ୍ଡ । ସେଠି ବୁଦ୍ଧି, ବୈଷୟିକ ଜ୍ଞାନ ଓ ଆତ୍ମବିଶ୍ୱାସକୁ ବାଜି ଲଗାଯାଏ । ଏ ସମସ୍ତ ପ୍ରଚୁର ଭାବରେ ଥିଲା ରାଜେନ୍ଦ୍ରଙ୍କ ପାଖରେ । ସେ ଚଢ଼ିଚାଲିଲେ ସଫଳତାର ସୋପାନ ପରେ ସୋପାନ ।

୧୯୬୭ରୁ ୧୯୯୮ ପର୍ଯ୍ୟନ୍ତ ଜର୍ମାନୀର ବହୁ କମ୍ପାନୀରେ ଗୁରୁତ୍ୱପୂର୍ଣ୍ଣ ପଦବୀମାନଙ୍କରେ କାର୍ଯ୍ୟ କରି ସେ ନିଜର ବୈଷୟିକ ଦକ୍ଷତାର ପ୍ରମାଣ ଦେଇଛନ୍ତି । ୧୯୮୫ ମସିହାଠାରୁ ୧୯୯୮ ମସିହା ପର୍ଯ୍ୟନ୍ତ ପୃଥିବୀପ୍ରସିଦ୍ଧ ଷ୍ଟିଲ୍ ବହୁଦେଶୀୟ କମ୍ପାନୀ ମ୍ୟାନେସ୍‌ମାନ୍ ଡିମାଗରେ କାର୍ଯ୍ୟ କରି ୧୯୯୮ ମସିହାରେ ଭାରତ ପାଇଁ ଏହି କମ୍ପାନୀର ଭାଇସ୍ ପ୍ରେସିଡ଼େଣ୍ଟ ଭାବରେ ନିଯୁକ୍ତି ପାଇଲାପରେ ହଠାତ୍ ଚାକିରିରୁ ସ୍ୱେଚ୍ଛାକୃତ ଅବସର ଘୋଷଣା କରିଛନ୍ତି । ଏ ପଦବୀଟି ଯେକୌଣସି ଭାରତୀୟ ପାଇଁ ହୁଏତ ଏକ ବିରଳ ସମ୍ମାନ ହୋଇଥା'ନ୍ତା । କିନ୍ତୁ ଦୀର୍ଘକାଳ ଧରି ବୈଷୟିକ କ୍ଷେତ୍ରରେ ଅନେକ ଗୁରୁଦାୟିତ୍ୱ ବହନ କରି କରି ବିରକ୍ତି ଆସିଥିଲା ରାଜେନ୍ଦ୍ରବାବୁଙ୍କର । ପୁଣି ପରିଣତ ବୟସରେ ମଣିଷର ମନ ବିଷୟରୁ ବାହାରି ବୈରାଗ୍ୟ ଆଡ଼କୁ ଗତି କରେ । ମୁକ୍ତିର ମାଧୁର୍ଯ୍ୟ ଆସ୍ୱାଦନ କରିବାକୁ ଇଚ୍ଛା କରେ । ହୁଏତ ଏଭଳି ଏକ ମାନସିକ କାରଣରୁ ୧୯୯୯ ମସିହାଠାରୁ ସେ ସ୍ୱାଧୀନ ଭାବରେ ଆନ୍ତର୍ଜାତିକ ବ୍ୟବସାୟ କ୍ଷେତ୍ରରେ ପରାମର୍ଶଦାତା ଭାବରେ ସାମୟିକ କାର୍ଯ୍ୟ କରୁଛନ୍ତି । ପଦପଦବୀର ମୋହ ତାଙ୍କୁ ଆଉ ଆକର୍ଷିତ କରୁ ନାହିଁ । ଏକ ମୋହମୁକ୍ତ ସ୍ଥିତି ଆଡ଼କୁ ଅଗ୍ରସର ହେଉଛନ୍ତି ରାଜେନ୍ଦ୍ରବାବୁ । ଏବେ କର୍ମ ଅଛି, କିନ୍ତୁ ତା' ସହିତ ଅବସର ବି ଅଛି । କର୍ମ ଅଛି, ରହିବାକୁ ବାଧ । କର୍ମଯୋଗୀଟିଏ କେବେ ବି ଅକର୍ମା ହୋଇ ରହି ନପାରେ । ବୟସ ଆସିଲେ କର୍ମର ଦିଗ ବଦଳିଯାଏ କେବଳ । କର୍ମ ଥାଏ । କିନ୍ତୁ କର୍ମର ତାଡ଼ନା ନଥାଏ । ଏବେ ନିଜ ଖିଆଲରେ, ମର୍ଜିରେ କିଛି କାମ କରାଯାଇପାରେ । ଏଇ ସ୍ଥିତିରେ ଅଛନ୍ତି ରାଜେନ୍ଦ୍ର ବାବୁ । ଓଡ଼ିଶା ଛାଡ଼ି ସୁଦୂର ଜର୍ମାନୀ ଯାଇଛନ୍ତି । ସେଠାରେ ଦୀର୍ଘଦିନ ରହଣି ହେତୁ ସେ ଦେଶର ନାଗରିକତ୍ୱ ବି ଗ୍ରହଣ କରିସାରିଛନ୍ତି ସିନା, ଓଡ଼ିଶା ମାଟିର ଗନ୍ଧ, ତା'ର ଡାକ, ତା'ର ମୁହଁ ଭୁଲିପାରି ନାହାନ୍ତି । ସେଇଥିପାଇଁ ସୁଯୋଗ ପାଇବା ମାତ୍ରେ ବାରମ୍ବାର ଉଡ଼ି ଆସିଛନ୍ତି ଓଡ଼ିଶାକୁ । ଉଦ୍ଦେଶ୍ୟ ଓଡ଼ିଶା ତାଙ୍କ ଭିତରେ ସଦା ଜୀବନ୍ତ ରହୁ । କେବେ ବି ଏକ ସ୍ମୃତି ହେଇ ନଯାଉ । ଏବେ ବି ଓଡ଼ିଶା ଆସିଲେ ସେ ବହୁ ବନ୍ଧୁଙ୍କୁ ଭେଟନ୍ତି । ସମାଜର ସବୁ ବର୍ଗର ସେ ବନ୍ଧୁମାନେ । ଏକ ନିରୁତା ଭଲ ପାଇବାରୁ ,. ବନ୍ଧୁତ୍ୱ । ଯାହା ଭିତରେ ମଣିଷପଣିଆ, ହୃଦ୍ୟତା ସେ ଦେଖିଛନ୍ତି; ତା' ସହ ବନ୍ଧୁ ହୋଇଛନ୍ତି ।

ନିଜ ମାଟିକୁ ଆସିଲେ ଓଡ଼ିଆ ଭଳି ଚଳିବାରେ ତାଙ୍କର ଅତ୍ୟନ୍ତ ଆଗ୍ରହ । କୁର୍ତ୍ତା ପାଇଜାମା ପିନ୍ଧି ବିଭିନ୍ନ ସାଂସ୍କୃତିକ ଓ ସାମାଜିକ ଉତ୍ସବରେ ସମସ୍ତଙ୍କ ସହ ମନଖୋଲି ସାମିଲ୍ ହେବାରେ ସେ ଯେଉଁ ଆନନ୍ଦ ଦେଖାନ୍ତି, ତାଙ୍କୁ ଦେଖିଲେ

କେହି କହିବ ନାହିଁ ଯେ; ୩୦ ବର୍ଷ ଧରି ଅହରହ ପୃଥିବୀ ପରିକ୍ରମା କରୁଥିବା ଜଣେ ଆନ୍ତର୍ଜାତିକ ପରାମର୍ଶଦାତା ଇଞ୍ଜିନିୟର ସେ ।

ପୃଥିବୀର ପ୍ରାୟ ସବୁ ଦେଶ ସେ ବୁଲିଛନ୍ତି । ସେଗୁଡ଼ିକ ହେଲେ ଆଲଜେରିଆ, ଅଷ୍ଟ୍ରିଆ, ବାହାରିନ୍, ବାଙ୍ଗଲାଦେଶ, ବ୍ରାଜିଲ୍, କାନାଡ଼ା, ଇଜିପ୍ଟ, ଫ୍ରାନ୍ସ, ଜର୍ମାନୀ, ବ୍ରିଟେନ୍, ଇଣ୍ଡୋନେସିଆ, ଇରାନ୍, ଇରାକ୍, ଜାପାନ, କୋରିଆ, କୁଏତ୍, ଲେବାନନ୍, ଲିବ୍ୟା, ମାଲୟେସିଆ, ମାଲ୍ଟା, ମରକ୍କୋ, ନାଇଜେରିଆ, ଓମାନ୍, ଫିଲିପାଇନ୍ସ, ପର୍ତ୍ତୁଗାଲ୍, କ୍ୱତାରି, ରୋମାନିଆ, ରୁଷିଆ, ସାଉଦି ଆରବ, ସିଙ୍ଗାପୁର, ସିରିଆ, ଥାଇଲ୍ୟାଣ୍ଡ, ଟ୍ୟୁନିସିଆ, ତୁର୍କୀ, ମିଳିତ ଆରବ ଏମିରେଟସ୍, ଯୁକ୍ତରାଷ୍ଟ୍ର ଆମେରିକା ଏବଂ ଭେନ୍‌ଜୁଆଲା ।

ଏତେ ସତ୍ତ୍ୱେ ବି ଓଡ଼ିଶାର ଖବର ରଖନ୍ତି । ସାହିତ୍ୟ, ସଂସ୍କୃତି ଠାରୁ ରାଜନୀତି ପର୍ଯ୍ୟନ୍ତ । କିନ୍ତୁ ବେଶୀ ରୁଚି ଏବଂ ଆଗ୍ରହ ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ପାଇଁ । ଏ କ୍ଷେତ୍ରରେ କିଛି କରିବା ପାଇଁ ତାଙ୍କ ଭିତରେ ଯେଉଁ ପ୍ରବଣତା ଥିଲା ତାହା ତାଙ୍କ ବିଦେଶ ରହଣି ହେତୁ ସମ୍ଭବ ହୋଇପାରୁ ନଥିଲା । ତେଣୁ ସବୁବେଳେ ଗୋଟିଏ ଅନୁଶୋଚନା, ଅବଶୋଷ ତାଙ୍କୁ ଘାରୁଥିଲା । ଓଡ଼ିଶାର ସଂସ୍କୃତି ଓ ସାହିତ୍ୟ କ୍ଷେତ୍ରରେ କିଛି କରିବାର ଇଚ୍ଛାଟି ତାଙ୍କର ବଳବତୀ ହୋଇଯାଇଥିଲା ଏଥିପାଇଁ । ପ୍ରାଚୀନ ଓଡ଼ିଆ ସାହିତ୍ୟ ପ୍ରତି ତାଙ୍କର ପ୍ରବଳ ଆକର୍ଷଣ । ବିଶେଷକରି ଭଞ୍ଜ ସାହିତ୍ୟ ପ୍ରତି । ଭଞ୍ଜଙ୍କ କାବ୍ୟ କବିତା ପଢ଼ିଲେ, ସଙ୍ଗୀତ ଶୁଣିଲେ ତାଙ୍କୁ ରୋମାଞ୍ଚିତ ଲାଗେ । ଏକ ସାରସ୍ୱତ ଆନନ୍ଦ ସେ ଅନୁଭବ କରନ୍ତି । କାହିଁ ଜର୍ମାନୀ କାହିଁ କଟକ ସହର । ଏଥିପାଇଁ ସେ ଉଡ଼ି ଆସନ୍ତି ଉପସ୍ଥିତ ରହିବାକୁ ଭଞ୍ଜ ଜୟନ୍ତୀରେ । ଭଞ୍ଜ ସାହିତ୍ୟ ବହୁ ବକ୍ତାଙ୍କ ମୁହଁରେ ଚର୍ଚ୍ଚିତ ହେବାର ଶୁଣିବେ । ପୁଲକିତ ହେବେ । ତା' ମାଧ୍ୟମରେ ଭଞ୍ଜକବିଙ୍କ ପ୍ରତି ନିଜର ଶ୍ରଦ୍ଧାଞ୍ଜଳି ଜଣାଇବେ । କେବଳ ଏତିକି ନୁହେଁ, ଭଞ୍ଜ ଜୟନ୍ତୀ ଆୟୋଜନର ସେ ଜଣେ ପୃଷ୍ଠପୋଷକ ମଧ୍ୟ । ଭଞ୍ଜ ଜୟନ୍ତୀ ଉତ୍ସବରେ ବହୁ ବକ୍ତାଙ୍କ ସୁନ୍ଦର ଭାଷଣ ଶୁଣି ଗଦ୍‌ଗଦ୍ ହୋଇଯାଇଛନ୍ତି । କୁଣ୍ଢେଇ ପକେଇଛନ୍ତି ବକ୍ତାଙ୍କୁ । ଏଭଳି ଜଣେ ବିହ୍ୱଳ ସାହିତ୍ୟ ଅନୁରାଗୀ ରାଜେନ୍ଦ୍ରବାବୁ ।

ଓଡ଼ିଆ ସଂସ୍କୃତିର ସୁରକ୍ଷା ପାଇଁ ତାଙ୍କ ବ୍ୟାକୁଳତା ପ୍ରବଳ । ସେଥିପାଇଁ ଅନେକ ସାଂସ୍କୃତିକ ଅନୁଷ୍ଠାନକୁ ସେ ମୁକ୍ତ ହସ୍ତରେ ଦାନ କରନ୍ତି । ଶିକ୍ଷାନୁଷ୍ଠାନକୁ ସାହାଯ୍ୟ କରିବାରେ ମଧ୍ୟ ତାଙ୍କର ଯଥେଷ୍ଟ ଯୋଗଦାନ ରହିଛି । କଟକର ବୁଢ଼ୀ ମଙ୍ଗଳା ବିଦ୍ୟାଳୟକୁ ଏକ ଆଧୁନିକ ବିଦ୍ୟାଳୟ ଭାବରେ ପ୍ରତିଷ୍ଠା କରିବାରେ ତାଙ୍କର ମହତ୍ତ୍ୱପୂର୍ଣ୍ଣ ଯୋଗଦାନ ରହିଛି ।

ବିଦେଶୀ ରାଷ୍ଟ୍ରମାନଙ୍କରେ ବର୍ତ୍ତମାନ ବହୁ ଓଡ଼ିଆ ବସବାସ କରୁଛନ୍ତି । ନିଜ ମାଟିରେ ଥିଲାବେଳେ ମାଟିର ମହତ୍ତ୍ୱ ଯେତେ ଜାଣିହୁଏ, ତା'ଠୁ ବେଶୀ ଜାଣିହୁଏ ବିଦେଶରେ ରହିଲେ । ନିଜ ମାଆ ପରି ମନେପଡ଼େ ମାଟିମାଆ । ସେଥିପାଇଁ ୟୁରୋପ ଓ ଆମେରିକାର ବିଦେଶୀ ଓଡ଼ିଆମାନଙ୍କୁ ଏକତ୍ର କରି, ଓଡ଼ିଆ ଅନୁଷ୍ଠାନମାନ ଗଢ଼ିଛନ୍ତି ରାଜେନ୍ଦ୍ରବାବୁ । ଉଦ୍ଦେଶ୍ୟ ଉତ୍କଳୀୟ ଚେତନାଟିକୁ ବିଦେଶୀ ଓଡ଼ିଆମାନଙ୍କ ଭିତରେ ବଞ୍ଚାଇ ରଖିବା ।

ଏବେ ତ ଜୀବନର ସାୟାହ୍ନ । ଅର୍ଥ, ଯଶ ଏବଂ ଐଶ୍ୱର୍ଯ୍ୟ ଆଡୁ ମନ ଫେରିଲାଣି । ଭଗବତ୍-ଉନ୍ମୁଖ ମନପ୍ରାଣ । ଜୀବନରେ ବସ୍ତୁବାଦକୁ ନେଇ କାରବାର କରିଛନ୍ତି ସିନା, ଏକ ପାରମାର୍ଥିକ ସତ୍ତା ଉପରେ ପ୍ରଗାଢ଼ ବିଶ୍ୱାସ ରଖିଛନ୍ତି ରାଜେନ୍ଦ୍ରବାବୁ । ତାଙ୍କ ଜୀବନର ଘଟଣାଟିଏ ଏଠି ପ୍ରାସଙ୍ଗିକ । ଏ ଘଟଣାଟିକୁ ଚେନ୍ନାଇରେ ଥିବା ପ୍ରଖ୍ୟାତ ଓଡ଼ିଆ ହୃଦ୍‌ରୋଗ ବିଶେଷଜ୍ଞ ଡାକ୍ତର କବି ପ୍ରସାଦ ମିଶ୍ର ତାଙ୍କ ଗୋଟିଏ ପୁସ୍ତକରେ ଉଲ୍ଲେଖ କରିଛନ୍ତି । ଚେନ୍ନାଇ ସମୁଦ୍ର କୂଳରେ ଜଗନ୍ନାଥ ମନ୍ଦିର ତିଆରି ଚାଲିଥାଏ । ମୁଖ୍ୟ ଉଦ୍ୟୋକ୍ତା ଥାଆନ୍ତି ଡାକ୍ତର ମିଶ୍ର । ଆଗରୁ ତ ରାଜେନ୍ଦ୍ରବାବୁଙ୍କ ସହ ସମ୍ପର୍କ ଥାଏ । ଶୁଣିଲେ ରାଜେନ୍ଦ୍ରବାବୁ ଚେନ୍ନାଇ ଆସିଛନ୍ତି । ରାଜେନ୍ଦ୍ରବାବୁ ସଂସ୍କୃତିର ପୃଷ୍ଠପୋଷକ । ଚେନ୍ନାଇରେ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠାରେ ସାହାଯ୍ୟ କରିବେ ନିଶ୍ଚୟ । ପହଞ୍ଚିଲେ ସେ ରହୁଥିବା ହୋଟେଲ୍‌ରେ । ଶ୍ରଦ୍ଧା ବିନିମୟ, ସମ୍ଭାଷଣ ପରେ ଅଭିପ୍ରାୟ ଜଣାଇଲେ ଡାକ୍ତର ମିଶ୍ର । ରାଜେନ୍ଦ୍ର ବାବୁ ସବୁ ଶୁଣିସାରିବା ପରେ ସୁଟ୍‌କେଶ୍ ଖୋଲି ବାହାର କଲେ ପାଞ୍ଚ ହଜାର ଟଙ୍କା ଏବଂ ବଢ଼େଇଦେଲେ କବିପ୍ରସାଦଙ୍କ ହାତକୁ । କବିପ୍ରସାଦ ଟଙ୍କାତକ ହାତରେ ଧରିଲେ । ରାଜେନ୍ଦ୍ରବାବୁ କେତେବଡ଼ ଲୋକ ! କେଉଁ ଅର୍ଥର ଅଭାବ ଅଛି ତାଙ୍କର ! ପୁଣି ଜଗନ୍ନାଥଙ୍କ କାମ । ଯା'ଠୁ ଭଲ ଉପାୟରେ ଦାନ କରିବାର ଆଉ କି ସୁଯୋଗ ଅଛି ! ଅଥଚ ମାତ୍ର ୫୦୦୦ ଟଙ୍କା ଦେଲେ ରାଜେନ୍ଦ୍ର ବାବୁ ? ଏମିତି ଲୋକଠାରୁ ଏପରି ଦାନ ? କେତେ ଆଶା ନେଇ ସେ ଆସିଥିଲେ, କ'ଣ କରିବେ, ଫେରେଇ ପାରିବେ ନାହିଁ, ଦାତା ଅପମାନିତ ହେବେ । ନେବେ କୋଉ କୂଳକୁ ହବନି ଏତକ ଟଙ୍କା । ଡାକ୍ତର ମିଶ୍ରଙ୍କ ଭାବନା ସରିବା ପରେ ରାଜେନ୍ଦ୍ରବାବୁ କହିଲେ- ଡାକ୍ତର ମିଶ୍ର, ମୋ ସହ ଆପଣଙ୍କର ଯେତେଥର ଦେଖା ହଉଥିବ, ମୁଁ ସେତେଥର ପାଞ୍ଚ ହଜାର ଟଙ୍କା ଲେଖାଏଁ ଆପଣଙ୍କୁ ଦେଉଥିବି । ଯା' ଭିତରେ କେତେବର୍ଷ ବିତିଗଲାଣି । ବହୁଥର ଡାକ୍ତର ମିଶ୍ର ଏବଂ ରାଜେନ୍ଦ୍ର ବାବୁ ଭେଟାଭେଟି ହେଇଛନ୍ତି । ସତ୍ୟରକ୍ଷା କରି ପ୍ରତିଥର ରାଜେନ୍ଦ୍ରବାବୁ ଡାକ୍ତର ମିଶ୍ରଙ୍କ ହାତକୁ ବଢ଼େଇ ଦେଇଛନ୍ତି

ପାଞ୍ଚ ହଜାର ଟଙ୍କା । ପ୍ରଚ୍ଛନ୍ନ ଉଦ୍ଦେଶ୍ୟ । ଜଗନ୍ନାଥଙ୍କ କାମ ଉଏ । ତାଙ୍କରି ଆଶିଷରେ ଯଦି ରାଜେନ୍ଦ୍ରବାବୁଙ୍କ ଅର୍ଥ ତାଙ୍କ ମନ୍ଦିର କାର୍ଯ୍ୟରେ ଲାଗିବାକୁ ଥାଏ, ତେବେ ସେ ବାରମ୍ବାର ଡାକ୍ତର ମିଶ୍ରଙ୍କ ସହ ଭେଟେଇବେ ଏବଂ ଜଗନ୍ନାଥ ଜୀବନ୍ତ ହେଇ ତାଙ୍କ ହୃଦୟରେ ସବୁବେଳେ ଥିବେ । ରାଜେନ୍ଦ୍ର ବାବୁଙ୍କ ଏ ଉଚ୍ଚ ଆଧାତ୍ମିକ ବିଚାରରେ ବିଭୋର ହେଇଥିଲେ ଡାକ୍ତର କବିପ୍ରସାଦ ।

କାହାର ଦୁଃଖ ଦେଖିଲେ ବିଗଳିତ ହେବା ଏବଂ ସାହାଯ୍ୟ କରିବା, କେଉଁଠି ପ୍ରତିଭା ଦେଖିଲେ ପ୍ରଶଂସାରେ ଶତମୁଖ ହେବା, କେଉଁଠି ଉତ୍ସାହ ଦେଖିଲେ ପିଠିରେ ହାତ ଥାପୁଡ଼େଇଦେବା- ଏସବୁ ରାଜେନ୍ଦ୍ରଙ୍କ ଚରିତ୍ରଗତ, ମଣିଷପଣିଆରେ ଭରପୂର ମଣିଷ ସେ । ଏବେ ବିଶେଷ ଜଞ୍ଜାଳ ନାହିଁ । ପୁଅ ରାଜଦୀପ ଲଣ୍ଡନର ହାରୋ ସ୍କୁଲ ଏବଂ ଲଣ୍ଡନ ସ୍କୁଲ୍ ଅଫ୍ ଇକନମିକ୍ସରୁ ପାଶ୍ କରି ଲଣ୍ଡନରେ ଏକ୍‌ଜିକ୍ୟୁଟିଭ୍ ଏବଂ ଝିଅ ଅନୁସ୍ୱାର ଡାକ୍ତରୀ ପାଠ ସରିଆସିଲାଣି । କିଛି ଜଞ୍ଜାଳ ତ ଅଛି ନିଶ୍ଚୟ । ତେବେ ଜଞ୍ଜାଳର ଯନ୍ତ୍ରଣା ନାହିଁ । ଅର୍ଥ, ଐଶ୍ୱର୍ଯ୍ୟ, ପାରିବାରିକ ଆନନ୍ଦ ଦେଇ ଜୀବନ ପ୍ରାଣକୁ ଭରିଦେଇଛନ୍ତି ଭଗବାନ । ଆଉ ଅବଶୋଷ ନାହିଁ କେଉଁଥିରେ । କେବଳ ଓଡ଼ିଶାର ସାଂସ୍କୃତିକ ସେବାକୁ ଛାଡ଼ି । ସାମୟିକ ବୃତ୍ତି ଭାବରେ ଆନ୍ତର୍ଜାତିକ କ୍ଷେତ୍ରରେ ବୈଷୟିକ ପରାମର୍ଶ । ତେଣୁ ତାଙ୍କ ମୁହଁକୁ ସେ ଫେରେଇଛନ୍ତି ଓଡ଼ିଶା ଆଡ଼କୁ । ଓଡ଼ିଶା ପାଇଁ କିଛି କରିବାର ନିଶା ତାଙ୍କୁ ଘାରିଛି । ଭଗବାନ ତାଙ୍କୁ ଅନେକ କିଛି ଦେଇଛନ୍ତି । ସେ ସମାଜକୁ ବି କିଛି ଦେଇଯିବେ । ଭଲ କଥା, ଏ ନିଶା ତାଙ୍କୁ ଘାରିଥାଉ ଏବଂ ଉତ୍କଳୀୟ ସାହିତ୍ୟ, ସଂସ୍କୃତି ତାଙ୍କ ପୃଷ୍ଠପୋଷକତା ଲାଭ କରି ପୁଷ୍ଟଳ ହେଉ ।

❑ ❑

# ଶିଶୁ ସାହିତ୍ୟିକ ବାସୁଦେବ ମହାପାତ୍ର

ପ୍ରସନ୍ନ କୁମାର ଦାଶ

ଆଧୁନିକ ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ କବିସୂର୍ଯ୍ୟନଗରର ପ୍ରାକ୍ତନ ନାମ ଥିଲା ବୋଇରାଣୀ । ଓଡ଼ିଶାର ଏହି ଦ୍ୱିତୀୟ ବୃହତ୍ତମ ଜନବହୁଳ ଗ୍ରାମର ଦକ୍ଷିଣ ଉପାନ୍ତରେ ଅବସ୍ଥିତ ରାମଚନ୍ଦ୍ରପୁର ଶାସନରେ ୧୯୩୧ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ ଶ୍ରୀଯୁକ୍ତ ବାସୁଦେବ ମହାପାତ୍ର । ତାଙ୍କ ପିତା ଗୋବିନ୍ଦ ମହାପାତ୍ର ଥିଲେ ଜଣେ ଆଜୀବନ ଅଗ୍ନିହୋତ୍ରୀ, ଶାକାହାରୀ, ଧର୍ମନିଷ୍ଠ, ବଦାନ୍ୟ, ବ୍ରହ୍ମତେଜଦୀପ୍ତ ବ୍ରାହ୍ମଣ ଏବଂ ମାତା ରାହାସ ଦେବୀ ଥିଲେ ଜଣେ ଅତ୍ୟନ୍ତ ସହିଷ୍ଣୁ, ସ୍ନେହଶୀଳା, ବଦାନ୍ୟା ଓ ଧର୍ମପ୍ରାଣା ମହିଳା । ସେମାନଙ୍କ ତିନି ପୁତ୍ର ସନ୍ତାନ ଏବଂ ଏକ କନ୍ୟା ସନ୍ତାନଙ୍କ ମଧ୍ୟରେ ସର୍ବକନିଷ୍ଠ ଥିଲେ ବାସୁଦେବ । ଦୀର୍ଘ କାଳ ଧରି ବିତ୍ତଶାଳୀ ଥିବା ଏହି ମହାପାତ୍ର ପରିବାର ବାସୁଦେବଙ୍କ ଜନ୍ମ ବେଳକୁ ଦୁର୍ଯୋଗବଶତଃ ନିଃସ୍ୱପ୍ରାୟ ହୋଇଯାଇଥିଲା ।

ବାସୁଦେବଙ୍କ ପିତା ଗୋବିନ୍ଦଙ୍କର ମାତୃଭାଷା ବ୍ୟତୀତ ହିନ୍ଦୀ, ବଙ୍ଗଳା ଓ ସଂସ୍କୃତ ଭାଷାରେ ପ୍ରବେଶ ଥିଲା ଏବଂ ଇଂରାଜୀ ଭାଷାରେ ସାମାନ୍ୟ ପରିଚୟ ମାତ୍ର ଥିଲା । ସ୍ୱାଧ୍ୟାୟ ପ୍ରତି ତାଙ୍କର ଦୁର୍ବାର ଆଗ୍ରହ ଥିଲା । ଉତ୍ତରାଧିକାର ସୂତ୍ରରେ ବାଳକାବସ୍ଥାରେ ହିଁ ବାସୁଦେବ ପିତାଙ୍କ ନିକଟରୁ ହିନ୍ଦୀ ଓ ବଙ୍ଗଳା ଭାଷା ଶିକ୍ଷା କରିଥିଲେ । ଅଧିକନ୍ତୁ ସରଳ, ସ୍ୱାବଲମ୍ବୀ, ନୀତିନିଷ୍ଠ ଜୀବନଯାପନ କରିବା ଦିଗରେ ସେ ପିତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ । ଏପରିକି ମହାମାନବ ମହାତ୍ମା ଗାନ୍ଧିଙ୍କ ଆହ୍ୱାନକ୍ରମେ ଏହି ପରିବାରର ଆବାଳ-ବୃଦ୍ଧ-ବନିତା ପ୍ରତିଦିନ ଚରଖାରେ ସୂତା କାଟୁଥିଲେ ।

ଛଅ ବର୍ଷ ବୟସରେ ବାସୁଦେବ ପ୍ରାଥମିକ ବିଦ୍ୟାଳୟରେ ପ୍ରବେଶ କରିଥିଲେ । ସେତେବେଳେ ତାଙ୍କର ସର୍ବଜ୍ୟେଷ୍ଠ ଭ୍ରାତା ଉଦୟନାଥ ସ୍ଥାନୀୟ ଶ୍ରୀ ମର୍ଦ୍ଦରାଜ ମଧ୍ୟ ଇଂରାଜୀ ବିଦ୍ୟାଳୟର ଶିକ୍ଷକ । ପ୍ରାଥମିକ ବିଦ୍ୟାଳୟରେ ମାତ୍ର ଦେଢ଼ ବର୍ଷ ଅଧ୍ୟୟନ କରିବା ପରେ ଜ୍ୟେଷ୍ଠଭ୍ରାତାଙ୍କ ଇଚ୍ଛାନୁସାରେ ସେ ସ୍ଥାନୀୟ ମଧ୍ୟ ଇଂରାଜୀ ବିଦ୍ୟାଳୟର ଚତୁର୍ଥ ଶ୍ରେଣୀରେ ପ୍ରବେଶ କରିଥିଲେ । ସେଠାରେ

ଛାତ୍ରାବସ୍ଥାରେ ହିଁ ବାସୁଦେବଙ୍କ ବାଳପ୍ରତିଭାର ଆଭାସ ମିଳିଥିଲା । ଜାତିର ଜନକ ମହାତ୍ମା ଗାନ୍ଧିଙ୍କ 'ଭାରତଛାଡ଼' ଆନ୍ଦୋଳନ ଯେତେବେଳେ ଆକୁମାରୀ ହିମାଳୟ ଉଦ୍‌ବେଳନ କରୁଥିଲା, ସେତେବେଳେ ବାଳକ ବାସୁଦେବ ରଚନା କରିଥିଲେ ଏକ ସରଳ, ମର୍ମସ୍ପର୍ଶୀ ଦେଶାତ୍ମବୋଧ ଗୀତି କବିତା । ତାଙ୍କ ସହପାଠୀମାନେ ସେହି କବିତାକୁ ସହର୍ଷ ଆବୃତ୍ତି କରି ତାଙ୍କୁ ଉତ୍ସାହିତ କରିବା ବେଳେ ତାହା ଶିକ୍ଷକମାନଙ୍କ ଶ୍ରୁତିଗୋଚର ହେଲା । ପ୍ରୋକ୍ତ କବିତାର ପ୍ରସାରଗତ ଦୁଷ୍ପରିଣାମ ତାଙ୍କ ଶିକ୍ଷକକୁଳ ଏବଂ ଅଭିଭାବକବର୍ଗଙ୍କୁ ଏତେଦୂର ଶଙ୍କିତ କରିଥିଲା ଯେ; ସେମାନେ ଏହି ବାଳପ୍ରତିଭାକୁ ରାଜବିରୋଧୀ ଭୂମିକାରୁ ଅଗତ୍ୟା ନିବୃତ୍ତ କରାଇଥିଲେ ।

ସେତେବେଳେ ବୋଇରାଣୀରେ ହାଇସ୍କୁଲ ନଥିବା ହେତୁ ବାସୁଦେବଙ୍କ ମାଧମିକ ଶିକ୍ଷା ସମ୍ବଲପୁର ଜିଲ୍ଲାନ୍ତର୍ଗତ ସ୍ୱନାମଧନ୍ୟ ଲରମ୍ବା ଆବାସିକ ହାଇସ୍କୁଲରେ ସମ୍ପନ୍ନ ହୋଇଥିଲା । ଏହି ଆଦର୍ଶ ବିଦ୍ୟାଳୟର ଶୃଙ୍ଖଳା, ନୀତିନିୟମ, ଅଧାପନାଗତ ଉତ୍କର୍ଷ ତଥା ପ୍ରଧାନଶିକ୍ଷକ ସ୍ୱର୍ଗତ କୃଷ୍ଣଚନ୍ଦ୍ର ସେନଗୁପ୍ତଙ୍କ ବ୍ୟକ୍ତିତ୍ୱ ବାସୁଦେବଙ୍କ ପରବର୍ତ୍ତୀ କାଳର ଜୀବନପ୍ରବାହକୁ ବିଶେଷଭାବେ ପ୍ରଭାବିତ କରିଥିଲା । ମଧ ଇଂରାଜୀ ବିଦ୍ୟାଳୟରୁ ମାଧମିକ ବିଦ୍ୟାଳୟ ସ୍ତରୀୟ ଛାତ୍ରାବସ୍ଥାରେ ଏହି ମନସ୍ୱୀ ବାଳକ ଦ୍ୱାରା ରଚିତ ବହୁ ବିଭୁବନ୍ଦନାତ୍ମକ ଗୀତି କବିତା ତାଙ୍କର ଜନ୍ମସଂସ୍କାରଭିତ୍ତିକ ସାରସ୍ୱତ ପ୍ରତିଭାର ପରିଚୟ ଦିଏ । ୧୯୪୭ରେ ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ପରିଚାଳିତ ମାଟ୍ରିକୁଲେସନ୍ ପରୀକ୍ଷାରେ ସେ ଉତ୍ତୀର୍ଣ୍ଣ ହୋଇଥିଲେ । ଜଣେ ଆଜ୍ଞାଧୀନ, ଚରିତ୍ରବାନ୍ ଓ ଧୀମାନ୍ ଛାତ୍ର ରୂପେ ମାଧମିକ ବିଦ୍ୟାଳୟର ଗୁରୁବର୍ଗଙ୍କ ଦ୍ୱାରା ସେ ବିଶେଷ ଆଦୃତ ଓ ପ୍ରଶଂସିତ ହେଉଥିଲେ । ମାଟ୍ରିକୁଲେସନ୍ ପରୀକ୍ଷାର ଇଂରାଜୀ ଓ ଓଡ଼ିଆ ଭାଷା ପତ୍ରରେ ଉଚ୍ଚାଙ୍କ ପ୍ରାପ୍ତି ତାଙ୍କର ମହାବିଦ୍ୟାଳୟ ପ୍ରବେଶକାଳୀନ ବିଷୟ ନିର୍ବାଚନକୁ ନିର୍ଣ୍ଣୟ କରିଥିଲା ।

କଲେଜ ଶିକ୍ଷା ନିମିତ୍ତ ଅର୍ଥାଭାବ ପ୍ରଧାନ ପ୍ରତିବନ୍ଧକ ରୂପେ ଦଣ୍ଡାୟମାନ ହେବା ପରିସ୍ଥିତିରେ ବାସୁଦେବଙ୍କ ପରବର୍ତ୍ତୀ ଜ୍ୟେଷ୍ଠଭ୍ରାତା କାଶୀନାଥ ତାଙ୍କୁ ସଙ୍ଗରେ ନେଇ ବ୍ରହ୍ମପୁରସ୍ଥ ଖଲିକୋଟ୍ କଲେଜରେ ପ୍ରବେଶ କରାଇଥିଲେ । କଲେଜର ତଦାନୀନ୍ତନ ଅଧକ୍ଷ ମହୋଦୟ ମାଟ୍ରିକୁଲେସନ୍ ପରୀକ୍ଷାରେ ପ୍ରାପ୍ତାଙ୍କ ଭିତ୍ତିରେ ତାଙ୍କୁ ବିଜ୍ଞାନ ବିଭାଗରେ ଅଧୟନ କରିବାକୁ ପରାମର୍ଶ ଦେଇଥିଲେ । କିନ୍ତୁ ଓଡ଼ିଆ ଓ ଇଂରାଜୀ ଭାଷା ଶିକ୍ଷା ପ୍ରତି ତାଙ୍କର ସମଧିକ ଆଗ୍ରହ ଥିବା ହେତୁ ସେ କଳା ବିଭାଗରେ ପ୍ରବେଶ କରିଥିଲେ । ମାତୁଳାଳୟରେ ପୋଷ୍ୟପୁତ୍ର ରୂପେ ଅବସ୍ଥାପିତ କାଶୀନାଥ କନିଷ୍ଠ ଭ୍ରାତା ବାସୁଦେବର କଲେଜ ଶିକ୍ଷାର ପ୍ରାଥମିକ ଦାୟିତ୍ୱ ବହନ କରି ତା' ଜୀବନର ଗତିପଥକୁ ସୁଗମ କରିଥିଲେ । ଅଶୀତି ବର୍ଷରେ ପଦାର୍ପଣ

କରିଥିବା ଜ୍ୟେଷ୍ଠଭ୍ରାତା କାଶୀନାଥ ଦାଶଙ୍କ ପ୍ରତି ଏଥିଲାଗି କୃତଜ୍ଞତାପ୍ରଣତ ବାସୁଦେବ ।

ଖଲିକୋଟ କଲେଜରେ ପ୍ରବେଶ କରିବା ପରେ ଅର୍ଦ୍ଧବାର୍ଷିକ ପରୀକ୍ଷାରେ ଓଡ଼ିଆ, ଇଂରାଜୀ ଏବଂ ଇତିହାସରେ କୃତିତ୍ୱ ପ୍ରଦର୍ଶନ କରି ବାସୁଦେବ ତଦୀୟ ଅଧ୍ୟାପକବର୍ଗଙ୍କ ଶ୍ରଦ୍ଧାର ପାତ୍ର ହୋଇଥିଲେ । ସେମାନେ ତାଙ୍କର ସରଳତା, ଧୀମତ୍ତା, ଆଜ୍ଞାନୁବର୍ତ୍ତିତା ଏବଂ ଚରିତ୍ରବତ୍ତାର ଭୁରି ଭୁରି ପ୍ରଶଂସା କରିବା ସହ କଲେଜର ଅନ୍ୟାନ୍ୟ ଛାତ୍ରଛାତ୍ରୀମାନଙ୍କ ସମ୍ମୁଖରେ ତାଙ୍କର ଆଦର୍ଶ ଉପସ୍ଥାପନ କରୁଥିଲେ । ଆଇ.ଏ.ର ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ସେ ଓଡ଼ିଆ ସାହିତ୍ୟ ପତ୍ରରେ ସର୍ବୋଚ୍ଚାଙ୍କ ପ୍ରାପ୍ତ ହୋଇ କଲେଜର ସୁନାମ ଆନୟନ କରିବା ସମେତ ଏଥିଲାଗି ଏକ ଏକକାଳୀନ ଛାତ୍ରବୃତ୍ତି ଲାଭ କରିଥିଲେ । ସେହି ପରୀକ୍ଷାରେ ଇଂରାଜୀ ସାହିତ୍ୟ ପତ୍ରରେ ବି ସେ କୃତିତ୍ୱ ପ୍ରଦର୍ଶନ କରିଥିଲେ । ତାଙ୍କର ଆଇ.ଏ. ଓ ବି.ଏ.ର ଅର୍ଦ୍ଧବାର୍ଷିକ ଓ ଟେଷ୍ଟ ପରୀକ୍ଷାର ଇଂରାଜୀ, ଓଡ଼ିଆ ଏବଂ ଇତିହାସ ଉତ୍ତର ଖାତାମାନ ଆଦର୍ଶ ଉତ୍ତର ରୂପେ କଲେଜରେ ସଂରକ୍ଷିତ ହୋଇଥିଲା ଏବଂ ସମ୍ପୃକ୍ତ ଅଧ୍ୟାପକମାନେ ବର୍ଷ ବର୍ଷ ଧରି ଶ୍ରେଣୀରେ ସେଗୁଡ଼ିକୁ ପଢ଼ି ଶୁଣାଉଥିଲେ ।

କଲେଜ ଛାତ୍ରାବସ୍ଥାରେ ଶ୍ରୀଯୁକ୍ତ ମହାପାତ୍ର ଓଡ଼ିଆ କବିତା ଓ କ୍ଷୁଦ୍ରଗଳ୍ପ ରଚନାରେ ମନୋନିବେଶ କରିଥିଲେ । ଏହି ସମୟରେ ତାଙ୍କର ଏକ କବିତା ସମାହାର 'କଲ୍ଲୋଳିନୀ' ରୂପରେ ଆତ୍ମପ୍ରକାଶ କରିବା ପୂର୍ବରୁ ସେ ତାଙ୍କର ପୂଜ୍ୟ ଅଧ୍ୟାପକ ତଥା ସତ୍ୟବାଦୀ ବନ ବିଦ୍ୟାଳୟର ପ୍ରାକ୍ତନ ଛାତ୍ର ସ୍ୱର୍ଗତ ଚିନ୍ତାମଣି ଦାଶଙ୍କ ସଦୁପଦେଶକ୍ରମେ ପରବର୍ତ୍ତୀ ସମୟରେ କବିତା ରଚନା ନ କରି କ୍ଷୁଦ୍ରଗଳ୍ପ ରଚନା ପ୍ରତି ଆକୃଷ୍ଟ ହେଲେ । ସମାଜ ସଂସ୍କାରଭିତ୍ତିକ 'ଆମ ସମାଜ କଥା' ନାମକ କ୍ଷୁଦ୍ରଗଳ୍ପ ସମାବେଶ ଛାତ୍ର ଜୀବନରେ ରଚିତ ତାଙ୍କର ଆଦ୍ୟ କ୍ଷୁଦ୍ରଗଳ୍ପ ରଚନାର ସ୍ୱାକ୍ଷର ବହନ କରେ । ତାଙ୍କର ସମସ୍ତ ଉତ୍ସାହ ଓ ଉଦ୍ୟମ ସତ୍ତ୍ୱେ ଉଭୟ 'କଲ୍ଲୋଳିନୀ' ଏବଂ 'ଆମ ସମାଜ କଥା' ଅପ୍ରକାଶିତ ରହିବା ଫଳରେ ସେ କିଛିକାଳ ସାହିତ୍ୟ ସାଧନାରୁ ନିବୃତ୍ତ ରହିଥିଲେ ।

ବି.ଏ. ପରୀକ୍ଷାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହେବା ପରେ ୧୯୫୧ରେ ଶ୍ରୀଯୁକ୍ତ ମହାପାତ୍ର କଟକସ୍ଥ ରେଭେନ୍ସା କଲେଜ ଏମ୍.ଏ. (ଇଂରାଜୀ) ଶ୍ରେଣୀରେ ପ୍ରବେଶ କରିଥିଲେ । ଏତିକିବେଳେ ତାଙ୍କ ଜ୍ୟେଷ୍ଠଭ୍ରାତା ଉଦୟନାଥ ପିତାମାତାଙ୍କଠାରୁ ବିଚ୍ଛିନ୍ନ ହୋଇ ଚାଲିଯିବା କାରଣରୁ ତାଙ୍କୁ ଅଗତ୍ୟା ଅଧ୍ୟୟନ ପରିତ୍ୟାଗ ପୂର୍ବକ ପରିବାରର ଭରଣପୋଷଣ ଦାୟିତ୍ୱ ବହନ କରିବାକୁ ପଡ଼ିଥିଲା । ଅତଏବ ସେ ତାଙ୍କ ଗ୍ରାମରେ ସ୍ଥାପିତ ଶ୍ରୀ ମର୍ଦ୍ଦରାଜ ହାଇସ୍କୁଲରେ ସହକାରୀ

ଶିକ୍ଷକ ରୂପେ ଯୋଗଦେଲେ । କୌତୁକର ବିଷୟ ଯେ; ସେ ଅଳ୍ପ ବୟସରେ ଶିକ୍ଷକତା କରିଥିବା ଯୋଗୁଁ ତାଙ୍କର କେତେଜଣ ଅଗ୍ରଧୀ ସହାଧ୍ୟାୟୀ ବନ୍ଧୁ ଏବଂ କେତେକ ସମବୟସ୍କ କିଶୋର ତାଙ୍କର ଛାତ୍ର ହୋଇଥିଲେ । ତଥାପି ସ୍ୱୀୟ ବିଷୟକୁଶଳତା, ବିଦ୍‌ବତ୍ତା, ମଧୁର ବ୍ୟବହାର ଏବଂ ସହୃଦୟତା ବଳରେ ସେ ଶ୍ରେଣୀଶୃଙ୍ଖଳା ରକ୍ଷା କରିବା ସହ ସେମାନଙ୍କ ପ୍ରିୟ ହୋଇପାରିଥିଲେ । ସେହି ବିଦ୍ୟାଳୟରେ ତାଙ୍କର କେତେଜଣ ଶିକ୍ଷକଙ୍କୁ ସେ ନିଜର ସହକର୍ମୀ ରୂପେ ଦେଖିବାକୁ ପାଇଥିଲେ । ସେଠାରେ ସେ ତାଙ୍କର ସ୍ୱଭାବସୁଲଭ ନମ୍ରତା, ଶିଷ୍ଟାଚାର ଓ ଭକ୍ତି ପ୍ରଦର୍ଶନପୂର୍ବକ ତଦୀୟ ଗୁରୁବର୍ଗଙ୍କ ପ୍ରତ୍ୟକ୍ଷ ସ୍ନେହାଶିଷ ଲାଭ କରିଥିଲେ ।

ତତ୍‌ପରବର୍ଷ ସେ କଟକସ୍ଥ ରାଧାନାଥ ଟ୍ରେନିଂ କଲେଜରେ ଶିକ୍ଷାର୍ଥୀ ରୂପେ ଯୋଗ ଦେଇଥିଲେ । ସେତେବେଳେ ତାହା ଓଡ଼ିଶାର ଏକମାତ୍ର ପ୍ରଶିକ୍ଷଣ ମହାବିଦ୍ୟାଳୟ ଥିଲା । ତା'ର ଅଧ୍ୟକ୍ଷ ଥିଲେ ଓଡ଼ିଶାର ସ୍ୱନାମଧନ୍ୟ ଶିକ୍ଷାବିତ୍‌, ପରମ ସମ୍ମାନାସ୍ପଦ ତଥା ସ୍ନେହାବତାର ଗୁରୁ ସ୍ୱର୍ଗତ ବୈଦ୍ୟନାଥ ରଥ । ଏହି ସମୟର ଦୁଇଟି ଘଟଣା ଶ୍ରୀଯୁକ୍ତ ମହାପାତ୍ରଙ୍କୁ ଅଧ୍ୟକ୍ଷ ମହାଶୟଙ୍କ ଆତ୍ମିକ ସାନ୍ନିଧ୍ୟ ଲାଭ କରିବାରେ ସହାୟକ ହୋଇଥିଲା । ପ୍ରଥମତଃ ପ୍ରଶିକ୍ଷଣ ମହାବିଦ୍ୟାଳୟ ପକ୍ଷରୁ ଅଭିନୀତ ହେବାକୁ ଥିବା ଏକ ଏକାଙ୍କୀ ନାଟକରେ ନାୟିକା ଭୂମିକା ଗ୍ରହଣ କରିଥିବା ଜନୈକ ଗୁରୁଛାତ୍ର ଆକସ୍ମିକ ଭାବେ ଅସୁସ୍ଥ ହେବା ହେତୁ ଅଧ୍ୟକ୍ଷ ମହୋଦୟ ସେହି ଭୂମିକାରେ ଅଭିନୟ କରିବାକୁ ବାସୁଦେବଙ୍କୁ ସ୍ନେହସିକ୍ତ ପ୍ରୋତ୍ସାହନ ଦେଇଥିଲେ । କେବେ ନାଟକରେ ଅଭିନୟ କରି ନ ଥିବା ବାସୁଦେବ ମାତ୍ର ପାଞ୍ଚ ଦିନ ମଧ୍ୟରେ ସେହି ଭୂମିକାର ସଂଳାପ ଶୈଳୀ ଶିକ୍ଷା କରି ନାରୀସେବା ସଂଘଠାରେ ଶତ ଶତ ଉଚ୍ଚଶିକ୍ଷିତ ଓ ଉଚ୍ଚ ପଦବୀଧାରୀଙ୍କ ସମ୍ମୁଖରେ ସକୁଶଳ ଅଭିନୟପୂର୍ବକ ଦର୍ଶକମାନଙ୍କୁ ମୁଗ୍ଧ କରିଥିଲେ ଏବଂ ଅଧ୍ୟକ୍ଷ ମହୋଦୟଙ୍କ ବିଶେଷ ପ୍ରିୟ ହୋଇପାରିଥିଲେ ।

ପ୍ରଶିକ୍ଷଣ ଅନୁଷ୍ଠାନରେ ଅଭ୍ୟାସ ଶିକ୍ଷାଦାନ (Practice Teaching) ଏକ ବାଧ୍ୟତାମୂଳକ ବିଷୟ । ଏଥିପାଇଁ ପ୍ରତ୍ୟେକ ଗୁରୁଛାତ୍ରଛାତ୍ରୀଙ୍କୁ ଏକ ନିର୍ଦ୍ଦିଷ୍ଟ ହାଇସ୍କୁଲକୁ ଯାଇ ତିନୋଟି ବିଷୟରେ ପ୍ରତ୍ୟେକରେ ୧୫ ସଂଖ୍ୟକ ଶିକ୍ଷାଦାନ କରିବାକୁ ପଡ଼େ । ସେତେବେଳେ ପ୍ୟାରୀମୋହନ ଏକାଡ଼େମୀର ଦଶମ ଶ୍ରେଣୀ (କ)ର ଛାତ୍ରମାନେ ଗୁରୁଛାତ୍ରଛାତ୍ରୀଙ୍କ ଇତିହାସ ବିଷୟରେ ଅଭ୍ୟାସ ଶିକ୍ଷାଦାନ ସମୟରେ ଏପରି ପ୍ରଶ୍ନ ପଚାରୁଥା'ନ୍ତି ଯେ, ଗୁରୁଛାତ୍ର ସେଗୁଡ଼ିକର ଉତ୍ତର ଦେଇ ନପାରି ଲଜ୍ଜିତ ହେଉଥିଲେ । ଏହାଦ୍ୱାରା ଗୁରୁଛାତ୍ରଛାତ୍ରୀ ତଥା ପ୍ରଶିକ୍ଷଣ, ମହାବିଦ୍ୟାଳୟର ଅସମ୍ମାନ ହେବା ଦୃଷ୍ଟିରୁ ଟ୍ରେନିଂ କଲେଜ ଅଧ୍ୟକ୍ଷ ମହୋଦୟ ସେହି ଶ୍ରେଣୀରେ ଗୁରୁଛାତ୍ରଛାତ୍ରୀଙ୍କ ଶିକ୍ଷାଦାନକୁ ବାରଣ କରିଥିଲେ ।

ଏଣେ ନିରୂପିତ ସମୟସୀମା ମଧ୍ୟରେ ଇତିହାସରେ ଅଭ୍ୟାସ ଶିକ୍ଷାଦାନ ଶେଷ ହେଉ ନଥିବା ଲକ୍ଷ୍ୟ କରି ଶ୍ରୀଯୁକ୍ତ ମହାପାତ୍ର ଏଥିପାଇଁ ତଦୀୟ ଅଧ୍ୟକ୍ଷଙ୍କ ଅନୁମତି ଭିକ୍ଷା କଲେ । ଅଧ୍ୟକ୍ଷ ମହୋଦୟ ଅତୀତର ତିକ୍ତ ଅନୁଭୂତିର ସୂଚନା ଦେଇ ଅସମ୍ମାନର ପୁନରାବିର୍ଭାବର ପରିଣାମ ତାଙ୍କୁ ଭୋଗିବାକୁ ପଡ଼ିବ ବୋଲି କହିଥିଲେ ।

ସେଦିନ ସମ୍ପୃକ୍ତ ଶ୍ରେଣୀରେ ଇତିହାସ ଶିକ୍ଷାଦାନ ସମୟରେ ଅଧ୍ୟକ୍ଷ ମହାଶୟ ନିଜେ ଉପସ୍ଥିତ ଥିଲେ । ଛାତ୍ରମାନେ ଶ୍ରୀଯୁକ୍ତ ମହାପାତ୍ରଙ୍କୁ ପ୍ରସଙ୍ଗ ଉପସ୍ଥାପନ ସ୍ତରରେ ଉପନୀତ ହେବାକୁ ନଦେଇ ମୋଟରେ ସତର ଗୋଟି ପ୍ରଶ୍ନ ପଚାରିଥିଲେ । ପ୍ରଶ୍ନଗୁଡ଼ିକ ଏପରି ବୁଦ୍ଧି ନିର୍ଣ୍ଣାୟକ, ପ୍ରସଙ୍ଗକୈନ୍ଦ୍ରିକ ଅଥଚ ଗଭୀର ଚିନ୍ତା ଉଦ୍ଦୀପକ ଥିଲା ଯେ; ସେସବୁର ଉତ୍ତର ଦେବା ଜଣେ ସାଧାରଣ ଶିକ୍ଷକ ପକ୍ଷରେ ଅସମ୍ଭବ ଥିଲା । ଶ୍ରୀଯୁକ୍ତ ମହାପାତ୍ର ସେଗୁଡ଼ିକର ଯଥାର୍ଥ ଓ ଯୁକ୍ତିସମ୍ମତ ଉତ୍ତର ଦେଇ ଛାତ୍ରମାନଙ୍କୁ ଚମତ୍କୃତ କରାଇଦେଇଥିଲେ । ସେ ଶ୍ରେଣୀଗୃହ ବାହାରକୁ ଯିବାମାତ୍ରେ ସମସ୍ତ ଛାତ୍ର ବାହାରକୁ ଆସି ତାଙ୍କୁ ସଭକ୍ତି ପ୍ରଣାମ ଜଣାଇ କହିଥିଲେ- ''ସାର୍, ଆପଣ ଆମ ସ୍କୁଲରେ ରହନ୍ତୁ ।'' ଶ୍ରୀଯୁକ୍ତ ମହାପାତ୍ର ସ୍ମିତହାସ୍ୟ ମୁଖରେ ସେମାନଙ୍କୁ ଉତ୍ତର ଦେଇଥିଲେ- ''ତା'ହେଲେ ଏଠି ଛାତ୍ରମାନେ କ'ଣ ସ୍କୁଲ ପରିଚାଳନା କରୁଛନ୍ତି ?''

କହିବା ବାହୁଲ୍ୟ ଯେ; ସେହି ବିଦ୍ୟାଳୟର ଜଣେ ଇତିହାସ ଶିକ୍ଷକ ଜଟିଳ ପ୍ରଶ୍ନ ପ୍ରସ୍ତୁତ କରି ଛାତ୍ରମାନଙ୍କ ମାଧ୍ୟମରେ ଗୁରୁଛାତ୍ରମାନଙ୍କୁ ବିଭ୍ରାନ୍ତ ଏବଂ ଲଜ୍ଜିତ କରାଇ ନିଜର ଆତ୍ମବଡ଼ିମା ପ୍ରଦର୍ଶନ କରୁଥିଲେ । ସେଦିନ ଶ୍ରୀଯୁକ୍ତ ମହାପାତ୍ରଙ୍କ ଇତିହାସ ଶିକ୍ଷାଦାନ ସମ୍ପର୍କରେ ଅଧ୍ୟକ୍ଷ ମହାଶୟଙ୍କ ମନ୍ତବ୍ୟ ଥିଲା- ''ଛାତ୍ରମାନଙ୍କ ତାତ୍ପର୍ଯ୍ୟପୂର୍ଣ୍ଣ ପ୍ରଶ୍ନଗୁଡ଼ିକର ଉତ୍ତର ଦେବାରେ ଶିକ୍ଷାଦାନ ସମୟ ପୂର୍ଣ୍ଣତଃ ଅତିବାହିତ ହୋଇଥିଲା । ଶିକ୍ଷକ ପ୍ରସଙ୍ଗ ଉପସ୍ଥାପନ କରିପାରି ନଥିଲେ ବି ତାଙ୍କ ଜ୍ଞାନ ଏବଂ ଉପସ୍ଥିତ ବୁଦ୍ଧି ଛାତ୍ରମାନଙ୍କୁ ସନ୍ତୁଷ୍ଟ ଏବଂ ଶୃଙ୍ଖଳିତ କରିଥିଲା ।''

ପ୍ରଶିକ୍ଷଣ ପାଠ୍ୟକ୍ରମର ନିର୍ଦ୍ଧାରିତ ସମୟ ଅତିବାହିତ ହେବା ପରେ ଶ୍ରୀଯୁକ୍ତ ମହାପାତ୍ର ଅଳ୍ପ କିଛି ମାସ ତାଙ୍କ ଗ୍ରାମର ଶ୍ରୀ ମର୍ଦ୍ଦରାଜ ହାଇସ୍କୁଲରେ ଶିକ୍ଷକତା କରିବା ପରେ ପ୍ରାୟ ଏକ ବର୍ଷ ବ୍ରହ୍ମପୁରସ୍ଥ ମିସନ ହାଇସ୍କୁଲରେ ଶିକ୍ଷକତା କରିଥିଲେ । ଏଠାରେ ଟ୍ରେନିଂ କଲେଜରେ ସମ୍ମୁଖୀନ ହୋଇଥିବା ସମସ୍ୟା ଅନୁରୂପ ଅନ୍ୟ ଏକ ସମସ୍ୟା ଉଦ୍‌ଭବ ହୋଇଥିଲା । ଶ୍ରୀଯୁକ୍ତ ମହାପାତ୍ରଙ୍କ ଓଡ଼ିଆ ଶିକ୍ଷାଦାନ ସମୟରେ ଦଶମ (କ) ଶ୍ରେଣୀର ଛାତ୍ରମାନେ ମାତୃଭାଷାରେ ନିଜ ନିଜର ବିଚକ୍ଷଣତା ଦେଖାଇବାକୁ ଯାଇ ଶ୍ରେଣୀଶୃଙ୍ଖଳା ରକ୍ଷା କରୁ ନଥିଲେ । ଏହା ଥିଲା

ସେହି ସ୍କୁଲର ନିକଟ ଅତୀତରେ ବିଦାୟ ନେଇଥିବା ଜଣେ ଶିକ୍ଷକଙ୍କ ଦୁରଭିସନ୍ଧିମୂଳକ ପ୍ରରୋଚନା । ଶ୍ରୀଯୁକ୍ତ ମହାପାତ୍ର ଏହାର ସମାଧାନ କରିବାକୁ ଯାଇ ପରବର୍ତ୍ତୀ ଅର୍ଦ୍ଧବାର୍ଷିକ ପରୀକ୍ଷା ପ୍ରଶ୍ନପତ୍ରକୁ ଏପରି ଭାବେ ପ୍ରସ୍ତୁତ କରିଥିଲେ ଯେ; ଶ୍ରେଣୀର ମେଧାବୀ ଛାତ୍ରମାନେ ବି ସେଗୁଡ଼ିକର ଯଥାର୍ଥ ଉତ୍ତର ଦେଇପାରି ନଥିଲେ । ଫଳତଃ ପରୀକ୍ଷା ପରେ ସେମାନେ ଓଡ଼ିଆ ଶିକ୍ଷାଦାନ ବେଳେ ଶୃଙ୍ଖଳିତ ଏବଂ ମନୋଯୋଗୀ ହେବା ସହ ତାଙ୍କ ପ୍ରତି ଶ୍ରଦ୍ଧାଭକ୍ତି ପ୍ରଦର୍ଶନ କରିଥିଲେ ।

ଏହି ସମୟରେ କବିସୂର୍ଯ୍ୟନଗର ନିକଟବର୍ତ୍ତୀ ଏକ ଗ୍ରାମର ଜଣେ ପ୍ରାକ୍ତନ ଛାତ୍ର ଦାରିଦ୍ର୍ୟବଶତଃ ସାହାଯ୍ୟ ପ୍ରାର୍ଥନା କରି ତାଙ୍କ ନିକଟରେ ପହଞ୍ଚିଥିଲା । ଶ୍ରୀଯୁକ୍ତ ମହାପାତ୍ର ନିଜର ଆର୍ଥିକ ଅସ୍ୱଚ୍ଛଳତା ସତ୍ତ୍ୱେ ବ୍ରହ୍ମପୁରରେ ତାଙ୍କ ବସାରେ ତାକୁ ସ୍ଥାନ ଦେଇ ସେ ମାଟ୍ରିକୁଲେସନ୍ ପରୀକ୍ଷା ଦେବା ଯାଏଁ ପ୍ରାୟ ଆଠ ମାସର ତା'ର ସମସ୍ତ ବ୍ୟୟ ନିର୍ବାହ କରିଥିଲେ ।

୧୯୫୪ ସାଲରେ ଶ୍ରୀଯୁକ୍ତ ମହାପାତ୍ର ଓ.ଟି.ଏମ୍. ହାଇସ୍କୁଲ, ଚୌଦ୍ୱାରରେ ପ୍ରଥମେ ସହକାରୀ ଶିକ୍ଷକ ରୂପେ ଯୋଗ ଦେଇଥିଲେ । ତିନି ବର୍ଷ ପରେ ସେ ସହକାରୀ ପ୍ରଧାନଶିକ୍ଷକ ପଦକୁ ଉନ୍ନୀତ ହୋଇଥିଲେ । ଚୌଦ୍ୱାର କର୍ମକ୍ଷେତ୍ର ହିଁ ଶ୍ରୀଯୁକ୍ତ ମହାପାତ୍ରଙ୍କ ଲେଖକ ଜୀବନର ପ୍ରାରମ୍ଭିକ ପ୍ରକାଶଗତ ସ୍ୱାକ୍ଷର ବହନ କରିବା ସହ ତାଙ୍କୁ ଜଣେ ମେଧାବୀ, ସୁଦକ୍ଷ, ସଦାଚାରୀ, ସ୍ନେହଶୀଳ, ମିଷ୍ଟଭାଷୀ ଏବଂ ନୀତିନିଷ୍ଠ ଶିକ୍ଷକ ରୂପେ ପରିଚିତ କରାଇଥିଲା । ଏଠାରେ ଓଡ଼ିଶାର ଅନ୍ୟତମ ଶିକ୍ଷାବିତ୍ ତଥା ଗ୍ରନ୍ଥକାର ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ବାବା ବୈଦ୍ୟନାଥ ପାଢ଼ୀଙ୍କ ପ୍ରତ୍ୟକ୍ଷ ପ୍ରେରଣା ତଥା ପ୍ରୋତ୍ସାହନରେ ତାଙ୍କର ସୃଜନୀ ଶକ୍ତି ରୂପାନ୍ୱିତ ହୋଇଥିଲା । ଉଭୟଙ୍କ ମଧ୍ୟରେ ଆତ୍ମୀୟତା ବୃଦ୍ଧି ସଙ୍ଗେ ସଙ୍ଗେ ଯୁଗ୍ମ ପ୍ରଣୟନରେ ପ୍ରକାଶିତ ହୋଇଥିଲା ବହୁ ଶିକ୍ଷକ ସହାୟକ ତଥା ଛାତ୍ରୋପଯୋଗୀ ଇଂରାଜୀ ବ୍ୟାକରଣ ପୁସ୍ତିକା । ଇତିମଧ୍ୟରେ ଶ୍ରୀଯୁକ୍ତ ମହାପାତ୍ରଙ୍କ ପ୍ରେରଣାପ୍ରଦ ଉଦ୍ୟମରେ ସମ୍ପୃକ୍ତ ଗ୍ରାମପଞ୍ଚାୟତ ନିର୍ଦ୍ଧାରଣ ମାଧ୍ୟମରେ 'ବୋଇଖଣ୍ଡୀ'ର ନାମ ପରିବର୍ତ୍ତନ କରାଯାଇ 'କବିସୂର୍ଯ୍ୟନଗର' ରଖାଯାଇଥିଲା ଏବଂ ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବଙ୍କ ସହମତିକ୍ରମେ ସରକାରୀ ସ୍ୱୀକୃତି ଲାଭ କରିଥିଲା ।

ଚୌଦ୍ୱାରରେ ଥିବାବେଳେ ଶ୍ରୀଯୁକ୍ତ ମହାପାତ୍ର ପ୍ରତି ସପ୍ତାହରେ ଶନିବାର ଉପରବେଳା ଓ ରବିବାର ଦିନ ତାଙ୍କର ପ୍ରକାଶକ ବନ୍ଧୁ ନିଉ ଷ୍ଟୁଡେଣ୍ଟ୍ସ ଷ୍ଟୋର୍' କଟକର ସ୍ୱତ୍ୱାଧିକାରୀ ସ୍ୱର୍ଗତ ଭିକାରୀଚରଣ ଦାଶଙ୍କ କାଜିବଜାର ବାସଭବନରେ ରହୁଥିଲେ । ସେ କଟକର ଲବ୍ଧପ୍ରତିଷ୍ଠ ପ୍ରକାଶକ ଦାସ ବ୍ରଦର୍ସ, ଓଡ଼ିଶା ବୁକ୍ ଷ୍ଟୋର୍, ଫ୍ରେଣ୍ଡ୍ସ ପବ୍ଲିସର୍ସ, ଜେ. ମହାପାତ୍ର ଆଣ୍ଡ୍ କୋ., ବାଣୀଶ୍ରୀ ଆଦି ପ୍ରକାଶନ ସଂସ୍ଥାର

ସ୍ୱତ୍ୱାଧିକାରୀଗଣ ଏବଂ ସର୍ବସ୍ୱର୍ଗତ ସାହିତ୍ୟିକ ଗୋଦାବରୀଶ ମହାପାତ୍ର, କବି ରାଧାମୋହନ ଗଡ଼ନାୟକ, ନାଟ୍ୟକାର ତଥା କଥାକାର କମଳଲୋଚନ ମହାନ୍ତି, ବରିଷ୍ଠ ଶିଶୁ ସାହିତ୍ୟିକ ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ ଆଦି ସାରସ୍ୱତ ପ୍ରତିଭାଙ୍କ ସଂସ୍ପର୍ଶରେ ଆସିଥିଲେ ।

ଏଠାରେ ପ୍ରକାଶକମାନଙ୍କ ସହୃଦୟତାରେ ସେ ପ୍ରଣୟନ କରିଥିଲେ ପ୍ରାଥମିକ ସ୍ତରରୁ ମାଧ୍ୟମିକ ଶିକ୍ଷା ସ୍ତରୀୟ ଅନେକ ବିଭାଗୀୟ ମଞ୍ଜୁରିପ୍ରାପ୍ତ ପାଠ୍ୟପୁସ୍ତକ । ଏତଦ୍‌ବ୍ୟତୀତ 'ନିଆଁଖୁଣ୍ଟା'ର ସ୍ୱନାମଧନ୍ୟ ସମ୍ପାଦକ ତଥା ଉତ୍କଳଭାରତୀଙ୍କ ବରପୁତ୍ର ଦିବଂଗତ ଗୋଦାବରୀଶ ମହାପାତ୍ର ବ୍ୟକ୍ତିଗତ ପ୍ରେରଣା ଓ ନିର୍ଦ୍ଦେଶନା ଅନୁସାରେ ଶ୍ରୀଯୁକ୍ତ ମହାପାତ୍ର ଶିଶୁ ସାହିତ୍ୟ କ୍ଷେତ୍ରରେ ଲେଖନୀ ଚାଳନା କରିଥିଲେ ଏବଂ ସ୍ୱର୍ଗତ ମହାପାତ୍ରଙ୍କୁ ଏ କ୍ଷେତ୍ରରେ ତାଙ୍କର ଗୁରୁ ଭାବେ ଗ୍ରହଣ କରିଥିଲେ । ତାଙ୍କ ସମ୍ପାଦନାରେ ପ୍ରକାଶିତ 'ଟୁଆଁଟୁଇଁ'ରେ ପ୍ରକାଶିତ ଶ୍ରୀଯୁକ୍ତ ବାସୁଦେବ ମହାପାତ୍ରଙ୍କ ଶିଶୁଗଳ୍ପମାନଙ୍କ ଏକତ୍ର ସମାବେଶ 'ଜୀବଜଗତର ଅଜବ ଗପ' (୧ମ ଭାଗ ଓ ଦ୍ୱିତୀୟ ଭାଗ) ନାମ ବହନ କରି ସର୍ବପ୍ରଥମେ ଓଡ଼ିଶା ବୁକ୍ ଷ୍ଟୋର୍, କଟକଙ୍କ ଦ୍ୱାରା ପ୍ରକାଶିତ ହୋଇ ଶ୍ରେଷ୍ଠ ଶିଶୁସାହିତ୍ୟ ରୂପେ ରାଜ୍ୟ ସରକାରଙ୍କ ଦ୍ୱାରା ପୁରସ୍କୃତ ହୋଇଥିଲା । ତାଙ୍କର ପ୍ରାଥମିକ ଉଦ୍ୟମର ଅନାକାଂକ୍ଷିତ ସଫଳତାରେ ପ୍ରୋତ୍ସାହିତ ଓ ଅନୁପ୍ରେରିତ ହୋଇ ସେ ତାଙ୍କ ଜୀବନର ଅବଶିଷ୍ଟ ସାହିତ୍ୟ ସାଧନାକୁ ମୁଖ୍ୟତଃ ଶିଶୁ ସାହିତ୍ୟ ପ୍ରଣୟନରେ ବିନିଯୋଗ କଲେ ।

୧୯୬୧ ସାଲରେ ଜନୈକ ବୟୋଜ୍ୟେଷ୍ଠ ପ୍ରବୀଣ ଶିକ୍ଷକ ଓ.ଟି.ଏମ୍. ହାଇସ୍କୁଲରେ ସହକାରୀ ଶିକ୍ଷକ ରୂପେ ନିଯୁକ୍ତ ହୋଇଥିଲେ । ଶ୍ରୀଯୁକ୍ତ ମହାପାତ୍ର ବୟୋକନିଷ୍ଠ ହୋଇ ସହକାରୀ ପ୍ରଧାନଶିକ୍ଷକ ପଦରେ ଅଧିଷ୍ଠିତ ହୋଇଥିବା ହେତୁ ସେ ତାଙ୍କ ପ୍ରତି ଈର୍ଷାନ୍ୱିତ ହୋଇ ଛାତ୍ରମାନଙ୍କ ମାଧମରେ ଇଂରାଜୀ ବ୍ୟାକରଣର କେତେକ ଜଟିଳ ପ୍ରଶ୍ନର ସମାଧାନ ନିମିତ୍ତ ଆହ୍ୱାନ ଜଣାଇଥିଲେ । ଶ୍ରୀଯୁକ୍ତ ମହାପାତ୍ର ପ୍ରୋକ୍ତ ଶିକ୍ଷକଙ୍କ ଦୁରଭିପ୍ରାୟ ବୁଝିପାରି ସେହି ପ୍ରଶ୍ନମାନଙ୍କ ଉତ୍ତର ଦେବା ସହ ଆଉ କେତେକ ଅଧିକ ଜଟିଳ ପ୍ରଶ୍ନର ସମାଧାନ କରିବା ନିମିତ୍ତ ସେମାନଙ୍କୁ ଗୃହକର୍ମ ରୂପେ ଦେଇଥିଲେ । ସେଥିରୁ ଅଧିକାଂଶ ପ୍ରଶ୍ନର ଯଥାର୍ଥ ଉତ୍ତର ଦେଇ ନପାରି ଉକ୍ତ ଶିକ୍ଷକ ଲଜ୍ଜିତ ହୋଇ ଏତାଦୃଶ ନୀଚତାରୁ ନିବୃତ୍ତ ହୋଇଥିଲେ ।

୧୯୬୩ ସାଲରେ ଓଡ଼ିଶା ସିମେଣ୍ଟ ଲିମିଟେଡ୍, ରାଜଗାଙ୍ଗପୁରର ପରିଚାଳକ ମହୋଦୟ ଚୌଦ୍ୱାର ଲୁଗାକଳର ମୁଖ୍ୟ ପ୍ରଶାସନିକ ଅଧିକାରୀ ଶ୍ରୀଯୁକ୍ତ

କେ.କେ. ଆୟଙ୍ଗାରଙ୍କୁ ସାକ୍ଷାତ୍ କରି ତାଙ୍କ କାରଖାନା ପକ୍ଷରୁ ପ୍ରତିଷ୍ଠା କରାଯାଉଥିବା ହିନ୍ଦୀ ମାଧମ ହାଇସ୍କୁଲ ନିମିତ୍ତ ଓ.ଟି.ଏମ୍. ହାଇସ୍କୁଲରୁ ଜଣେ ଉପଯୁକ୍ତ ପ୍ରଧାନଶିକ୍ଷକ ଯୋଗାଇଦେବାକୁ ଅନୁରୋଧ କରିଥିଲେ । ଶ୍ରୀଯୁକ୍ତ ଆୟଙ୍ଗାର ପ୍ରବଳ ଅନିଚ୍ଛା ସତ୍ତ୍ୱେ ଶ୍ରୀଯୁକ୍ତ ମହାପାତ୍ରଙ୍କୁ ସେଠାକୁ ଯିବାକୁ ସମ୍ମତି ପ୍ରଦାନ କରିଥିଲେ । ରାଜଗାଙ୍ଗପୁରରେ ପ୍ରଧାନଶିକ୍ଷକ ଥିବା ସମୟରେ ଶ୍ରୀଯୁକ୍ତ ମହାପାତ୍ରଙ୍କ ଅନେକ ଉଚ୍ଚକୋଟୀର ଇଂରାଜୀ କବିତା ଦିଲ୍ଲୀରୁ ପ୍ରକାଶିତ 'ଡାଲମିଆ ଉଦ୍ୟୋଗ ପତ୍ରିକା'ରେ ସ୍ଥାନିତ ହୋଇଥିଲା । ତନ୍ମଧ୍ୟରେ ଆମେରିକାର ରାଷ୍ଟ୍ରପତି କେନେଡ଼ିଙ୍କ ଆକସ୍ମିକ ବିୟୋଗ ଉପରେ ଆଧାରିତ ତାଙ୍କ ଦ୍ୱାରା ରଚିତ କବିତା "Smile not, Smile not, Death" ଆମେରିକା ରାଷ୍ଟ୍ରପତି ଭବନକୁ ପ୍ରେରିତ ହୋଇ ସେଠାରୁ ସମୁଚ୍ଚ ପ୍ରଶଂସା ଲାଭ କରିଥିଲା ।

୧୯୬୪ରେ ଶ୍ରୀଯୁକ୍ତ ମହାପାତ୍ରଙ୍କ ପିତୃବିୟୋଗ ଘଟିବାରୁ ସେ ରାଜଗାଙ୍ଗପୁର ଛାଡ଼ି ସ୍ୱୀୟ ଗ୍ରାମସ୍ଥ ଶ୍ରୀ ମର୍ଦ୍ଦରାଜ ହାଇସ୍କୁଲରେ ସହକାରୀ ଶିକ୍ଷକ ରୂପେ ତୃତୀୟ ଥର ପାଇଁ ଯୋଗଦେଲେ । ଉତ୍କଳର ସାରସ୍ୱତ କ୍ଷେତ୍ର କଟକରୁ ବିଚ୍ଛିନ୍ନ ହୋଇଥିବା କାରଣରୁ ପ୍ରକାଶକ ବନ୍ଧୁମାନେ ଶ୍ରୀଯୁକ୍ତ ମହାପାତ୍ରଙ୍କୁ ଦୁଃଖର ସହିତ ସୂଚାଇଥିଲେ ଯେ; ଗଞ୍ଜାମରେ ଉପଯୁକ୍ତ ପ୍ରୋତ୍ସାହନ ଓ ପୃଷ୍ଠପୋଷକତା ଅଭାବରେ ତାଙ୍କର ସାରସ୍ୱତ ପ୍ରତିଭା ଅବିକଶିତ ରହିଯିବ । ସେ ଏହି ଉକ୍ତିର ସତ୍ୟତା ହୃଦ୍‌ବୋଧ କଲେ ମଧ ଏହାକୁ ଏକ ଆହ୍ୱାନ ମନେକରି ପ୍ରତିବନ୍ଧକର ସମ୍ମୁଖୀନ ହେବା ନିମିତ୍ତ ସଂକଳ୍ପବଦ୍ଧ ହୋଇଥିଲେ । ତଦନୁଯାୟୀ ସେ ଗଞ୍ଜାମରେ ସ୍ୱୀୟ ସାରସ୍ୱତ ସାଧନାକୁ ଏଯାବତ୍ ଉଜ୍ଜୀବିତ ଏବଂ ପ୍ରସାରିତ କରି ଆସିଛନ୍ତି ।

ଶ୍ରୀଯୁକ୍ତ ମହାପାତ୍ରଙ୍କ ଶିକ୍ଷକତା କାଳର ଅନ୍ତିମ ଦଶ ବର୍ଷ ସରକାରୀ ମାଧମିକ ପ୍ରଶିକ୍ଷଣ ବିଦ୍ୟାଳୟ, କବିସୂର୍ଯ୍ୟନଗରରେ ଅତିବାହିତ ହୋଇଥିଲା । ଏଠାରେ ଗୁରୁଛାତ୍ରଛାତ୍ରୀମାନେ ତାଙ୍କର ପ୍ରଶିକ୍ଷଣାତ୍ମକ ଦକ୍ଷତା, ନୀତିନିଷ୍ଠା, ସଦାଚାର, ଆଧ୍ୟାତ୍ମିକତା, ଅନାବିଳ ସ୍ନେହସିକ୍ତ ସଦୁପଦେଶରେ ଆକୃଷ୍ଟ ହୋଇ ତାଙ୍କ ପ୍ରତି ଅନନ୍ୟ ଶ୍ରଦ୍ଧାଭକ୍ତି ପ୍ରଦର୍ଶନ କରୁଥିଲେ ଏବଂ ଅଦ୍ୟାପି ପ୍ରାକ୍ତନ ଛାତ୍ର ରୂପେ ତାଙ୍କ ପ୍ରତି ଅସାମାନ୍ୟ ସମ୍ମାନ ପ୍ରଦର୍ଶନ କରୁଛନ୍ତି । ପ୍ରଶିକ୍ଷଣ ଅନୁଷ୍ଠାନରେ ଥିବାବେଳେ ତାଙ୍କଦ୍ୱାରା ଲିଖିତ ଏକ କ୍ରାନ୍ତିକାରୀ ଶୈକ୍ଷିକ ପ୍ରବନ୍ଧ "Utilitarian Method of Teaching History" NCERT, ନୂଆଦିଲ୍ଲୀଙ୍କ ଦ୍ୱାରା ସମୁଚ୍ଚ ପ୍ରଶଂସା ଲାଭ କରିଥିଲା ।

୧୯୬୪ରୁ ୧୯୯୧ ପର୍ଯ୍ୟନ୍ତ (କେବଳ ୧୯୭୧ରୁ ୧୯୭୩ ଯାଏଁ ସ୍ଥାନାନ୍ତର ହେତୁ ଦିଗପହଣ୍ଡିର ଅବସ୍ଥାନ ବ୍ୟତୀତ) ସେ ସ୍ୱୀୟ ଜନ୍ମସ୍ଥଳୀ

କବିସୂର୍ଯ୍ୟନଗରରେ ଶିକ୍ଷକତା କରୁଥିଲେ । ୧୯୮୯ରେ ସେ ନିୟମାନୁଯାୟୀ ଚାକିରିରୁ ଅବସର ଗ୍ରହଣ କରିଥିଲେ ବି ଜାତୀୟ ପୁରସ୍କାରପ୍ରାପ୍ତ ହୋଇଥିବାରୁ ତାଙ୍କ ଚାକିରି କାଳ ଅଧିକ ଦୁଇ ବର୍ଷ ଅର୍ଥାତ୍ ୧୯୯୧ ପର୍ଯ୍ୟନ୍ତ ବର୍ଦ୍ଧିତ ହୋଇଥିଲା । ସକ୍ରିୟ ଶିକ୍ଷାସେବାରୁ ଅବସର ନେବା ପରଠାରୁ ଏଯାବତ୍ ସେ ତାଙ୍କର କବିସୂର୍ଯ୍ୟନଗରସ୍ଥ ବାସଭବନ 'ଲେଖକ ନିବାସ'ରେ ସପରିବାର ଅବସ୍ଥାନପୂର୍ବକ ସମାଜସେବା ତଥା ସାରସ୍ୱତ ସାଧନାରେ ବ୍ରତୀ ହୋଇଛନ୍ତି ।

ଶ୍ରୀଯୁକ୍ତ ମହାପାତ୍ରଙ୍କ ସାହିତ୍ୟ କୃତି ଓଡ଼ିଆ କ୍ଷୁଦ୍ରଗଳ୍ପ, କବିତା, ପ୍ରବନ୍ଧାଦି ବିଭିନ୍ନ ବିଭାଗକୁ ପ୍ରସାରିତ । ଅନୁବାଦ ସାହିତ୍ୟ କ୍ଷେତ୍ରରେ ମଧ୍ୟ ତାଙ୍କର କୃତିତ୍ୱ ପ୍ରମାଣିତ । ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ ଇଣ୍ଡିଆ, ନୂଆଦିଲ୍ଲୀଙ୍କ ନିମିତ୍ତ ସେ କେତୋଟି ପ୍ରଖ୍ୟାତ ଇଂରାଜୀ ଓ ବଙ୍ଗଳା ପୁସ୍ତକର ଓଡ଼ିଆ ଅନୁବାଦ କରିଛନ୍ତି । ପ୍ରାଚୀନ ଭାରତର ବରିଷ୍ଠ ବିଦ୍ୱାନ୍ କୌଶିକ ଋଷି, ଶଙ୍କରାଚାର୍ଯ୍ୟାଦିଙ୍କ ଦ୍ୱାରା ବିରଚିତ ବହୁ ବିଖ୍ୟାତ ସଂସ୍କୃତ ସ୍ତବସ୍ତୁତିସ୍ତୋତ୍ରାଦି ସେ ଓଡ଼ିଆରେ ଅତି ସାବଲୀଳ ଭାଷାରେ ଗୀତାକାରରେ ଅନୁବାଦ କରିଛନ୍ତି । ଏତଦ୍‌ବ୍ୟତୀତ ସେ ଗୀତା ଓ ଉପନିଷଦ ଅଭିନିହିତ ତାତ୍ତ୍ୱିକ ଭାବରାଜିକୁ ଆଧୁନିକ ଓଡ଼ିଆ କବିତାକାରରେ ରୂପାୟିତ କରିଛନ୍ତି । ତାଙ୍କର ଉପର୍ଯ୍ୟୁକ୍ତ ଦ୍ୱିବିଧ ଆଧ୍ୟାତ୍ମିକ ସାହିତ୍ୟ ପ୍ରକାଶସାପେକ୍ଷ ।

ସାହିତ୍ୟ ପତ୍ରିକା ସମ୍ପାଦନା କ୍ଷେତ୍ରରେ ମଧ୍ୟ ଶ୍ରୀଯୁକ୍ତ ମହାପାତ୍ରଙ୍କ ଅବଦାନ ଉଲ୍ଲେଖଯୋଗ୍ୟ । ବହୁ ଲବ୍ଧପ୍ରତିଷ୍ଠ ଲେଖକଙ୍କ ଅବଦାନରେ ପୁଷ୍ଟ ଏବଂ ତାଙ୍କ ସମ୍ପାଦନାରେ ପ୍ରକାଶିତ ସାହିତ୍ୟ ପତ୍ରିକା 'ଉପାୟନ' ଏବଂ ଶିଶୁ ସାହିତ୍ୟ ପତ୍ରିକା 'ଲୋଟଣି ପାରା' ଉପର୍ଯ୍ୟୁକ୍ତ ଉଲ୍ଲେଖର ପ୍ରାମାଣିକତା ବହନ କରେ ।

ପିଲାମାନଙ୍କ ବୟଃକ୍ରମ, ମାନସିକତା, ଅନୁଭୂତି ଏବଂ ସାମାଜିକ ପ୍ରୟୋଜନୀୟତାର ପୃଷ୍ଠଭୂମି ଉପରେ ଅତି ସରଳ, ସୁବୋଧ ଏବଂ ହୃଦୟସ୍ପର୍ଶୀ ଭାଷାରେ ଶିଶୁ ସାହିତ୍ୟ ରଚନା କରିବା ହେଉଛି ଶ୍ରୀଯୁକ୍ତ ମହାପାତ୍ରଙ୍କ ବିଶେଷତ୍ୱ । ତାଙ୍କଦ୍ୱାରା ରଚିତ ବହୁ ଶିଶୁ ସାହିତ୍ୟ ପୁସ୍ତକ ରାଜ୍ୟ ତଥା ଜାତୀୟ ସ୍ତରରେ ଉତ୍କୃଷ୍ଟ କୃତି ରୂପେ ପୁରସ୍କୃତ ଏବଂ ସ୍ୱୀକୃତ । ୫ରୁ ୮ ବର୍ଷ ବୟସ୍କ ପିଲାଙ୍କ ନିମିତ୍ତ ଉପଯୁକ୍ତ ଶିଶୁ ସାହିତ୍ୟର ବିରଳତା ଦୃଷ୍ଟିରୁ ସେ ଏ ଦିଗରେ ଗଭୀର ମନୋନିବେଶପୂର୍ବକ ସୃଷ୍ଟି କରିଛନ୍ତି ବହୁ ଶିଶୁଗଳ୍ପ ଓ ଉପନ୍ୟାସ । ଓଡ଼ିଆ ବାଳ ସାହିତ୍ୟର ଏବଂବିଧ ଆବଶ୍ୟକତା ପୂରଣ ଦିଗରେ ତାଙ୍କର ନିରବଚ୍ଛିନ୍ନ ସାଧନା ଏକ ବଳିଷ୍ଠ, କାଳୋପଯୋଗୀ, ସୁଚିନ୍ତିତ ପଦକ୍ଷେପ ବୋଲି ସ୍ପଷ୍ଟ ପ୍ରତୀତି ଜାତ ହୁଏ । ତାଙ୍କର ଏ ପ୍ରକାର ଅନେକ ପାଣ୍ଡୁଲିପି ପ୍ରକାଶପ୍ରତୀକ୍ଷିତ ।

ଶ୍ରୀଯୁକ୍ତ ମହାପାତ୍ରଙ୍କ ସ୍ୱାର୍ଥବର୍ଜିତ ଜୀବନଧାରା, ସମାଜସେବା ଏବଂ ସଂସ୍କୃତି ସଂରକ୍ଷଣ କ୍ଷେତ୍ରକୁ ମଧ ପ୍ରବାହିତ । ଗଞ୍ଜାମ ଜିଲ୍ଲାର ସ୍ୱନାମଧନ୍ୟ ଅନ୍ତଃଶକ୍ତିସମ୍ପନ୍ନ ସ୍ୱେଚ୍ଛାସେବୀ ସଙ୍ଗଠନ 'ବନଦେବୀ ସେବାସଦନ', କବିସୂର୍ଯ୍ୟନଗରର ପ୍ରତିଷ୍ଠାତା-ସଭାପତି ରୂପେ ସେ ଗତ ପଚିଶ ବର୍ଷ ଧରି ନିଜକୁ ବହୁ ଜନହିତୈଷୀ କାର୍ଯ୍ୟକ୍ରମରେ ପ୍ରତ୍ୟକ୍ଷ ଭାବେ ନିୟୋଜିତ କରିଛନ୍ତି । ତାଙ୍କଦ୍ୱାରା ପ୍ରତିଷ୍ଠିତ ବନଦେବୀ ବାଳାଶ୍ରମର ଅନ୍ତେବାସୀମାନଙ୍କ ଜୀବନଚର୍ଯ୍ୟା ଅନୁଧ୍ୟାନ କଲେ ସେମାନଙ୍କ ଅନାଥତ୍ୱ ଭ୍ରାନ୍ତି ପ୍ରମାଣିତ କରେ । ଏହି ଆଶ୍ରମରୁ ବିଦାୟ ନେଇଥିବା ଅନେକ ଅନ୍ତେବାସୀ ସ୍ୱୀୟ ଯୋଗ୍ୟତା ବଳରେ ନିଯୁକ୍ତି ଲାଭ କରି ସ୍ୱାବଲମ୍ବୀ ହୋଇପାରିଛନ୍ତି । ଶ୍ରୀଯୁକ୍ତ ମହାପାତ୍ରଙ୍କ ଦ୍ୱାରା ସ୍ଥାପିତ 'ବନଦେବୀ ଶିଳ୍ପ ତାଲିମ କେନ୍ଦ୍ର' ଓଡ଼ିଶାର ଏକ ଅଗ୍ରଗାମୀ, ଲବ୍ଧପ୍ରତିଷ୍ଠ ଆଇ.ଟି.ଆଇ. ରୂପେ ସମଗ୍ର ଓଡ଼ିଶାରେ ସୁନାମ ରକ୍ଷା କରିବା ସମେତ ନିଯୁକ୍ତି ଏବଂ ଆତ୍ମନିଯୁକ୍ତି ଆକାରରେ ଶତ ଶତ ଉତ୍ସାହୀ, ଉଦ୍ୟମଶୀଳ ଯୁବକ-ଯୁବତୀଙ୍କ ଜୀବିକାର୍ଜନରେ ସହାୟକ ହୋଇପାରିଛି । ଅଧିକନ୍ତୁ ଦୀର୍ଘ ତେଇଶି ବର୍ଷ ଧରି ନିରବଚ୍ଛିନ୍ନ ଭାବେ ଦାତବ୍ୟ ଚକ୍ଷୁ ଶିବିର ଆୟୋଜନ କରି ସେ ପ୍ରାୟ ୨୪୦୦ ଚକ୍ଷୁରୋଗୀଙ୍କ ଦୃଷ୍ଟିଶକ୍ତି ଫେରିପାଇବାରେ ସହାୟକ ହୋଇଛନ୍ତି । ତାଙ୍କ ଉଦ୍ୟମରେ ସେବାସଦନ ପକ୍ଷରୁ ବର୍ତ୍ତମାନ ଏକ 'ଜରା ନିବାସ' ଏବଂ ଏକ 'ଜୁଭେନାଇଲ୍ ହୋମ୍' ପ୍ରକଳ୍ପ ଅନ୍ତିମ ସୋପାନରେ ଅବତୀର୍ଣ୍ଣ ହୋଇଅଛି ।

ଅଧିକନ୍ତୁ 'କବିସୂର୍ଯ୍ୟ ପ୍ରତିଭା ପରିଷଦ' (କବିସୂର୍ଯ୍ୟନଗର) ନାମକ ଏକ ସାହିତ୍ୟ ସଂସ୍କୃତି ଭିତ୍ତିକ ସଙ୍ଗଠନର ପ୍ରତିଷ୍ଠାତା-ସଭାପତି ରୂପେ ସେ କେତେକ ସାଂସ୍କୃତିକ କାର୍ଯ୍ୟକ୍ରମର ସଂଯୋଜନା କରିଛନ୍ତି । ତନ୍ମଧ୍ୟରେ 'ବାଳ ବିଦ୍ୟା ବିକାଶ' ପ୍ରକଳ୍ପ ଆନୁକୂଲ୍ୟରେ ଉପାଦେୟ ଶିଶୁ ସାହିତ୍ୟ ଏବଂ ଆଧ୍ୟାତ୍ମିକ ସାହିତ୍ୟ ପ୍ରକାଶନର ପ୍ରାରମ୍ଭିକ ସଫଳତା ବାସ୍ତବରେ ଅଭିନନ୍ଦନୀୟ ।

ଜଣେ ଅଧ୍ୟାତ୍ମ୍ୟବାଦୀ ବ୍ୟକ୍ତି ରୂପେ ସେ ତାଙ୍କ ଅଞ୍ଚଳରେ ସମ୍ମାନିତ । ସେ ବହୁବାର ବିଭିନ୍ନ କଲେଜ, ଟ୍ରେନିଂ ସ୍କୁଲ, ହାଇସ୍କୁଲ ଆଦି ଶିକ୍ଷାନୁଷ୍ଠାନ ଏବଂ ସାଂସ୍କୃତିକ ଅନୁଷ୍ଠାନମାନଙ୍କ ବାର୍ଷିକ ଉତ୍ସବରେ ମୁଖ୍ୟବକ୍ତା କିମ୍ବା ମୁଖ୍ୟଅତିଥି ଭାବେ ନିମନ୍ତ୍ରିତ ହୋଇ ସ୍ୱୀୟ ପ୍ରଭାବାତ୍ମକ ଉଦ୍‌ବୋଧନ ଦ୍ୱାରା ଶ୍ରୋତାମାନଙ୍କୁ ପ୍ରୀତ କରନ୍ତି । ସେ ଆକାଶବାଣୀ ବ୍ରହ୍ମପୁର ଏବଂ ଆକାଶବାଣୀ କଟକ କେନ୍ଦ୍ର ପକ୍ଷରୁ ମଧ୍ୟେ ମଧ୍ୟେ ଶିଶୁ ଗଳ୍ପ, କବିତା, ବ୍ୟକ୍ତିତ୍ୱ ସମୀକ୍ଷା ଏବଂ ଆଞ୍ଚଳିକ ଐତିହ୍ୟ କଥା ତାଙ୍କ ସ୍ୱଭାବସୁଲଭ ଆକର୍ଷଣୀୟ ଶୈଳୀରେ ପରିବେଷଣ କରନ୍ତି ।

ତାଙ୍କ ପ୍ରତିଭାଦୀପ୍ତ ବ୍ୟକ୍ତିତ୍ୱର ସମ୍ୟକ୍ ସ୍ୱୀକୃତି ସ୍ୱରୂପ ଶ୍ରୀଯୁକ୍ତ ମହାପାତ୍ର ବହୁ କ୍ଷେତ୍ରରେ ପୁରସ୍କୃତ ଏବଂ ସମ୍ମାନିତ ହୋଇଛନ୍ତି । ଜଣେ ଆଦର୍ଶ ଶିକ୍ଷକ ରୂପେ ସେ ୧୯୭୯ରେ ରାଜ୍ୟ ପୁରସ୍କାର ଏବଂ ୧୯୮୯ରେ ଜାତୀୟ ପୁରସ୍କାର ଲାଭ କରିବା ସମେତ ଶିଶୁ ସାହିତ୍ୟ ସଂସଦ (ବ୍ରହ୍ମପୁର), କବିସୂର୍ଯ୍ୟ ସାହିତ୍ୟ ସଂସଦ (ଆଠଗଡ଼), ଲାୟନ୍ସ କ୍ଲବ୍ (ଆସିକା), ଲାୟନ୍ସ କ୍ଲବ୍ (କବିସୂର୍ଯ୍ୟନଗର), 'ଝୁମୁକା' ସାରସ୍ୱତ ଉତ୍ସବ (ଭୁବନେଶ୍ୱର) ଏବଂ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

ଶ୍ରୀଯୁକ୍ତ ମହାପାତ୍ରଙ୍କ ଶରୀର ବାର୍ଦ୍ଧକ୍ୟପ୍ରାପ୍ତ ହେଲେ ହେଁ ବାର୍ଦ୍ଧକ୍ୟ-କବଳିତ ହୋଇନାହିଁ । ସେ ଏଯାବତ୍ ସମାଜକଲ୍ୟାଣ କାର୍ଯ୍ୟକ୍ରମରେ ନିତ୍ୟତତ୍ପର ଏବଂ ସାରସ୍ୱତ ସାଧନାରତ ତାଙ୍କ ଲେଖନୀ ସଦାଚଞ୍ଚଳ । ସ୍ୱଭାବତଃ ଆତ୍ମପ୍ରଚାର ପାଇଁ ସେ ଚେଷ୍ଟିତ ନଥିବା ହେତୁ ତାଙ୍କର ବହୁମୁଖୀ ବ୍ୟକ୍ତିତ୍ୱ ସର୍ବତ୍ର ଲୋକଲୋଚନକୁ ଆସିନାହିଁ ।

## ବାସୁଦେବ ମହାପାତ୍ରଙ୍କ ରଚିତ ଶିଶୁ ସାହିତ୍ୟ

ଜୀବଜଗତର ଅଜବ ଗପ (ପ୍ରଥମ ଭାଗ), ଜୀବଜଗତର ଅଜବ ଗପ (ଦ୍ୱିତୀୟ ଭାଗ), ଗ୍ରୀସ୍ ଦେଶର ପୁରାଣ କଥା, ତୁଷାର କୁମାରୀ ଓ ସାତ ବାମନ, କଥା ପରି କଥା, ବୀରବଲଙ୍କ ଅକଲ କଥା, ପଢ଼ ଶିଖ କାହାଣୀମାଳା (୧ମ ଭାଗ), ପଢ଼ ଶିଖ କାହାଣୀମାଳା (୨ୟ ଭାଗ), ପଢ଼ ଶିଖ କାହାଣୀମାଳା (୩ୟ ଭାଗ), ଅଜାଙ୍କ ଅକଲ, ମୋ ଗପ ବହି, ଢଗଢ଼ମାଳି, ଶାଗୁଆ ପରୀ, ତୁମେ ଗୋଟାଏ ଗଧ, ହାତୀ ଲାଗି ହଟହଟା, ମୋ କାହାଣୀ ବହି, ଷଣ୍ଢ ସଭାପତି, ବାର ମାସ କଥା, ବାଟ କନିଆଁ, ରଜା ହେବାର ମଜା, ଯଦୁମଣିଙ୍କ ଯାଦୁମଣି, ବୁଦ୍ଧିର ବାହାଦୂରି, ମୁଁ ମହାଭୂତ କହୁଛି, କାଳିଦାସଙ୍କ ଅକଲ କଥା (୧ମ ଭାଗ), କାଳିଦାସଙ୍କ ଅକଲ କଥା (୨ୟ ଭାଗ), କଥାକୁହା ପାହାଡ଼, ପାହାଡ଼ିଆ ମୂଷା, ବୁଦ୍ଧବାଣୀ, ଚଟକଣାର କରାମତି, ପାଟିର ଗାଳି, ନଳୀର ଗୁଳି; ସବୁ ଦେବତା ଏକାଠି, ବାଟ ଅବାଟ, ଗପ ରୂପରେ ଗୀତା, କିଏ ଏ କବିସୂର୍ଯ୍ୟ ?, ଡାହାଣୀର କାହାଣୀ, ବୋକା କୋଉଠିକାର !, ବିଦୁର ନୀତିକଥା, ବାଳଭାନୁ ।

**ପ୍ରକାଶ ଅପେକ୍ଷାରେ ଥିବା ଶିଶୁ ସାହିତ୍ୟ :**

ଅସରପା ମାଉସୀ, ପେଟୁ ଶାଗୁଣା, ବଗ ବଇଦ, ଟୁଆଁଟୁଇଁ କାହାଣୀ, ମୋ ଗପ ବହି (୨ୟ ଭାଗ), ବିଲେଇ ବାହାଘର, ଜୀବ ରାଇଜ କଥା, କଥାକୁ କଥା, ମଣ୍ଡାପୁରିଆ ଷଣ୍ଢ, ବୁଢ଼ା ହନୁ, ମରଣମୁହାଁ ମଣିଷ, ଯଦୁମଣିଙ୍କ

କାହାଣୀମୁଣି, ଘୋଡ଼ାଗିଳା ମଣିଷ, ଆନନ୍ଦ ମଠ, ରାମାୟଣ କାହାଣୀ, ମିଛିମିଛିକା ମିତ, ବାଘଖିଆ ମଣିଷ, ଭୁଲୁଭୁଲା ଆଲୁଅ, ମନଲାଖି କାହାଣୀ, ମନୋହର କାହାଣୀ, ବଡ଼ଙ୍କ ମଜା କଥା ।

**କ୍ଷୁଦ୍ରଗଳ୍ପ ଓ କବିତା :**

କାଳିଦାସ କଥା କୌତୁକ, କାଳିଦାସଙ୍କ ଅକଲ କଥା, ବନଦେବୀ ଭଜନମାଳା ।

**ଅନୁବାଦ ସାହିତ୍ୟ :**

ଭଗିନୀ ନିବେଦିତା, ଏତୋୟା ଯୁଦ୍ଧରେ ଜିତିଲା ।

**ପତ୍ରିକା ସମ୍ପାଦନା :**

ଉପାୟନ, ଲୋଟଣି ପାରା, କ୍ଷଣପ୍ରଭା, ମିନତି ।

**ବିଭାଗୀୟ ମଞ୍ଜୁରିପ୍ରାପ୍ତ ପାଠ୍ୟ ବହି :**

ମାଧ୍ୟମିକ ଭାରତ ଇତିହାସ, ପ୍ରବେଶିକା ପୌର ଜୀବନ, ନବୀନ ନାଗରିକ ନୀତି (୧ମ ଭାଗ), ନବୀନ ନାଗରିକ ନୀତି (୨ୟ ଭାଗ) ।

**ଛାତ୍ରୋପଯୋଗୀ ଇଂରାଜୀ ଓ ଓଡ଼ିଆ ପୁସ୍ତକ :**

Modern Essays, Jai Jawan, Chhatrasathi Translation, Biswanath High School Translation, Ten Sentence Essays, Chhatrasathi Structural Translation (Part–I), Chhatrasathi Structural Translation (Part–II), Chhatrasathi Structural Translation (Part–III) ପ୍ରବେଶିକା ନଗର ବିଜ୍ଞାନ, ଅଭିନବ ଭୂଗୋଳ, ସାମାଜିକ ଶିକ୍ଷା (୧ମ ଭାଗ), ସାମାଜିକ ଶିକ୍ଷା (୨ୟ ଭାଗ), ସାମାଜିକ ଶିକ୍ଷା (୩ୟ ଭାଗ), ପିଲାଙ୍କ ସରଳ ସାଧାରଣ ଜ୍ଞାନ (୧ମ ଭାଗ), ପିଲାଙ୍କ ସରଳ ସାଧାରଣ ଜ୍ଞାନ (୨ୟ ଭାଗ), ପିଲାଙ୍କ ସରଳ ସାଧାରଣ ଜ୍ଞାନ (୩ୟ ଭାଗ), ଉଚ୍ଚ ନବୀନ ସ୍ୱାସ୍ଥ୍ୟରକ୍ଷା (୧ମ ଭାଗ), ଉଚ୍ଚ ନବୀନ ସ୍ୱାସ୍ଥ୍ୟରକ୍ଷା (୨ୟ ଭାଗ), A Teachers' Treasure (1001 Worthy Sayings) ।

❑ ❑

# ସଂସ୍କୃତି ଉପାସକ ସତ୍ୟନାରାୟଣ

ପ୍ୟାରିମୋହନ ମହାନ୍ତି

ଓଡ଼ିଆ ଜାତିର ଘଡ଼ିସନ୍ଧି ମୁହୂର୍ତ୍ତରେ ଯେଉଁମାନେ ଓଡ଼ିଶୀ ସଂସ୍କୃତିର ପୂଜାବେଦୀରେ ଜଣେ ଜଣେ ନିଷ୍ଠାପର ପୂଜକ ଭାବରେ ନିଜକୁ ନିବେଦନ କରିଛନ୍ତି; ସେଇମାନଙ୍କ ମଧ୍ୟରୁ ଜଣେ ହେଲେ ସତ୍ୟନାରାୟଣ ଅଗ୍ରୱାଲା । ଉତ୍କଳୀୟ ସଂସ୍କୃତିର ସେ ଜଣେ ସଫଳ ଉପାସକ ଓ ନୀରବ ସାଧକ । ୧୯୩୨ ମସିହାର ଡିସେମ୍ବର ମାସ ୧୯ ତାରିଖର ଏକ ଅମୃତ ଲଗ୍ନରେ, ପୁରୀର ଦୋଳମଣ୍ଡପସାହିରେ ଭୂମିଷ୍ଠ ହୋଇଥିଲେ ସତ୍ୟନାରାୟଣ । ବାପା ଭୀମେଶ୍ୱର ଏବଂ ମାଆ ମଣିଦେବୀଙ୍କର ଏହି ସନ୍ତାନ ଦିନେ ଯେ ଓଡ଼ିଶାର ସାଂସ୍କୃତିକ ମାନଚିତ୍ରକୁ ପରିବର୍ଦ୍ଧିତ ଆଉ ପରିଶୋଭିତ କରିବ- ଏକଥା ହୁଏତ ସେଦିନ କେହି କଳ୍ପନା କରି ନଥିଲେ । ସତ୍ୟନାରାୟଣଙ୍କର ପିତାମହ ମହାଦେବ ରାମ ଅନେକ ବର୍ଷ ତଳେ ରାଣାପ୍ରତାପଙ୍କ କର୍ମଭୂମି ରାଜସ୍ଥାନରୁ ଆସିଥିଲେ ଓଡ଼ିଶାକୁ । ଜଗନ୍ନାଥଙ୍କ ମାୟାରେ ପଡ଼ି ଭୁଲିଗଲେ ରାଜସ୍ଥାନକୁ । ରହିଗଲେ ପୁରୀରେ । ମହାଦେବ ରାମ ଓଡ଼ିଆ ସଂସ୍କୃତିକୁ ଆପଣେଇ ନେଇ ଓଡ଼ିଆ ପାଲଟିଗଲେ । ଓଡ଼ିଶାର ସୁଖଦୁଃଖ ତାଙ୍କ ସୁଖଦୁଃଖର ସୀମା ସରହଦରେ ମିଶିଗଲା । ସେ ହେଲେ ସମାଜସେବୀ । ପୁରୀ ଦୋଳମଣ୍ଡପସାହିରେ ଜାଗା କିଣି ସେ ହେଲେ ପୁରୀର ସ୍ଥାୟୀ ବାସିନ୍ଦା । ପୁତ୍ର ଭୀମେଶ୍ୱର ଅଗ୍ରୱାଲା ଏବଂ କନ୍ୟା ରୁକ୍ମିଣୀ ଦେବୀଙ୍କୁ ନେଇ ଗଢ଼ି ଉଠିଥିଲା ମହାଦେବ ରାମଙ୍କ ଛୋଟ ସଂସାର ।

ପିଲାଟି ଦିନରୁ ଭୀମେଶ୍ୱର ସମାଜସେବାକୁ ଜୀବନର ବ୍ରତ ରୂପେ ଆଦରି ନେଇଥିଲେ । ସେ ୧୯୩୩ ମସିହାରେ ସହଯୋଗୀ ବନ୍ଧୁମାନଙ୍କୁ ନେଇ, ଗଠନ କଲେ ଭାରତ ଯୁବକ ସେବାସଂଘ । ସେ ଥିଲେ ସେବାସଂଘର ଜଣେ ପ୍ରତିଷ୍ଠାତା ସଭ୍ୟ ଓ ସମ୍ପାଦକ ।

ଭୀମେଶ୍ୱରଙ୍କ ଜନ୍ମ ୧୯୧୦ ମସିହାରେ, ତିରୋଧାନ ତା୨୨-୧୧-୧୯୮୦ ମସିହା କାର୍ତ୍ତିକ ପୂର୍ଣ୍ଣିମାରେ । ତେଣୁ ଉଭୟ ପରାଧୀନ ଏବଂ ସ୍ୱାଧୀନ ଭାରତର ତିକ୍ତମଧୁର ଅନୁଭୂତି ସେ ଅଙ୍ଗେ ଅଙ୍ଗେ ଅନୁଭବ କରିଥିଲେ ।

ସ୍ୱଦେଶୀ ଭାବନାରେ ସେ ଅନୁପ୍ରାଣିତ ହୋଇ ଆଜୀବନ ଖଦଡ଼ ବସ୍ତ୍ର ପରିଧାନ କରୁଥିଲେ । ୧୯୪୪ ମସିହାରେ ପୁରୀରେ ଜନ୍ମନେଲା ପୁରୀ ଅର୍ବାନ୍ କୋ-ଅପରେଟିଭ୍ ବ୍ୟାଙ୍କ୍ । ତା'ର ପ୍ରତିଷ୍ଠାତା ଥିଲେ ପୁରୀର ବିଶିଷ୍ଟ ଆଇନ୍‌ଜୀବୀ ଆର୍ତ୍ତବନ୍ଧୁ ଦାସ । ତାଙ୍କୁ ଏ ଦିଗରେ ସାହାଯ୍ୟ କଲେ ଜଗନ୍ନାଥ ମିଶ୍ର, ଭୀମେଶ୍ୱର ଅଗ୍ରୱାଲ ଓ ଅନ୍ୟ ବନ୍ଧୁମାନେ । ଭୀମେଶ୍ୱରବାବୁ ଦୁଇଥର ବ୍ୟାଙ୍କର ସଭାପତି ରହିବା ସହ ବହୁବର୍ଷ ଯାଏ ଥିଲେ ପରିଚାଳନା କମିଟିର ସକ୍ରିୟ ସଭ୍ୟ । ଏହାବ୍ୟତୀତ ବଲାଙ୍ଗୀର ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ଏବଂ କଳାହାଣ୍ଡି ମହାରାଜା ପ୍ରତାପ କେଶରୀ ଦେଓଙ୍କ ନେତୃତ୍ୱରେ ଗଠିତ ଗଣତନ୍ତ୍ର ପରିଷଦର ସେ ହେଲେ ପୁରୀ ଜିଲ୍ଲାର ସଭାପତି । ସାମ୍ବାଦିକତା କ୍ଷେତ୍ରରେ ମଧ ଭୀମେଶ୍ୱରଙ୍କର ପ୍ରବେଶ ଥିଲା । ଉତ୍କଳ ସାମ୍ବାଦିକ ସଂଘ ଗଠନ ଦିଗରେ ସେ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଓ ଓଡ଼ିଶାର ପ୍ରବୀଣ ସାମ୍ବାଦିକ ସତ୍ୟବାଦୀ ତ୍ରିପାଠୀଙ୍କୁ ସାହାଯ୍ୟ କରିଥିଲେ ।

ଏହିପରି ଜଣେ କୃତବିଦ୍‌ର ସୁଯୋଗ୍ୟ ଦାୟାଦ ସତ୍ୟନାରାୟଣ ଥିଲେ ଦ୍ୱିତୀୟ ସନ୍ତାନ । ସତ୍ୟନାରାୟଣଙ୍କର ସାନଭାଇ ହରିହର ଓଡ଼ିଶାର ଜଣେ ଇଲେକ୍ଟ୍ରୋନିକ୍ସ ଇଂଜିନିୟର ଭାବରେ ଲୋକପ୍ରିୟତା ହାସଲ କରିଥିଲେ । ମାତ୍ର ୪୪ ବର୍ଷ ବୟସରେ ତାଙ୍କର ଅକାଳ ବିୟୋଗ ଘଟିଥିଲା ।

ଭୀମେଶ୍ୱରଙ୍କ ପ୍ରଥମ ସନ୍ତାନ ସତ୍ୟନାରାୟଣ ପିତାମାତାଙ୍କର ପ୍ରଥମ ପୁତ୍ର ଭାବରେ ବେଶ୍ ହସିଖେଳି ଆନନ୍ଦରେ ଶୈଶବ ଅତିକ୍ରମ କଲେ । ତା'ପରେ ବାଲ୍ୟଶିକ୍ଷା ଆରମ୍ଭ ହେଲା ଘରୋଇ ଶିକ୍ଷକଙ୍କ ମାଧମରେ । ପୁରୀ ଜିଲ୍ଲା ସ୍କୁଲରେ ଏକାଦଶ ଶ୍ରେଣୀରେ ପାଠ ପଢୁଥିବା ସମୟରେ ମାଟ୍ରିକ୍ ପରୀକ୍ଷା ପୂର୍ବରୁ ହଠାତ୍ ପାଠରେ ଡୋରୀ ବନ୍ଧାହେଲା । କିଶୋର ସତ୍ୟନାରାୟଣ ପିତାଙ୍କୁ ସାହାଯ୍ୟ କରିବାପାଇଁ ଯୋଗଦେଲେ ତାଙ୍କର ହୋଲ୍‌ସେଲ୍ ବ୍ୟବସାୟରେ । ୧୯୪୮ ମସିହାରେ ଷୋହଳ ବର୍ଷ ବୟସରେ ତରୁଣ ସତ୍ୟନାରାୟଣଙ୍କ ବିବାହ କାର୍ଯ୍ୟ ସମ୍ପନ୍ନ ହୋଇଥିଲା ସୁଶୀଳା ଦେବୀଙ୍କ ସହିତ । ସୁଶୀଳା ଦେବୀଙ୍କ ବୟସ ଥିଲା ତେର ବର୍ଷ । ସୁଶୀଳା ଦେବୀ ଥିଲେ କେନ୍ଦ୍ରାପଡ଼ାର ବିଶିଷ୍ଟ ବ୍ୟବସାୟୀ ଓ ସମାଜସେବୀ ଜୋହରିମଲ୍ଲ ଅଗ୍ରୱାଲାଙ୍କ ତୃତୀୟା କନ୍ୟା । ସତ୍ୟନାରାୟଣଙ୍କ ଦାମ୍ପତ୍ୟ ଜୀବନ ଥିଲା ବେଶ୍ ସୁଖମୟ । ବିବାହର ତୃତୀୟ ବର୍ଷ ୧୯୫୧ ମସିହାରେ ଜନ୍ମ ନେଲା ତାଙ୍କର ପ୍ରଥମ କନ୍ୟା ସନ୍ତାନ କ୍ରିଷ୍ଣା ।

ପିତାଙ୍କର ସମାଜସେବାର ପ୍ରଭାବ ପଡ଼ିଥାଏ କିଶୋର ସତ୍ୟନାରାୟଣଙ୍କ ଉପରେ । ବ୍ୟବସାୟରୁ ଅବସର ମିଳିଲେ ସାଙ୍ଗସାଥୀମାନଙ୍କ ସହିତ ମିଶି ସେ ବିଭିନ୍ନ ସାମାଜିକ କାର୍ଯ୍ୟରେ ଯୋଗ ଦେଉଥିଲେ । ୧୯୪୯ ମସିହାର ଘଟଣା । କେତେଜଣ ଆଗ୍ରହୀ ବନ୍ଧୁଙ୍କ ସହଯୋଗରେ ମାରୱାଡ଼ି ରିଲିଫ୍ ସୋସାଇଟି ଗଢ଼ି

ଅନେକ କଲ୍ୟାଣକର କାର୍ଯ୍ୟରେ ନିଜକୁ ନିୟୋଜିତ କଲେ । ପରିବାରର ସମସ୍ତଙ୍କୁ ନେଇ ସତ୍ୟନାରାୟଣଙ୍କ ଜୀବନଯାତ୍ରା ବେଶ୍ ସ୍ୱଚ୍ଛନ୍ଦରେ ଆଗକୁ ଗଡ଼ିଚାଲିଲା । କିନ୍ତୁ ୧୯୫୪ ପରେ ବ୍ୟବସାୟ ଏକ ଭିନ୍ନ ମୋଡ଼୍ ନେଲା । ବ୍ୟବସାୟ ଲାଭଜନକ ହେବା ପରିବର୍ତ୍ତେ ଚାଲିଲା ଗୁରୁତର କ୍ଷତିରେ । ଯେତେ ଯେତେ ନୂଆ ବ୍ୟବସାୟରେ ହାତ ଦେଲେ ବି କୋଉଥିରେ ଟିକ୍ଷିପାରିଲେନି ।

ବ୍ୟବସାୟର ବିପର୍ଯ୍ୟୟ ଦେଖି ତାଙ୍କର ମନୋବଳ ଭାଙ୍ଗିବାକୁ ଲାଗିଲା । ବ୍ୟବସାୟରେ କ୍ଷତି ସହିତ ପରିବାର ଭରଣପୋଷଣ ଦାୟିତ୍ୱର ଦୁଶ୍ଚିନ୍ତାରେ ସେ ଘାରିହେଲେ । ଯାହା ଫଳରେ ପ୍ରାୟ ୨୩/୨୪ ବର୍ଷ ବୟସରେ ସେ ପ୍ରାୟ ବର୍ଷକରୁ ଊର୍ଦ୍ଧ୍ୱ କାଳ ଉଚ୍ଚରକ୍ତଚାପ ରୋଗରେ ଆକ୍ରାନ୍ତ ହେଲେ । ଶେଷରେ ଦାରୁଣ ଆର୍ଥିକ ଦୁରବସ୍ଥା ମଧ୍ୟରେ ସମୁଦ୍ରକୂଳର ବାଲି ଓ ଶିପ ମାହାସୁଲ ଏବଂ ନିଜ ବଗିଚାର ପନିପରିବା ଚାଷରୁ ମିଳୁଥିବା ଅର୍ଥରେ ସତ୍ୟନାରାୟଣ ନିଜର ପରିବାରର ଗୁଜୁରାଣ ମେଣ୍ଟାଇଲେ ।

**ଅଭିନେତା ସତ୍ୟନାରାୟଣ :**

ଯୁବକ ସତ୍ୟନାରାୟଣଙ୍କ ପେସା ବ୍ୟବସାୟ ହେଲେ ମଧ୍ୟ ନିଶା ଥିଲା କଳା ଆଉ ସଂସ୍କୃତି । ରଙ୍ଗମଞ୍ଚ ଏବଂ ଅଭିନୟ ପ୍ରତି ପ୍ରଚଣ୍ଡ ଦୁର୍ବଳତା ଥିଲା ତାଙ୍କର । ୧୯୬୦ ମସିହାରେ ଯୁବକ ସତ୍ୟନାରାୟଣ ତାଙ୍କର କେତେଜଣ ଯୁବବନ୍ଧୁଙ୍କ ସହ, ଅନ୍ନପୂର୍ଣ୍ଣା ମଞ୍ଚରେ ପରୀକ୍ଷାମୂଳକ ହିନ୍ଦୀ ନାଟକ 'ପ୍ରତାପ ପ୍ରତିଜ୍ଞା' ଏବଂ 'ଅମର ଶହୀଦ୍ ସର୍ଦ୍ଦାର ଭଗତ୍ ସିଂ' ନାଟକ ମଞ୍ଚସ୍ଥ କରିଥିଲେ । ଏହାଛଡ଼ା ୧୯୬୩ ମସିହା ମାର୍ଚ୍ଚ ୩ ତାରିଖରେ ସ୍ଥାପିତ ହୋଇଥିଲା ଉଦୟନ ଅନୁଷ୍ଠାନ । ଦେବଦତ୍ତ ସାମନ୍ତସିଂହାର ଏବଂ ପ୍ରକାଶଚନ୍ଦ୍ର ରଥଙ୍କ ଉଦ୍ୟମରେ ସ୍ଥାପିତ ହୋଇଥିବା ଏଇ ଅନୁଷ୍ଠାନ ସହ ୧୯୬୫ ମସିହାରେ ଜଣେ ଉପଦେଷ୍ଟା ରୂପରେ ସମ୍ପୃକ୍ତ ହେଲେ ସତ୍ୟନାରାୟଣ । ତା'ପରେ ଉପସଭାପତି ରୂପେ ଏହି ଅନୁଷ୍ଠାନ ପାଇଁ ସେ ଅନେକ କାର୍ଯ୍ୟ କରିଛନ୍ତି ।

ଓଡ଼ିଶା ଏବଂ ଆନ୍ତର୍ଜାତିକ ସ୍ତରରେ ଉଦୟନ ସାଂସ୍କୃତିକ ଏକାଡ଼େମୀ ବହୁ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରି ପୁରୀର ଗୌରବ ବଢ଼ାଇବାରେ ସମର୍ଥ ହୋଇଛି ।

**ଶିଳ୍ପୀ ନାଟକ ଏକାଡ଼େମୀ :**

୧୯୬୫ ମସିହାରେ ସତ୍ୟନାରାୟଣବାବୁଙ୍କ ପ୍ରଚେଷ୍ଟାରେ ଗଠିତ ହେଲା ଶିଳ୍ପୀ ନାଟକ ଏକାଡ଼େମୀ । ଉଦ୍ଦେଶ୍ୟ ଥିଲା ସୌଖୀନ, ଉତ୍ସାହୀ କଳାକାରମାନଙ୍କୁ ତାଲିମ୍ ଦେଇ ମଞ୍ଚ ଓ ଅଭିନୟ କଳାରେ କିଛି ନୂତନ ଆଧୁନିକ କଳାକୌଶଳ ଉପଯୋଗ କରି ପ୍ରତି ଶନିବାର ଓ ରବିବାର ଦିନ ପରୀକ୍ଷାମୂଳକ ଭାବରେ ନୂତନ ସ୍ୱାଦର ନାଟକ ପରିବେଷଣ ଦ୍ୱାରା ନାଟ୍ୟ ଜଗତରେ ଏକ ନୂତନ ଅଧ୍ୟାୟ ସୃଷ୍ଟି

କରିବା । ଏହି ଲକ୍ଷ୍ୟ ନେଇ ଅନ୍ୟ ରାଜ୍ୟରୁ ନାଟ୍ୟକଳାରେ ଦକ୍ଷ, ଅଭିଜ୍ଞ ଗୁରୁମାନଙ୍କୁ ନିଯୁକ୍ତି ଦେଇ ପ୍ରଶିକ୍ଷଣ କାର୍ଯ୍ୟକ୍ରମର ଯୋଜନା ହୋଇଥିଲା । ସେତେବେଳେ ଡଃ ସୁରେଶ ଅଗସ୍ତି ଥାଆନ୍ତି କେନ୍ଦ୍ର ସଙ୍ଗୀତ ନାଟକ ଏକାଡ଼େମୀର ସମ୍ପାଦକ । କର୍ମକର୍ତ୍ତାଙ୍କ ଅନୁରୋଧକ୍ରମେ ଡଃ ଅଗସ୍ତି ଆସିଥାଆନ୍ତି ଅନୁଷ୍ଠାନ ପରିଦର୍ଶନ ପାଇଁ । ସତ୍ୟନାରାୟଣ କେନ୍ଦ୍ର ସଙ୍ଗୀତ ନାଟକ ଏକାଡ଼େମୀ ଓ ଦିଲ୍ଲୀସ୍ଥିତ ନେସ୍‌ନାଲ୍ ସ୍କୁଲ୍ ଅଫ୍ ଡ୍ରାମା ଆଣ୍ଡ ଏସିଆନ୍ ଥିଏଟର୍ ଇନ୍‌ଷ୍ଟିଚ୍ୟୁସନ୍ ସହିତ ସମ୍ପର୍କ ସ୍ଥାପନ କରି ତାଲିମ୍ ସଂକ୍ରାନ୍ତୀୟ ପାଠ ଖସଡ଼ା (ସିଲାବସ୍) ପ୍ରସ୍ତୁତ କଲେ ।

ଶିଳ୍ପୀନାଟକ ଏକାଡ଼େମୀ ଆନୁକୂଲ୍ୟରେ ବହୁ ପ୍ରଶଂସିତ ନାଟକ- ସୀମାନ୍ତ ଡାକେ (୧୯୬୬), ମଧୁଲୀତା, ନର୍ତ୍ତକୀ, ଆଠବର୍ଷର କବର ତଳୁ ଓ କଙ୍କାବତୀର ଘାଟ (ବଙ୍ଗଳାରୁ ଅନୂଦିତ) ପ୍ରଭୃତି ମଞ୍ଚସ୍ଥ କରାଯାଇଥିଲା । ବିଶ୍ୱପ୍ରସିଦ୍ଧ ମଣିପୁରୀ ନୃତ୍ୟଶିଳ୍ପୀ ଜାଭେରୀସିଷ୍ଟରସ (ନୟନା, ରଞ୍ଜନା ଓ ଦର୍ଶନା), ଶିଳ୍ପୀ ନାଟକ ଏକାଡ଼େମୀର ନିମନ୍ତ୍ରଣ ରକ୍ଷା କରି ପୁରୀ ସହରରେ ନୃତ୍ୟ ପ୍ରଦର୍ଶନ କରି ସମସ୍ତଙ୍କୁ ମୁଗ୍ଧ କରିଥିଲେ ।

୧୯୬୬ ମସିହାରେ ଓଡ଼ିଶାରେ ଏଭେରେଡ଼ି ବ୍ୟାଟେରୀର ଅଭାବ ଦେଖାଦେଲା । ସେତେବେଳେ ଏଭେରେଡ଼ି ବ୍ୟାଟେରୀ ଡିଲର୍‌ସ ଆସୋସିଏସନ୍‌ର ସମ୍ପାଦକ ଥାଆନ୍ତି ସତ୍ୟନାରାୟଣ । ସେହି ୧୯୬୬ ମସିହା ଜୁନ୍ ମାସ ୨ ତାରିଖରେ ପୁରୀଠାରେ ଅନୁଷ୍ଠିତ ହୋଇଥିଲା ଏଭେରେଡ଼ି ଡିଲର୍‌ସ କନ୍‌ଫରେନ୍‌ସ । ଏଥିରେ ଯୋଗ ଦେଇଥିଲେ ୟୁନିୟନ୍ କାର୍ବାଇଡ୍ ଇଣ୍ଡିଆ ଲିମିଟେଡ୍‌ର ଜେନେରାଲ୍ ସେଲ୍‌ସ ମ୍ୟାନେଜର ଡଃ କୋରିଆ ଏବଂ ଅନ୍ୟାନ୍ୟ ବିଭାଗର ମୁଖ୍ୟ ମ୍ୟାନେଜର୍‌ମାନେ । ଏହି ସମ୍ମିଳନୀରେ ସତ୍ୟନାରାୟଣ ଓଡ଼ିଶାରେ ବ୍ୟାଟେରୀ ଅଭାବ ସମ୍ପର୍କରେ ଡଃ କୋରିଆଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ।

## କର୍ମକ୍ଷେତ୍ର ପରିବର୍ତ୍ତନ :

ସତ୍ୟନାରାୟଣଙ୍କ ଶୈଶବ, କୈଶୋର, ଯୌବନ କଟିଲା ପୁରୀରେ । ପୁରୀର ମାଟି, ପାଣି, ପବନ ସହିତ ସେ ବେଶ୍ ପରିଚିତ । କିନ୍ତୁ ପୁରୀର ମୋହ ତାଙ୍କୁ ବେଶୀ ଦିନ ବାନ୍ଧିରଖି ପାରିଲା ନାହିଁ । ସେ ଭଲ ପାଉଥିଲେ ଓଡ଼ିଶାର ପ୍ରାଚୀନ ସଂସ୍କୃତିକୁ । ଅପସଂସ୍କୃତି ପ୍ରତି ତାଙ୍କର ତିଳେହେଲେ ଆନ୍ତରିକତା ନଥିଲା । ଏକ ଖିଆଲି ମନ ନେଇ ସେ ପୁରୀ ଛାଡ଼ି ଆସିଲେ କଟକକୁ ୧୯୭୬ ମସିହାରେ । କଟକକୁ ଆସିବା ପରେ ପୁଣି ସେଇ ସଂସ୍କୃତିର ମଳୟ ଲାଗିଲା ସତ୍ୟନାରାୟଣଙ୍କ ମନରେ । ଓଡ଼ିଶାର ପ୍ରାଚୀନ ସଙ୍ଗୀତ, ସାହିତ୍ୟ, ଅଭିନୟ ଆଦିକୁ ପ୍ରାଣବନ୍ତ କରିବାକୁ ସେ ମନ ବଳାଇଲେ । କଟକର ନୂଆପାଟଣାରେ ତାଙ୍କର ଆରାଧ୍ୟ ଦେବତା ଜଗନ୍ନାଥଙ୍କ ନାମରେ ବ୍ୟବସାୟ ସଂସ୍ଥାର ନାମ ରଖିଲେ "ଜଗନ୍ନାଥ ଇଲେକ୍‌ଟ୍ରୋନିକ୍ସ' । ୧୯୮୨

ମସିହାରେ ଜେ.ଇ. କ୍ୟାସେଟ୍ କମ୍ପାନୀଟିଏ ଆରମ୍ଭ କଲେ । ସେତେବେଳେ ଚାରିଆଡ଼େ ଉଗ୍ର ଆଧୁନିକ ନଗ୍ନ ସଙ୍ଗୀତର ରାଜୁତି । ତେଣୁ ତାଙ୍କର କେତେଜଣ ଶୁଭେଚ୍ଛୁ, ବନ୍ଧୁ ଏବଂ କଳାକାର ତାଙ୍କୁ ପରାମର୍ଶ ଦେଲେ ଜେ.ଇ. କ୍ୟାସେଟ୍‌ରେ ଯୁଗୋପଯୋଗୀ ନଗ୍ନ ଆଧୁନିକ ସଙ୍ଗୀତ ରେକର୍ଡ଼ିଂ କରିବାପାଇଁ । ସେମାନଙ୍କର ଯୁକ୍ତି ଥିଲା ଏ ଯୁଗରେ ପ୍ରାଚୀନ ପରମ୍ପରାର ସଙ୍ଗୀତ ପ୍ରତି ଶ୍ରୋତାମାନଙ୍କର ଆଦର ନାହିଁ । ଯଦି ସେପରି ସଙ୍ଗୀତ ରେକର୍ଡ଼ିଂ କରାଯାଏ, ତା'ହେଲେ କ୍ଷତି ହେବ କମ୍ପାନୀର । ସଂସ୍କୃତିପ୍ରେମୀ ସତ୍ୟନାରାୟଣ ନିଜ ନିଷ୍ପତ୍ତିରେ ଅଟଳ ଏବଂ ଅଚଳ । ତାଙ୍କର ଯୁକ୍ତି ଥିଲା; ଜେ.ଇ. କମ୍ପାନୀ କ୍ଷତିରେ ଚାଲିଲେ ଦୁଃଖ ନାହିଁ, କିନ୍ତୁ ସେଥିରେ ରେକର୍ଡ଼ିଂ ହେବନାହିଁ ଅପସଂସ୍କୃତି-ପ୍ରଭାବିତ ଉଗ୍ର ନଗ୍ନ ଆଧୁନିକ ସଙ୍ଗୀତ । ରେକର୍ଡ଼ିଂ ହେବ କେବଳ ପୁରାଣର ବିଷୟବସ୍ତୁ ଉପରେ ଆଧାରିତ ବିଭିନ୍ନ ରୁଚିଧର୍ମୀ ଓଡ଼ିଶୀ, ଚମ୍ପୂ, ଛାନ୍ଦ, ଲୋକଗୀତ, ଲୋକନାଟକ, ଦାଶକାଠିଆ, ପାଲା, ଭଜନ ଓ ଏହିପରି ପ୍ରାଚୀନ ପରମ୍ପରାର କଥାବସ୍ତୁ । ଏହି କ୍ୟାସେଟ୍‌ଗୁଡ଼ିକ ଉତ୍କଳୀୟ ସଂସ୍କୃତିର ବାହକ ଭାବରେ ଓଡ଼ିଶା ଓ ଓଡ଼ିଶା ବାହାରେ ଲୋପ ପାଇ ଆସୁଥିବା ଆମର ସଂସ୍କୃତିକୁ ପୁଣି ଘରେ ଘରେ ପହଞ୍ଚାଇ ପାରିବ । ଏଣୁ କାହାରି ଆଲୋଚନା ଓ ସମାଲୋଚନା ପ୍ରତି ସେ କର୍ଣ୍ଣପାତ ନକରି, ଏକାନ୍ତ ଭାବରେ ଚାଲିଲେ ନିଜ ଲକ୍ଷ୍ୟପଥରେ । ଓଡ଼ିଶୀ, ଛାନ୍ଦ, ଚମ୍ପୂ, ଭଜନ, ଓଷାବ୍ରତ, ଲକ୍ଷ୍ମୀପୁରାଣ (ମାଣବସା ଗୁରୁବାର), ନାବକେଳି, ପାଲା, ଦାଶକାଠିଆ ଗୀତ, କେନ୍ଦରା ଗୀତ, ଘୋଡ଼ାନାଚ ଗୀତ ପରି ଅନେକ ଲୋକଗୀତ, ଗୀତିନାଟ୍ୟ, ସୁଆଙ୍ଗ, ଭଜନ, ସଂସ୍କୃତ ଭାଷାରେ ରଚିତ ଲୋକପ୍ରିୟ ସ୍ତୋତ୍ର ଓ ସମ୍ବଲପୁରୀ ଲୋକଗୀତ ଆଦି ରେକର୍ଡ଼ିଂ କରିବା ପାଇଁ ସେ ଓଡ଼ିଶାର ବହୁ ପ୍ରତିଷ୍ଠିତ ପ୍ରବୀଣ ତଥା ତରୁଣ କଣ୍ଠଶିଳ୍ପୀଙ୍କର ଦ୍ୱାରସ୍ଥ ହେଲେ । ପ୍ରାଚୀନ ରଚନାର ମୌଳିକତା, ମାଧୁର୍ଯ୍ୟ ସମ୍ପର୍କରେ ସେମାନଙ୍କୁ ପ୍ରଭାବିତ କରି ପ୍ରଥମେ କେତେଜଣ ମୁଷ୍ଟିମେୟ କଳାକାରଙ୍କୁ ନେଇ ଆରମ୍ଭ କଲେ ପ୍ରାଚୀନ ସଙ୍ଗୀତର କ୍ୟାସେଟ୍ । ଯେତେବେଳେ ସେଇ କ୍ୟାସେଟ୍‌ଗୁଡ଼ିକ ବଜାରକୁ ଆସିଲା, ବହୁସଂଖ୍ୟାରେ ଆଦୃତ ହେଲା ।

ତାଙ୍କରି ପରାମର୍ଶରେ ତାଙ୍କର ତୃତୀୟ ପୁତ୍ର ସୀତାରାମ ଗୋଟିଏ ଭଡ଼ାଘରେ ଆରମ୍ଭ କଲେ ଏକ ଅଡ଼ିଓ ରେକର୍ଡ଼ିଂ ଷ୍ଟୁଡ଼ିଓ । ପିତାଙ୍କ ପରି ସୀତାରାମଙ୍କର ମଧ୍ୟ ଶ୍ରୀଜଗନ୍ନାଥଙ୍କ ଉପରେ ଗଭୀର ବିଶ୍ୱାସ ଏବଂ ଭରସା । ତେଣୁ ନିଜର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥଙ୍କ ନାମାନୁସାରେ ଷ୍ଟୁଡ଼ିଓର ନାମକରଣ ହେଲା "ଶ୍ରୀଜଗନ୍ନାଥ ରେକର୍ଡ଼ିଂ ଷ୍ଟୁଡ଼ିଓ" । ସମ୍ପ୍ରତି ଏହା ଏକ ସର୍ବାଧୁନିକ ଡିଜିଟାଲ୍ ଷ୍ଟୁଡ଼ିଓ ରୂପେ ପରିଚିତ ।

**ଶ୍ରୀକ୍ଷେତ୍ର କଳା ସାଂସ୍କୃତିକ ସଂସଦ (ଦେବ ଦୀପାବଳି ଭଜନ ସମାରୋହ):**

ଶ୍ରୀଜଗନ୍ନାଥ ସମସ୍ତ କଳାର ଆଧାର । ସେଥିପାଇଁ ସେଇ ପବିତ୍ର ପୀଠକୁ କେନ୍ଦ୍ରକରି ୧୯୭୬ ମସିହାରେ ଜନ୍ମନେଲା ଶ୍ରୀକ୍ଷେତ୍ର କଳା ସାଂସ୍କୃତିକ ସଂସଦ । ମାତ୍ର ୧୯୭୮ ମସିହାରେ ସତ୍ୟନାରାୟଣ ଏହି ଅନୁଷ୍ଠାନର ଉପସଭାପତି ହେବା ପରେ ବୃଦ୍ଧି ପାଇଲା ତା'ର କାର୍ଯ୍ୟ ପରିସର । ସେହିବର୍ଷଠାରୁ ଧାରାବାହିକ ଭାବରେ ଦେବଦୀପାବଳି ସନ୍ଧ୍ୟାରେ ଭଜନ ସମାରୋହ ଅନୁଷ୍ଠିତ ହୋଇଆସୁଛି ଶ୍ରୀମନ୍ଦିର ସିଂହଦ୍ୱାର ସମ୍ମୁଖରେ । ଏଇ ଅବସରରେ ପ୍ରତିବର୍ଷ ଓଡ଼ିଶାର ଲବ୍ଧପ୍ରତିଷ୍ଠ ଯନ୍ତ୍ରଶିଳ୍ପୀ, କଣ୍ଠଶିଳ୍ପୀ ଏବଂ ନାଟ୍ୟକାରଙ୍କୁ ସମ୍ବର୍ଦ୍ଧିତ କରିବାର ସୌଭାଗ୍ୟ ଅର୍ଜନ କରିଛି ଏଇ ଅନୁଷ୍ଠାନ ।

ଓଡ଼ିଶୀ ସଙ୍ଗୀତକୁ ଶାସ୍ତ୍ରୀୟ ମାନ୍ୟତା ପ୍ରଦାନ କରିବାରେ ତାଙ୍କର ଉଦ୍ୟମ ଅନସ୍ୱୀକାର୍ଯ୍ୟ । ପୁନେ ଗାନ୍ଧର୍ବ ମହାବିଦ୍ୟାଳୟ ପରିଚାଳନା କମିଟିର ଜଣେ ପ୍ରମୁଖ ସଦସ୍ୟ ଡଃ ମୋହନ ସେନାପତି ଆସିଥାଆନ୍ତି ଓଡ଼ିଶାକୁ । ଡଃ ସେନାପତିଙ୍କର ଓଡ଼ିଶା ଆଗମନ ସମୟରେ ଓଡ଼ିଶୀ ସଙ୍ଗୀତଗୁରୁ ମାର୍କଣ୍ଡେୟ ମହାପାତ୍ର, ସତ୍ୟନାରାୟଣ ଅଗ୍ରୱାଲା ଏବଂ ତାଙ୍କର ସହଯୋଗୀ ବନ୍ଧୁମାନେ ଓଡ଼ିଶୀ ସଙ୍ଗୀତର ମୌଳିକତା ସମ୍ପର୍କରେ ତାଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ ।

**ସଙ୍ଗୀତ କଳା ପ୍ରତିଷ୍ଠାନ :**

ସଙ୍ଗୀତ କଳା ପ୍ରତିଷ୍ଠାନ, ପୁରୀର ଏକ ପୁରାତନ ସାଂସ୍କୃତିକ ଅନୁଷ୍ଠାନ । ଆଜୀବନ ସଭ୍ୟ ସତ୍ୟନାରାୟଣବାବୁ ପ୍ରତିଷ୍ଠାନର କାର୍ଯ୍ୟକାରୀ ସମିତିର ସଭ୍ୟ ଥିବା ସମୟରେ ୧୯୮୧ ମସିହାରେ ପାଳନ କଲେ ତା'ର ରୌପ୍ୟ ଜୟନ୍ତୀ ଉତ୍ସବ । ସେତେବେଳେ ବମ୍ବେର ଗାନ୍ଧର୍ବ ମହାବିଦ୍ୟାଳୟ ଆନୁକୂଲ୍ୟରେ କଟକରେ ପାଳନ କରାଯାଉଥାଏ ସର୍ବଭାରତୀୟ ଶାସ୍ତ୍ରୀୟ ନୃତ୍ୟ ସଙ୍ଗୀତ କାର୍ଯ୍ୟକ୍ରମ । ଭାରତର ବହୁ ପ୍ରବୀଣ ସଙ୍ଗୀତଗୁରୁ ଯୋଗ ଦେଇଥା'ନ୍ତି ଏଥିରେ । ଏଇ ଅବସରରେ ସତ୍ୟନାରାୟଣବାବୁ ତାଙ୍କ ସହଯୋଗୀମାନଙ୍କ ସହ କଟକକୁ ଆସିଥିବା ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ କଳାକାରମାନଙ୍କ ସହିତ ସମ୍ପର୍କ ସ୍ଥାପନ କଲେ । ସେମାନଙ୍କ ମଧ୍ୟରୁ ୨୦ ଜଣରୁ ଅଧିକ ସଙ୍ଗୀତଗୁରୁଙ୍କୁ ପୁରୀ ନେଇ ସେମାନଙ୍କଦ୍ୱାରା ସିଂହଦ୍ୱାରଠାରେ ସାରାରାତି ଯନ୍ତ୍ର ଓ କଣ୍ଠସଙ୍ଗୀତ ପରିବେଷଣ କରାଇ ସୃଷ୍ଟି କରିଥିଲେ ଏକ ନୂତନ ପରମ୍ପରା ।

**ଭକ୍ତି ସଙ୍ଗୀତ ସଂସଦ, ପାରଳାଖେମୁଣ୍ଡି :**

୧୯୮୧ ମସିହା ପର୍ଯ୍ୟନ୍ତ ଓଡ଼ିଶାର ସ୍ୱନାମଧନ୍ୟ କଣ୍ଠଶିଳ୍ପୀଙ୍କୁ ନେଇ କୌଣସି ଉଲ୍ଲେଖନୀୟ ସାଂସ୍କୃତିକ କାର୍ଯ୍ୟକ୍ରମ କରାଯାଇ ନଥିଲା ପାରଳାଖେମୁଣ୍ଡିରେ । ପାରଳାଖେମୁଣ୍ଡିରେ ଜନ୍ମଗ୍ରହଣ କରିଥିବା ସଂସଦର ଜଣେ ତରୁଣ ସଭ୍ୟ ପୂର୍ଣ୍ଣଚନ୍ଦ୍ର ରଥଙ୍କ ଆଗ୍ରହରେ ସତ୍ୟନାରାୟଣବାବୁ ଓଡ଼ିଶାର ପ୍ରତିଷ୍ଠିତ ପ୍ରାୟ ପନ୍ଦର ଜଣରୁ ଅଧିକ

କଣ୍ଠଶିଳ୍ପୀଙ୍କ ସହ ବିଶିଷ୍ଟ କଥାକାର ତଥା ବାଗ୍ମୀ ରାଜକିଶୋର ରାୟଙ୍କୁ ନେଇ ତା୦୭-୦୩-୧୯୮୧ରିଖରେ ପ୍ରଥମଥର ପାଇଁ ଏକ ବିରାଟ ଭଜନ ସମାରୋହ କରାଇଲେ ପାରଳାଖେମୁଣ୍ଡିର ଶ୍ରୀଜଗନ୍ନାଥଙ୍କ ମନ୍ଦିରର ମୁକ୍ତ ପ୍ରାଙ୍ଗଣରେ ।

**ଗାୟକରତ୍ନ ସିଂହାରୀ ଶ୍ୟାମସୁନ୍ଦର କେନ୍ଦ୍ରୀୟ ସ୍ମୃତି ସମିତି ଓ ସତ୍ୟନାରାୟଣ:**

ଓଡ଼ିଶୀ ସଙ୍ଗୀତ ମଉଡ଼ମଣି ଗାୟକରତ୍ନ ସିଂହାରୀ ଶ୍ୟାମସୁନ୍ଦର କରଙ୍କର ଜନ୍ମ ପୁରୀରେ । ଓଡ଼ିଶାର ଏଇ ବରପୁତ୍ରଙ୍କର ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ସତ୍ୟନାରାୟଣବାବୁ ଏବଂ ତାଙ୍କର ସହଯୋଗୀ କଳାପ୍ରିୟ ବନ୍ଧୁମାନଙ୍କ ଉଦ୍ୟମରେ ୨୧-୧୦-୧୯୮୨ରେ ଗଠିତ ହେଲା ଗାୟକରତ୍ନ ସିଂହାରୀ ଶ୍ୟାମସୁନ୍ଦର କେନ୍ଦ୍ରୀୟ ସ୍ମୃତି ସମିତି ନାମକ ଏକ ନୂତନ ସାଂସ୍କୃତିକ ଅନୁଷ୍ଠାନ । ଏହି ଅନୁଷ୍ଠାନ ଜରିଆରେ ପୂର୍ବ ଯୋଜନା ଅନୁସାରେ ଘରେ ଘରେ ଓଡ଼ିଶୀ ସଙ୍ଗୀତର ପ୍ରଚାର ଏବଂ ପ୍ରସାର ପାଇଁ ଅଭିଯାନ ଆରମ୍ଭ ହେଲା । ପ୍ରାଚୀନ ସଙ୍ଗୀତକୁ ଲୋକପ୍ରିୟ କରିବା ଉଦ୍ଦେଶ୍ୟରେ ପୁରୀରେ ଗୋଟିଏ ରାଜ୍ୟସ୍ତରୀୟ ସଙ୍ଗୀତ ସମ୍ମିଳନୀ ହେଲା । ଏଥିରେ ପଦ୍ମଶ୍ରୀ ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନଙ୍କ ପରି ଓଡ଼ିଶାର ବହୁ ପ୍ରତିଷ୍ଠିତ ସଙ୍ଗୀତଜ୍ଞ ଏବଂ ସଙ୍ଗୀତପ୍ରେମୀ ଯୋଗଦେଇ ଓଡ଼ିଶୀ, ଛାନ୍ଦ, ଚମ୍ପୂ ପରି ପ୍ରାଚୀନ ସଙ୍ଗୀତର ମୌଳିକତା ଉପରେ ଆଲୋକପାତ କରିଥିଲେ ।

**ଦୂରଦର୍ଶନ ଓ ସତ୍ୟନାରାୟଣ :**

ସେଇ ଗୋଟିଏ ଚିନ୍ତା; କିନ୍ତୁ ଧାରା ଭିନ୍ନ । ଅଡ଼ିଓରୁ ଭିଡ଼ିଓ ବା ଶ୍ରାବ୍ୟରୁ ଦୃଶ୍ୟ । ଓଡ଼ିଶାର ପ୍ରାଚୀନ ସଙ୍ଗୀତ ଓ ଲୋକସଂସ୍କୃତିର ବିଷୟବସ୍ତୁ ଉପରେ ଆଧାରିତ କାର୍ଯ୍ୟକ୍ରମ ପରିବେଷଣ ହେବ ଦୂରଦର୍ଶନ ମାଧ୍ୟମରେ । ଆରମ୍ଭ ହେଲା ଉଦ୍ୟମ । ସେ ପୁଅ ସୀତାରାମକୁ କହିଲେ ଦୂରଦର୍ଶନରେ ଉତ୍କଳୀୟ ସଂସ୍କୃତି ଉପରେ କିଛି ଧାରାବାହିକ ପ୍ରସ୍ତୁତ କରିବା ପାଇଁ । ପ୍ରଥମେ ପ୍ରସ୍ତୁତି ଆରମ୍ଭ ହେଲା ଲକ୍ଷ୍ମୀପୁରାଣ (ମାଣବସା ଗୁରୁବାର) । ଏହି କାର୍ଯ୍ୟକ୍ରମଟି ଚାରୋଟି ଭାଗରେ ମାର୍ଗଶୀର ମାସର ପ୍ରତି ଗୁରୁବାର ଦିନ ଦୂରଦର୍ଶନରେ ପରିବେଷିତ ହେଲା ସାର୍ଥକ୍ ପ୍ରଡ଼କ୍ସନ୍ ମାଧ୍ୟମରେ । ଦର୍ଶକମାନେ ଏହି ଧାରାବାହିକକୁ ପସନ୍ଦ କଲେ । ତା'ପରେ ଏଇପରି ଧାରାବାହିକ ପ୍ରସ୍ତୁତି ପାଇଁ ଅନୁରୋଧ ଆସିଲା ଦର୍ଶକମାନଙ୍କଠାରୁ । ଲକ୍ଷ୍ମୀପୁରାଣ (ମାଣବସା ଗୁରୁବାର)ର ଅପାର ସଫଳତା ପରେ ସତ୍ୟନାରାୟଣଙ୍କ ପରାମର୍ଶରେ ଆରମ୍ଭ ହେଲା ଭଜନ ଉପରେ ଆଧାରିତ ସଙ୍ଗୀତ କାର୍ଯ୍ୟକ୍ରମ 'ଭଜନ ସନ୍ଧ୍ୟା' ।

**ସମ୍ପାଦକ ସତ୍ୟନାରାୟଣ :**

ଯାତ୍ରା ଓଡ଼ିଶାର ଗୋଟିଏ ବଳିଷ୍ଠ ଲୋକସଂସ୍କୃତି । ଏହି ଲୋକପ୍ରିୟ ଯାତ୍ରା, ତା'ର ରଙ୍ଗମଞ୍ଚ, କଳାକାର, ମଞ୍ଚସଜ୍ଜା, ସାହିତ୍ୟ ଆଦି ସମ୍ପର୍କରେ ଆଲୋକପାତ କରିବାପାଇଁ ସ୍ୱତନ୍ତ୍ର ଭାବରେ କୌଣସି ପତ୍ରିକା ନଥିଲା । କେବେ କିପରି ଯାତ୍ରା ସମ୍ପର୍କରେ

କାଁ ଭାଁ ଗୋଟିଏ ଦୁଇଟି ପ୍ରବନ୍ଧ ଓ ସାକ୍ଷାତକାର ପ୍ରକାଶ ପାଉଥିଲା ସମ୍ବାଦପତ୍ର କିମ୍ବା କୌଣସି ପତ୍ରିକାର ପୃଷ୍ଠାରେ । କିନ୍ତୁ ସଂସ୍କୃତିପ୍ରେମୀ ସତ୍ୟନାରାୟଣ ଓଡ଼ିଆ ସାହିତ୍ୟରେ ଏହି ଅଭାବକୁ ଉପଲବ୍ଧି କରି ୧୯୯୪ ମସିହାରେ ଯାତ୍ରା ଓ କଳା ସଂସ୍କୃତି ଉପରେ ଆଧାରିତ ସୃଜନଶୀଳ ଦ୍ୱିମାସିକ ପତ୍ରିକା 'ଯାତ୍ରା ଜଗତ' ନିଜ ସମ୍ପାଦନାରେ ନିଜେ ପ୍ରକାଶ କଲେ । ଏଥିରେ ଓଡ଼ିଆ ଯାତ୍ରାର କ୍ରମବିକାଶ, କଳାକାରମାନଙ୍କ ଜୀବନୀ, ତାଙ୍କର ଅତୀତ ଓ ବର୍ତ୍ତମାନ ସମ୍ପର୍କରେ ପ୍ରକାଶିତ ହେଲା ବହୁ ତଥ୍ୟମୂଳକ ପ୍ରବନ୍ଧ ।

**ମୟୂର ସାଂସ୍କୃତିକ ଏକାଡ଼େମୀ :**

ଭକ୍ତି ଓ ଓଡ଼ିଶୀ ସଙ୍ଗୀତର ପ୍ରଚାର ପ୍ରସାର ପାଇଁ ଉପଯୁକ୍ତ ଶିକ୍ଷାର ଆବଶ୍ୟକତା ସମ୍ପର୍କରେ ସତ୍ୟନାରାୟଣବାବୁ ହୃଦୟଙ୍ଗମ କରିଥିଲେ । ଯୁବପୀଢ଼ିକୁ ଏ ଦିଗରେ ଗଢ଼ିବା ପାଇଁ ସେ ସଙ୍ଗୀତ ପ୍ରଶିକ୍ଷଣ କେନ୍ଦ୍ର ଉପରେ ଗୁରୁତ୍ୱ ଆରୋପ କରୁଥିଲେ । ଏଇ ଲକ୍ଷ୍ୟରେ ୧୯୯୭ ମସିହାରେ ନିଜର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଗଠନ କଲେ ମୟୂର ସାଂସ୍କୃତିକ ଏକାଡ଼େମୀ । ଏବେ ଏଇ ଅନୁଷ୍ଠାନଟି ପୁରୀର ଶରଧାବାଲି ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ପରିସରରେ ସୁଚାରୁରୂପେ କାର୍ଯ୍ୟ କରୁଛି ।

**ଓଡ଼ିଶୀ ଓ ଭଜନ ପ୍ରସାର ସମିତି :**

ଓଡ଼ିଶୀ ସଙ୍ଗୀତର ଆବଦ୍ଧ କୋଠରି ପରିବେଷଣ ଶୈଳୀ ସତ୍ୟନାରାୟଣବାବୁଙ୍କ ମନରେ ଦାରୁଣ ରେଖାପାତ କଲା । ରୁଦ୍ଧ ପରିବେଶରୁ ଓଡ଼ିଶୀ ସଙ୍ଗୀତକୁ ମୁକ୍ତ କରି ସର୍ବସାଧାରଣ ଶୁଣିବା ପରି ଖୋଲାମଞ୍ଚରେ ଓଡ଼ିଶୀ ସଙ୍ଗୀତ ପରିବେଷଣ କରାଇବା ପାଇଁ ସେ ସଂକଳ୍ପ କଲେ । ଏହି ମହତ୍ ଲକ୍ଷ୍ୟ ନେଇ ୧୯୯୫ ମସିହାରେ ତାଙ୍କରି ପ୍ରଚେଷ୍ଟାରେ ଜନ୍ମ ନେଲା ଓଡ଼ିଶୀ ଓ ଭଜନ ପ୍ରସାର ସମିତି । ଏହି ଅନୁଷ୍ଠାନ ୧୯୯୫ ଏବଂ ୧୯୯୬ ମସିହାରେ କଟକ ଏବଂ ପୁରୀରେ ବିଭିନ୍ନ ସମୟରେ ଚାରୋଟି ମୁକ୍ତମଞ୍ଚ ଓଡ଼ିଶୀ ସଙ୍ଗୀତ ଆସର କରି ବେଶ୍ ସୁନାମ ଅର୍ଜନ କରିବା ସହିତ ପର୍ଯ୍ୟାୟକ୍ରମେ ଅନୁଗୋଳ ଏବଂ ଅନ୍ୟାନ୍ୟ ସ୍ଥାନରେ ଏହିପରି ଆସରମାନ କରିଛି ।

**ସର୍ବଭାରତୀୟ ପିତାମାତା ଅଧିକାର ସୁରକ୍ଷା ସମିତି :**

ଭାରତୀୟ ପବିତ୍ର ପାରିବାରିକ ଜୀବନର ସୁଦୃଢ଼ ବନ୍ଧନ ଏବେ ଶିଥିଳ ହୋଇଯାଉଛି । ଏହାକୁ ଦୃଢ଼ କରିବା ପାଇଁ ସତ୍ୟନାରାୟଣବାବୁ ପରିଣତ ବୟସରେ ଅକ୍ଳାନ୍ତ ଶ୍ରମ ସ୍ୱୀକାର କରି ବିଭିନ୍ନ ଶାସ୍ତ୍ର, ପୁରାଣ, ପତ୍ର ପତ୍ରିକାରୁ ପିତାମାତାଙ୍କ ପ୍ରତି ସନ୍ତାନର କର୍ତ୍ତବ୍ୟ ଏବଂ ସେବା ସମ୍ପର୍କରେ ତଥ୍ୟ ସଂଗ୍ରହ କରୁଛନ୍ତି । ଏ ଦିଗରେ ସମାଜକୁ ସଚେତନ କରିବାପାଇଁ ବ୍ୟକ୍ତିଗତ ଉଦ୍ୟମରେ ୧୯୯୮ ମସିହାରେ ଗଠନ କରିଛନ୍ତି 'ସର୍ବଭାରତୀୟ ପିତାମାତା ଅଧିକାର ସୁରକ୍ଷା ସମିତି' । ସେ ନିଜେ ଅଛନ୍ତି ଅନୁଷ୍ଠାନର ସଭାପତି ।

**ସମ୍ମାନ ଓ ସ୍ୱୀକୃତି :**

ଓଡ଼ିଆ ସଂସ୍କୃତିର ଉପାସକ ଓ ନୀରବ ସାଧକ ସତ୍ୟନାରାୟଣବାବୁଙ୍କୁ ସଂସ୍କୃତିର ସୁରକ୍ଷା ପାଇଁ ନେଇଥିବା ପଦକ୍ଷେପ ଯୋଗୁଁ ଓଡ଼ିଶାର ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନ ତରଫରୁ ସମ୍ମାନ ଓ ସ୍ୱୀକୃତି ପ୍ରଦାନ କରାଯାଇଛି । ଉତ୍କଳର ଲୋକକଳା, ପ୍ରାଚୀନ ସଙ୍ଗୀତର ପ୍ରଚାର ଏବଂ ପ୍ରସାର ନିମନ୍ତେ ତାଙ୍କର ଉଲ୍ଲେଖନୀୟ ଅବଦାନ ପାଇଁ ତା୨୯-୧୨-୧୯୯୮ ରିଖରେ କଟକର ବାଣୀପୀଠ ଶ୍ରୀରାମଚନ୍ଦ୍ର ଭବନଠାରେ ମନସ୍ୱିନୀ (ପାରାଦ୍ୱୀପ), ମର୍ମବାଣୀ (ଭଦ୍ରକ), ସୁରଭାରତୀ (ଓଡ଼ଗାଁ) ଏବଂ ସନ୍ଧାନୀ (ଓଗାଳପୁର) ଅନୁଷ୍ଠାନର ସମ୍ମିଳିତ ସାରସ୍ୱତ ସମ୍ବର୍ଦ୍ଧନା ମହୋତ୍ସବରେ ତାଙ୍କୁ 'କଳାଭାସ୍କର' ଉପାଧି ପ୍ରଦାନ କରାଯାଇଛି । ସଂସ୍କୃତିର ଜଣେ ଜାଗ୍ରତ ପ୍ରହରୀ ଭାବେର 'ଚଳଚ୍ଚିତ୍ର ଜଗତ' ତରଫରୁ ପ୍ରଥମେ ୧୯୯୪ରେ କଟକ ଶହୀଦଭବନଠାରେ ଏବଂ ଦ୍ୱିତୀୟଥର ତା୨୪-୧୨-୨୦୦୦ ରିଖରେ କଟକ ଇନ୍‌ଡ଼ୋର୍ ଷ୍ଟାଡ଼ିୟମ୍‌ଠାରେ ତାଙ୍କୁ ସମ୍ବର୍ଦ୍ଧିତ କରିବା ସହ ମିଲେନିୟମ୍ ଆୱାର୍ଡ଼ ପ୍ରଦାନ କରିଥିଲା । ସାଙ୍ଗଠନିକ ଦକ୍ଷତା ଏବଂ ଜନମାନସରେ ସୃଷ୍ଟି କରୁଥିବା ସାଂସ୍କୃତିକ ଜାଗରଣ ପାଇଁ କଟକର ମାରୱାଡ଼ି ହିନ୍ଦୀ ବିଦ୍ୟାଳୟ ତରଫରୁ ଶ୍ରୀ ଅଗ୍ରୱାଲା ସ୍ୱତନ୍ତ୍ରଭାବରେ ସମ୍ମାନିତ ଏବଂ ସମ୍ବର୍ଦ୍ଧିତ । ଭକ୍ତିସଙ୍ଗୀତ ଓ ପ୍ରାଚୀନ ସଙ୍ଗୀତର ପ୍ରସାର ପାଇଁ ତାଙ୍କର ନିଷ୍ଠାପର ମହନୀୟ ଉଦ୍ୟମ ଯୋଗୁଁ ପାରଳାର ଭକ୍ତିସଙ୍ଗୀତ ସଂସଦ ତରଫରୁ ତା ୦୫-୦୪-୧୯୮୫ ରିଖରେ ତାଙ୍କୁ ମାନପତ୍ର ପ୍ରଦାନ ସହ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଛି । ପୁରାଣର କଥାବସ୍ତୁ ଉପରେ ଆଧାରିତ ଆଧ୍ୟାତ୍ମିକ ଏବଂ ନୈତିକ ମୂଲ୍ୟବୋଧର ଅଡ଼ିଓ କ୍ୟାସେଟ୍‌ମାନ ପ୍ରସ୍ତୁତ କରି ସମାଜରେ ସୁସ୍ଥ, ନିର୍ମଳ ବାତାବରଣ ସୃଷ୍ଟି ପାଇଁ ନିରନ୍ତର ଉଦ୍ୟମ କରୁଥିବାରୁ କଟକର ମହତାବରୋଡ଼ସ୍ଥିତ ଶ୍ରୀମଦ୍ ଭାଗବତ ମହୋତ୍ସବ ଅନୁଷ୍ଠାନ ତରଫରୁ ତା ୨୨।୧୧-୨୦୦୦ ରିଖରେ ତାଙ୍କୁ ସମ୍ମାନିତ କରାଯାଇଛି ।

**ପାରିବାରିକ ଜୀବନ :**

ପିତାଙ୍କର ଦୃଢ଼ ମନୋବଳ ତାଙ୍କ ଜୀବନପଥରେ ତାଙ୍କୁ ଯଥେଷ୍ଟ ସାହାଯ୍ୟ କରିଛି । ଜୀବନର ଝଡ଼ଝଞ୍ଜା ମଧ୍ୟରେ ସେ ଭାଙ୍ଗିପଡ଼ି ନାହାନ୍ତି । ନୈରାଶ୍ୟ କେବେ ତାଙ୍କୁ ସ୍ପର୍ଶ କରିପାରିନି । ପ୍ରତ୍ୟେକ କ୍ଷେତ୍ରରେ ଆଶାବାଦୀ ହୋଇ ସେ ଆଗକୁ ପାଦ ବଢ଼େଇଛନ୍ତି । ତାଙ୍କର ଦାମ୍ପତ୍ୟ ଜୀବନ ବେଶ୍ ସୁଖମୟ । ପତ୍ନୀ ସୁଶୀଳା ଦେବୀ ଜଣେ ଅତିଥିବତ୍ସଳା ଏବଂ ଧର୍ମପରାୟଣା ସୁଗୃହିଣୀ । ଓଡ଼ିଶାର ପର୍ବପର୍ବାଣି, ଆଚାରବ୍ୟବହାର, ଯାନିଯାତ୍ରା ସମ୍ପର୍କରେ ଯଥେଷ୍ଟ ଜ୍ଞାନ ଅଛି ତାଙ୍କର । ସେ ନିଜର କରିନେଇଛନ୍ତି ଓଡ଼ିଆ ଘରର ଚଳଣିକୁ । କର୍ମମୟ ଜୀବନର ପ୍ରତ୍ୟେକ ସୋପାନରେ ସେ ପ୍ରତ୍ୟକ୍ଷ ଭାବରେ ସ୍ୱାମୀଙ୍କୁ ସାହାଯ୍ୟ କରି ନ ପାରିଲେ ବି ସମସ୍ତ କାର୍ଯ୍ୟରେ

ତାଙ୍କର ପରୋକ୍ଷ ସହଯୋଗ ରହିଛି । ତାଙ୍କର ଝିଅମାନେ ହେଲେ- କିଷ୍ଣା, ମୀନା, ମଞ୍ଜୁ ଆଉ ପୁଅମାନେ ହେଲେ- ରମେଶଚନ୍ଦ୍ର, ସୁବାସଚନ୍ଦ୍ର, ସୀତାରାମ, ମନୋଜକୁମାର ଏବଂ ପବନକୁମାର ।

ସତ୍ୟନାରାୟଣବାବୁ ଜଣେ ଉଚ୍ଚମନା ବ୍ୟକ୍ତି । ଜାତି, ବର୍ଣ୍ଣ କିମ୍ବା କୌଣସି ଗୋଷ୍ଠୀର ସଂକୀର୍ଣ୍ଣତା ମଧ୍ୟରେ ସେ ଆବଦ୍ଧ ନୁହନ୍ତି । ଓଡ଼ିଶାର ସୁପରିଚିତା କଣ୍ଠଶିଳ୍ପୀ ନମିତା ଅଗ୍ରୱାଲା ତାଙ୍କର ପୁତ୍ରବଧୂ ଓ ସୀତାରାମ ଅଗ୍ରୱାଲାଙ୍କର ଧର୍ମପତ୍ନୀ ।

ଶ୍ରୀ ଅଗ୍ରୱାଲା ଜଣେ ଶାନ୍ତିପ୍ରିୟ ବ୍ୟକ୍ତି । ଜୀବନର ଯାତ୍ରାପଥରେ ନୀତି ନିୟମ ଶୃଙ୍ଖଳା ଉପରେ ସେ ଅଧିକ ଗୁରୁତ୍ୱ ଦିଅନ୍ତି । କୌଣସି ଲୋକଦେଖାଣିଆ ଆଡ଼ମ୍ବର ଏବଂ ଚାକଚକ୍ୟକୁ ସେ ପସନ୍ଦ କରନ୍ତି ନାହିଁ । ପ୍ରତ୍ୟେକ କାର୍ଯ୍ୟକୁ ସହଜ, ସରଳ, ନୀରବରେ କରିବା ତାଙ୍କ ଚରିତ୍ରର ଅନ୍ୟ ଏକ ମୌଳିକତା । ଆଚରଣ ରୁଚିପୂର୍ଣ୍ଣ ।

**ସାରସ୍ୱତ ସାଧକ ସତ୍ୟନାରାୟଣ :**

ବହୁ ଧାରାରେ ବିଭକ୍ତ ସତ୍ୟନାରାୟଣ୍‌ବାବୁଙ୍କ ଜୀବନ । ଗୋଟିଏ ଦିଗରେ ବ୍ୟବସାୟ, ଅନ୍ୟ ଦିଗରେ ସାଂସ୍କୃତିକ ସାରସ୍ୱତ ଏବଂ ସ୍ୱେଚ୍ଛାସେବୀ ଅନୁଷ୍ଠାନରେ ସହଯୋଗ । ଏସବୁର ମିଳିତ ଧାରା ତାଙ୍କ ଜୀବନକୁ କରିଛି କର୍ମଚଞ୍ଚଳ । ତାଙ୍କର ଅନୁରାଗ ରହିଛି ଓଡ଼ିଆ ସାହିତ୍ୟ ପ୍ରତି ।

ଓଡ଼ିଶାର ବହୁ ସାଂସ୍କୃତିକ, ସାମାଜିକ ଅନୁଷ୍ଠାନ ସହିତ ସତ୍ୟନାରାୟଣବାବୁ କେବଳ ସଂପୃକ୍ତ ନୁହନ୍ତି, ବରଂ ଜଣେ ସକ୍ରିୟ କର୍ମକର୍ତ୍ତା ଭାବରେ ଦକ୍ଷତାର ପରିଚୟ ଦେଇଛନ୍ତି । ପୁରୀ ରାମଦୟା ପରିଷଦ, ଉତ୍କଳ ସାହିତ୍ୟ ସମାଜ, ଅଲାରନାଥ ସାଂସ୍କୃତିକ ସଂସଦ (ବ୍ରହ୍ମଗିରି), ଶ୍ରୀକ୍ଷେତ୍ର ହନୁମାନ ଜୟନ୍ତୀ କମିଟି (ପୁରୀ), ଶ୍ରୀ ନାରାୟଣୀ ଗଣପତି ସମିତି (ପୁରୀ), ନିଖିଳ ଉତ୍କଳ ସଙ୍ଗୀତ ଶିଳ୍ପୀ ପରିଷଦ (କଟକ), ଚଳଚ୍ଚିତ୍ର ଜଗତ (କଟକ), କଟକସ୍ଥିତ ନୂଆପାଟଣା ବଜାର କମିଟିର ସେ ଅଛନ୍ତି ସଭାପତି ଓ ଅନ୍ୟାନ୍ୟ ବହୁ ଅନୁଷ୍ଠାନରେ ତାଙ୍କର କୁଶଳୀ ହସ୍ତର ସ୍ୱାକ୍ଷର ଦେଖିବାକୁ ମିଳେ ।

ଫୁଟ୍‌ବଲ୍ ଖେଳ ଏବଂ ବ୍ୟାଡ଼୍‌ମିଣ୍ଟନ୍ ଖେଳରେ ପାରଦର୍ଶିତା ଲାଭ କରିଥିବା ସତ୍ୟନାରାୟଣ ସମ୍ପ୍ରତି ନୀରବରେ ସାଧନାରତ । ଅନେକ ଉତ୍‌ଥାନ ପତନ ଭିତରେ ସେ ଜୀବନଖେଳରେ ଜଣେ ସଫଳ ଖେଳାଳି ଭାବରେ ବିବେଚିତ ହୋଇସାରିଛନ୍ତି । ତାଙ୍କର ଜୀବନ ହୋଇଯାଇଛି ଅନେକ ସୃଷ୍ଟିଶୀଳ ଅନୁଭୂତିର ଏକ ନିରାସକ୍ତ କାହାଣୀ ।

❑ ❑